VOL LIV. No. 11 **UTKAL PRASAṄGA** Regd No [illegible]
Licence No. C.R.N.P. 5—Licensed to post without Pre-payment



ବିଧାନସଭା ପରିସର ମଧ୍ୟରେ ଆୟୋଜିତ ଏକ ଉତ୍ସବରେ
ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କ ଶ୍ରାଦ୍ଧବାର୍ଷିକୀ ପାଳନ । ୨୫/୫



ସଚିବାଳୟଠାରେ ଆୟୋଜିତ ଏକ ସାମ୍ବାଦିକ ସମ୍ମିଳନୀରେ
ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା ଭାଷଣ ଦେଉଛନ୍ତି । ୪/୬

## କାରଗିଲ୍‌ର ଓଡ଼ିଆ ବୀର ଶହୀଦ୍‌ମାନଙ୍କ ପ୍ରତି ଭୁବନେଶ୍ୱର ବିମାନ ବନ୍ଦରଠାରେ ଶ୍ରଦ୍ଧାଞ୍ଜଳି










# ଉତ୍କଳ ପ୍ରସଙ୍ଗ

୫୬ ଭାଗ | ୧ମ ସଂଖ୍ୟା | ଶ୍ରାବଣ-ଭାଦ୍ର | ଅଗଷ୍ଟ- ୧୯୯୯

**ଶ୍ରୀ ଜୟନ୍ତ କୁମାର ଦେବ**

କମିଶନର ତଥା ଶାସନ ସଚିବ

ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା

**ଶ୍ରୀ ଦୁର୍ଗାମାଧବ ଦାଶ**

ନିର୍ଦ୍ଦେଶକ

<u>ସମ୍ପାଦନା ମଣ୍ଡଳୀ</u>

**ଶ୍ରୀ ମହେଶ୍ୱର ମୂଳିଆ**

କାର୍ଯ୍ୟନିର୍ବାହୀ ସମ୍ପାଦକ

**ଶ୍ରୀ ଶରତ ଚନ୍ଦ୍ର ସାମନ୍ତରାୟ**

**ଶ୍ରୀ ଗୋବିନ୍ଦ ଚନ୍ଦ୍ର ମଲ୍ଲିକ**

ସମ୍ପାଦନା ସହଯୋଗୀ

<u>ପ୍ରଚ୍ଛଦପଟ</u>

**ଶ୍ରୀ ମାନସ ନାୟକ**

**ବାର୍ଷିକ ଦେୟ: ଟ.୨୦.୦୦**

**ପ୍ରତି ଖଣ୍ଡ : ଟ.୨.୦୦**

*ଉତ୍କଳ ପ୍ରସଙ୍ଗ'' ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।*

**ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ**

**ଏବଂ**

**ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ**

# ସୂଚୀ

# ଜାତୀୟ ସଙ୍ଗୀତ

"ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜୁରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।"

# ବୀର ଓଡ଼ିଆ ଶହୀଦମାନଙ୍କ ପ୍ରତି ରାଜ୍ୟବାସୀଙ୍କ ଶ୍ରଦ୍ଧାଞ୍ଜଳି

**ଗୋପୀନାଥ ମହାରଣା**

ବୟସ-୨୨ ବର୍ଷ, ପିତା-ସ୍ୱର୍ଗତ ଯଦୁମଣି ଓ ମାତା-ସ୍ୱର୍ଗତ କମୁରୁ ମହାରଣା, ଗ୍ରାମ - ଜନାର୍ଦ୍ଦନପୁର, ପୋ - ଲେଙ୍ଗୁରା, ଭାୟା - କେନ୍ଦୁପାଟଣା, ଥାନା - ସାଲେପୁର ଓ ଜିଲ୍ଲା - କଟକ । ସେ ୧୯୯୪ ମସିହାରେ ସାମରିକ ସେବାରେ ନିଯୁକ୍ତି ପାଇ ୫୨୮ ଏ.ଏସ୍.ସି ବାଟାଲିୟନରେ ଯୋଗ ଦେଇଥିଲେ । ବାଙ୍ଗାଲୋରଠାରେ ତାଲିମ ପାଇ ଶାନ୍ତି ଓ କାଶ୍ମୀରରେ ଅବସ୍ଥାପିତ ହୋଇଥିଲେ । ସାମରିକ ପରିବହନ ଡ୍ରାଇଭର ଭାବେ କାର୍ଯ୍ୟରତ ଥିବା ସମୟରେ ତା.୧୯.୫.୯୯ରେ ଶତ୍ରୁ ପକ୍ଷର ଆକ୍ରମଣରେ ଗୋପୀନାଥ ନିହତ ହୋଇ ଶହୀଦ ହୋଇଥିଲେ । ତାଙ୍କ ମରଶରୀରକୁ ତା ୨୨.୫.୯୯ ଦିନରେ ନିଜ ଗ୍ରାମକୁ ଅଣାଯାଇ ସଂପୂର୍ଣ୍ଣ ସାମରିକ ମର୍ଯ୍ୟାଦାସହ ଶବ ସତ୍କାର କରାଯାଇଥିଲା ।

**ରାଜକିଶୋର ସାହୁ**

ବୟସ-୨୮ ବର୍ଷ, ପିତା-କୃଷ୍ଣଚନ୍ଦ୍ର ଓ ମାତା-ନିରୁପମା ସାହୁ । ଗ୍ରାମ - ଚୌଦ୍ୱାର - କଳିଙ୍ଗ ନଗର (କପାଳେଶ୍ୱର) ତା ୧୩.୭.୭୧ ରେ ଜନ୍ମ ଗ୍ରହଣ କରିଥିଲେ । ତା ୩.୮.୮୯ ଦିନରେ ସେ ବାୟୁସେନାରେ ଏୟାରମେନ୍ ରୂପେ ନିଯୁକ୍ତି ପାଇଥିଲେ । ମେ ମାସ ୧୯୯୭ ମସିହାରେ ସେ ଫ୍ଲାଇଟ୍ ସର୍ଜେଣ୍ଟକୁ ଉନ୍ନୀତ ହୋଇଥିଲେ । କାର୍ଗିଲ - ଦ୍ରାସ ରଣକ୍ଷେତ୍ରରେ ଶତ୍ରୁପକ୍ଷ ସହିତ ଯୁଦ୍ଧରତ ଥିବା ସମୟରେ ତା ୨୮.୫.୯୯ ଦିନରେ ଶହୀଦ ହୋଇଥିଲେ ।

**ମାନସ ରଞ୍ଜନ ସାହୁ**

ବୟସ-୨୫ ବର୍ଷ, ପିତା-ନବଘନ ସାହୁ, ବଣିଆ ସାହି, ପୁରୁଣାଗଡ, ବନ୍ତଳା, ଜିଲ୍ଲା - ଅନୁଗୁଳ ତା ୨୬.୨.୭୫ ଦିନରେ ଜନ୍ମ ଗ୍ରହଣ କରିଥିଲେ । ସେ ପ୍ରତିରକ୍ଷା ବିଭାଗରେ ଲାନସ୍ ନାୟକ ରୂପେ କାର୍ଯ୍ୟ କରୁଥିଲେ । କାର୍ଗିଲ ରଣକ୍ଷେତ୍ରରେ ଯୁଦ୍ଧରତ ଥିବା ସମୟରେ ତା ୭.୬.୯୯ ଦିନରେ ଶତ୍ରୁପକ୍ଷ ଦ୍ୱାରା ନିହତ ହୋଇ ଶହୀଦ ହୋଇଥିଲେ ।

**ସଚ୍ଚିଦାନନ୍ଦ ମଲ୍ଲିକ**

ବୟସ-୩୧ ବର୍ଷ, ପିତା-ଉପେନ୍ଦ୍ର ପ୍ରସାଦ ମଲ୍ଲିକ ଓ ମାତା - ମାଳତୀଲତା ମଲ୍ଲିକ, ଗ୍ରାମ - ତାରପଡା (କାଶିଆ), ପୋ-କାଶିଆହାଟ, ଜିଲ୍ଲା - କେନ୍ଦ୍ରାପଡା । ୩୦.୫.୬୯ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ସେ ତା ୫.୧.୮୯ ଦିନରେ ପଦାତିକ ବାହିନୀରେ ଯୋଗ ଦେଇଥିଲେ । ୧୨ ମାହାର ରେଜିମେଣ୍ଟର ନାଏକ ସଚ୍ଚିଦାନନ୍ଦ ୨୮.୬.୯୯ ତାରିଖରେ କାର୍ଗିଲ ରଣକ୍ଷେତ୍ରରେ ଶତ୍ରୁପକ୍ଷ ଦ୍ୱାରା ନିହତ ହୋଇ ଶହୀଦ ହୋଇଥିଲେ । ଶ୍ରୀ ମଲ୍ଲିକଙ୍କର ପତ୍ନୀ ନିବେଦିତା ଏବଂ ୪ ବର୍ଷର ପୁତ୍ର ସୌମ୍ୟରଞ୍ଜନ (ସୋନୁ) ଅଛନ୍ତି ।

**ରତନ ପ୍ରଧାନ**

ବୟସ-୩୩ ବର୍ଷ, ପିତା - ଗୋପାଳ ପ୍ରଧାନ (ଅବସରପ୍ରାପ୍ତ ପଦାତିକ ବାହିନୀ କର୍ମଚାରୀ), ମାତା - ମାହେନ୍ଦ୍ରୀ ପ୍ରଧାନ, ଗ୍ରାମ - ବଡବିଲ (କେନ୍ଦୁଝର) ତା ୧୬.୬.୬୬ ଦିନରେ ଜନ୍ମ ଗ୍ରହଣ କରିଥିଲେ । ୨୧.୧୨.୮୬ ତାରିଖରେ ସେ ପଦାତିକ ବାହିନୀରେ ଯୋଗ ଦେଇଥିଲେ । କାର୍ଗିଲ ରଣକ୍ଷେତ୍ରରେ ସିପାହୀ (୨ୟ ନାଗା ରେଜିମେଣ୍ଟ) ଭାବରେ କାର୍ଯ୍ୟରତ ଥିବା ସମୟରେ ଶତ୍ରୁ ପକ୍ଷ ଦ୍ୱାରା ତା ୫.୭.୯୯ ଦିନରେ ନିହତ ହୋଇ ଶହୀଦ ହୋଇଥିଲେ । ଶ୍ରୀ ପ୍ରଧାନଙ୍କର ପତ୍ନୀ ପୂର୍ଣ୍ଣିମା ଏବଂ କନ୍ୟା ପୂଜା ଅଛନ୍ତି ।

**ମେଜର ପଦ୍ମପାଣି ଆଚାର୍ଯ୍ୟ**

ବୟସ - ୩୦ ବର୍ଷ, ପିତା - ଜଗନ୍ନାଥ ଆଚାର୍ଯ୍ୟ, ଅବସରପ୍ରାପ୍ତ ଉଇଙ୍ଗ୍ କମାଣ୍ଡର (ବର୍ତ୍ତମାନ ସେ ପ୍ଲଟ ନଂ - ୮୭, ହସ୍ତିନାପୁରୀ କଲୋନୀ, ସାଗର ରୋଡ, ହାଇଦ୍ରାବାଦ - ୭୪ରେ ଅବସ୍ଥାନ କରୁଛନ୍ତି) । ସେ କଟକ ସହର ତୁଳସୀପୁରର ବାସିନ୍ଦା ଥିଲେ । ସେ ୨ୟ ରାଜପୁତନା ରାଇଫଲ୍ସରେ ଅଫିସର ଭାବେ କାର୍ଯ୍ୟ କରୁଥିଲେ । ଦ୍ରାସ - କାର୍ଗିଲ ରଣ କ୍ଷେତ୍ରରେ ମେଜର ଆଚାର୍ଯ୍ୟ ଯୁଦ୍ଧରତ ଥିବା ବେଳେ ତା ୨୯.୬.୯୯ ଦିନରେ ଶତ୍ରୁ ପକ୍ଷ ଦ୍ୱାରା ନିହତ ହୋଇ ଶହୀଦ ହୋଇଥିଲେ । ଶ୍ରୀ ଆଚାର୍ଯ୍ୟଙ୍କର ପତ୍ନୀ - ଚାରୁଲତା ନିକଟରେ ମା ହେବାକୁ ଯାଉଛନ୍ତି ।

**ଏସ୍. ଶ୍ରୀନିବାସ ପାତ୍ର**

ବୟସ - ୩୦ ବର୍ଷ (୧୨ ମାହାର ରେଜିମେଣ୍ଟ) ପିତା - ସୀମାଞ୍ଚଳ, ମାତା - ସୁଦାମା, ଗ୍ରାମ - ଜଗଦଳପୁର, ବ୍ରହ୍ମପୁର, ଜିଲ୍ଲା - ଗଞ୍ଜାମ ୧୯୬୯ ମସିହାରେ ଜନ୍ମ ଗ୍ରହଣ କରିଥିଲେ । କାର୍ଗିଲ୍ ରଣ କ୍ଷେତ୍ରରେ ଯୁଦ୍ଧରତ ଥିବା ସମୟରେ ତା ୫.୭.୯୯ଦିନରେ ଶତ୍ରୁ ପକ୍ଷ ଦ୍ୱାରା ନିହତ ହୋଇ ଶହୀଦ ହୋଇଥିଲେ । ତାଙ୍କର ପତ୍ନୀଙ୍କ ନାମ ଶ୍ରୀମତୀ ବାସନ୍ତୀ ।

**ଗଙ୍ଗାରାମ ଦାସ**

ବୟସ - ୩୬ ବର୍ଷ, ପିତା - ଶ୍ୟାମ ସୁନ୍ଦର ଦାସ, ମାତା - ଶାନ୍ତିଲତା ଦାସ, ଗ୍ରାମ - ହରିତା, ପଞ୍ଚାୟତ - କୁରୁଡା, ଥାନା ଓ ଜିଲ୍ଲା - ବାଲେଶ୍ୱର ୧୪.୪.୬୪ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ପଦାତିକ ବାହିନୀରେ ହାବିଲଦାର ରୂପେ ସେ କାର୍ଯ୍ୟ କରୁଥିଲେ । କାର୍ଗିଲ ରଣ କ୍ଷେତ୍ରରେ ଯୁଦ୍ଧରତ ଥିବା ସମୟରେ ସେ ଶତ୍ରୁପକ୍ଷ ଦ୍ୱାରା ତା ୧୧.୭.୯୯ ଦିନରେ ନିହତ ହୋଇ ଶହୀଦ ହୋଇଥିଲେ । ତାଙ୍କର ପତ୍ନୀ ମଣିମାଳା (ଗ୍ରାଜୁଏଟ୍) ଓ ପୁତ୍ର ଅନୁପମ ଅଛନ୍ତି ।

**ନିରଞ୍ଜନ ବେହେରା**

ବୟସ-୨୯ ବର୍ଷ, ପି - ଆକୁଳି ଚରଣ ବେହେରା, ମାତା - ଦ୍ରୌପଦୀ ବେହେରା, ଗ୍ରା - ପାଗୋଡା, ଚାନ୍ଦବାଲି, ଜି - ଭଦ୍ରକ ୧୩.୫.୧୯୭୧ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ଶ୍ରୀ ବେହେରା ପାରାଟ୍ରୁପର (୫ ପାରା ରେଜିମେଣ୍ଟ କାର୍ଗିଲ) କାର୍ଗିଲ ସେକ୍ଟରରେ କାର୍ଯ୍ୟରତ ଥିବାବେଳେ ୨୭.୬.୯୯ ତାରିଖରେ ଶତ୍ରୁପକ୍ଷ ଦ୍ୱାରା ନିହତ ହୋଇ ଶହୀଦ ହୋଇଥିଲେ । ୩୦.୬.୯୯ ତାରିଖରେ ଭୁବନେଶ୍ୱର ବିମାନ ବନ୍ଦରଠାରେ ତାଙ୍କର ମରଶରୀର ପହଞ୍ଚିଥିଲା । ଶ୍ରୀ ନିରଞ୍ଜନ ବେହେରାଙ୍କର ସ୍ତ୍ରୀ - ସନ୍ଧ୍ୟାରାଣୀ ଓ ୪ ବର୍ଷର ପୁତ୍ର ସହିତ ଅଛନ୍ତି ।

**ରାଜ୍ୟ ସରକାର ପ୍ରତ୍ୟେକ ଶହୀଦ ଙ୍କର ସମ୍ମାନାର୍ଥେ ସେମାନଙ୍କର ଶୋକ ସନ୍ତପ୍ତ ପରିବାରବର୍ଗଙ୍କୁ ୨ ଲକ୍ଷ ଟଙ୍କା ଦେବା ସହ ରାଜଧାନୀରେ ୬୦ X ୪୦ ଫୁଟର ପ୍ଲଟ ଯୋଗାଇ ଦେବେ ଏବଂ ସେମାନଙ୍କର ପରିବାର ମଧ୍ୟରୁ ଜଣେ ଆଶ୍ରିତଙ୍କୁ ସରକାରୀ ଚାକିରିରେ ନିଯୁକ୍ତି ଦେବେ**

# କାର୍ଗିଲ ରଣକ୍ଷେତ୍ରରେ ମାତୃଭୂମିର ସୁରକ୍ଷା ପାଇଁ ପ୍ରାଣବଳି ଦେଇଥିବା
# ବୀର ଓଡ଼ିଆ ଶହୀଦ



ଗୋପୀନାଥ ମହାରଣା



ରାଜକିଶୋର ସାହୁ



ମାନସ ରଞ୍ଜନ ସାହୁ



ସଚ୍ଚିଦାନନ୍ଦ ମଲ୍ଲିକ



ରତନ ପ୍ରଧାନ



ଶ୍ରୀନିବାସ ପାତ୍ର



ଶଙ୍କାରାମ ଦାସ



ପଦ୍ମପାଣି ଆଚାର୍ଯ୍ୟ



ନିରଞ୍ଜନ ବେହେରା

# ଅମର ଶହୀଦ



ଜୟୀ ରାଜଗୁରୁ



ବୀର ସୁରେନ୍ଦ୍ର ସାଏ



ବିର୍ସା ମୁଣ୍ଡା



ବାଜି ରାଉତ



ରଘୁନାଥ ମହାନ୍ତି



ଦିବାକର ପରିଡା



ଲକ୍ଷ୍ମଣ ନାଏକ

# ୫୩ତମ ସ୍ୱାଧୀନତା ଦିବସ ଉପଲକ୍ଷେ

# ଓଡ଼ିଶାର ମାନ୍ୟବର ରାଜ୍ୟପାଳ

# ଡଃ ସି.ରଙ୍ଗରାଜନ୍‌ଙ୍କ

# ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

ଆମ ଦେଶର ୫୩ତମ ସ୍ୱାଧୀନତା ଦିବସ ପାଳନର ଶୁଭ ଅବସରରେ ମୁଁ ସମଗ୍ର ଓଡ଼ିଶାବାସୀଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରୁଛି ।

ଯେଉଁ ସ୍ୱାଧୀନତା ସଂଗ୍ରାମୀ ଓ ଶହୀଦମାନଙ୍କର ତ୍ୟାଗ ଓ ସଂଗ୍ରାମ ଫଳରେ ଆମେ ସ୍ୱାଧୀନତା ଲାଭ କରିଛୁ, ଆଜିର ଏହି ଐତିହାସିକ ତଥା ମହତ୍ତ୍ୱପୂର୍ଣ୍ଣ ଦିବସରେ ଆମେ ସେମାନଙ୍କୁ ସ୍ମରଣ କରୁଛୁ । ଆଜିକୁ ବାଉନବର୍ଷ ତଳେ, ଠିକ୍ ଏହି ଦିନ, ଅହିଂସ ସଂଗ୍ରାମ ଦ୍ୱାରା ଆମ ଦେଶ ବିଦେଶୀ ଶାସନ କବଳରୁ ମୁକ୍ତିଲାଭ କରିଥିଲା । ଇତିହାସରେ ଏହାର ପଟ୍ଟାନ୍ତର ନାହିଁ । ଏହି ଅବସରରେ ଆମେ ଆମର ଜାତୀୟ ନେତୃବର୍ଗଙ୍କ ଅମର କୀର୍ତ୍ତିରାଶି ସ୍ମରଣ କରିବା ଉଚିତ । ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କର ବୀରତ୍ୱପୂର୍ଣ୍ଣ ଅବଦାନ ଚିରକାଳ ପ୍ରେରଣାର ଉତ୍ସ ହୋଇ ରହିବ । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ଆମର ସ୍ୱାଧୀନତା ସଂଗ୍ରାମ ଅହିଂସା ଓ ସତ୍ୟାଗ୍ରହ ଉପରେ ଆଧାରିତ ହୋଇଥିବାରୁ, ମାନବ ଜାତିର ଇତିହାସରେ ଏହା ଅନୁପମ ହୋଇ ରହିଛି । ମହାତ୍ମା ଗାନ୍ଧୀଙ୍କ ସତ୍ୟ ଓ ଅହିଂସା ମାର୍ଗକୁ ଅନୁସରଣ କରି ଓଡ଼ିଶାବାସୀ ଏହି ମହାନ୍ ଜାତୀୟ ଆନ୍ଦୋଳନରେ ଅଗ୍ରଣୀ ଭୂମିକା ନେଇଥିଲେ ।

ଏହି ଅବସରରେ, ସଂପ୍ରତି ମାତୃଭୂମିର ସୁରକ୍ଷା ପାଇଁ ଜୀବନକୁ ପଣ କରି ସୀମାନ୍ତର ଅଖଣ୍ଡତା ବଜାୟ ରଖିଥିବା ଆମର ବୀର ଜୱାନ୍‌ମାନଙ୍କ ପ୍ରତି ମୁଁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ଯୁଦ୍ଧରେ ଯେଉଁମାନେ ପ୍ରାଣବଳି ଦେଇଛନ୍ତି, ସେମାନଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ଆମେ ଗଭୀର ସମବେଦନା ଜଣାଉଛୁ । ଜୀବନକୁ ନୂତନ ରୂପେ ଗଢ଼ିବା ପାଇଁ ସେମାନେ ସମସ୍ତ ସାହସ ଓ ସହନଶକ୍ତି ଲାଭ କରନ୍ତୁ, ଏହାହିଁ ଆମର କାମନା । ଏହି ଦୁଃସମୟରେ ସେମାନେ ଯେ କେବଳ ଏକାକୀ ତାହା ନୁହେଁ; ସମଗ୍ର ଦେଶବାସୀ ସେମାନଙ୍କ ସାଥୀରେ । ଆମ ଦେଶର ସୀମା ସୁରକ୍ଷା ସଂଗ୍ରାମରେ ଓଡ଼ିଶାର କେତେକ ଜୱାନ କାର୍‌ଗିଲ୍ କ୍ଷେତ୍ରରେ ଶହୀଦ ହୋଇଛନ୍ତି । ଓଡ଼ିଶାବାସୀ ସେମାନଙ୍କ ବୀରତ୍ୱ ଓ ବଳିଦାନକୁ କଦାପି ଭୁଲି ପାରିବେ ନାହିଁ ।

ଆମେ ଲାଭ କରିଥିବା ରାଜନୈତିକ ସ୍ୱତନ୍ତ୍ରତା ଅୟମାରମ୍ଭ ମାତ୍ର । ଏହା ଆମକୁ ଆମର ଭାଗ୍ୟ ନିର୍ଦ୍ଧାରଣ କରିବା ତଥା ଜନସାଧାରଣଙ୍କ ଆଶା-ଆକାଂକ୍ଷାକୁ ହୃଦୟଙ୍ଗମ କରିବା ପାଇଁ ସୁଯୋଗ ଆଣି ଦେଇଛି । ବିଭିନ୍ନ ପୀଢ଼ିର ଅଗଣିତ ଦେଶପ୍ରେମୀ ଓ ଶହୀଦମାନଙ୍କ ତ୍ୟାଗ କଦାପି ବ୍ୟର୍ଥ ହେବ ନାହିଁ । ସ୍ୱାଧୀନତାର ସୁରକ୍ଷା ତଥା ଜନସାଧାରଣଙ୍କ ଜୀବନଧାରଣର ମାନକୁ ଉନ୍ନତ କରିବା ଏବଂ କ୍ଷୁଧା, କ୍ଲେଶ ଓ ଅସହାୟବୋଧ ଦୂର କରିବା ଲକ୍ଷ୍ୟ ରଖି ଦେଶ ନିର୍ମାଣର ଦାୟିତ୍ୱ ତୁଲାଇବା ପାଇଁ ଆମକୁ ଦୃଢ଼ତାର ସହ କଠୋର ପରିଶ୍ରମ କରିବାକୁ ପଡ଼ିବ । ଏ ପର୍ଯ୍ୟନ୍ତ ଏହି ସଂଗ୍ରାମର ଅବସାନ ଘଟି ନାହିଁ ।

ଭାରତରେ ଗଣତନ୍ତ୍ରର ସ୍ଥିତି ସୁଦୃଢ଼ ହୋଇ ରହିଛି । ଭୋଟ ଦ୍ୱାରା ସରକାର ନିର୍ଣ୍ଣୟ କରିବା ଜୀବନର ଏକ ଧାରାରେ ପରିଣତ ହୋଇଛି । ଭୋଟ ଦେବା ଉଭୟ ଅଧିକାର ଓ କର୍ତ୍ତବ୍ୟ । ଏଣୁ, ଭୋଟ ଦେବାର ଅଧିକାର ଥିବା ପ୍ରତ୍ୟେକ ବ୍ୟକ୍ତି ଆଗାମୀ ନିର୍ବାଚନଗୁଡିକରେ ନିଜ ନିଜର ମତାଧିକାର ନିଶ୍ଚିତ ଭାବରେ ସାବ୍ୟସ୍ତ କରିବା ପାଇଁ ମୁଁ ଆହ୍ୱାନ କରୁଛି ।

ଆମେ ଜିଲ୍ଲା ପରିଷଦ, ପଞ୍ଚାୟତ ସମିତି ଓ ଗ୍ରାମ ପଞ୍ଚାୟତମାନ ପ୍ରତିଷ୍ଠା କରି ଆମର ଗଣତାନ୍ତ୍ରିକ ବ୍ୟବସ୍ଥାର ପରିସରକୁ ବ୍ୟାପକ କରିଛୁ । ଆମର ଆଶା ଯେ ରାଜ୍ୟର ବିକାଶମୂଳକ ପ୍ରଶାସନରେ ସେମାନେ ଅଧିକ ଉତ୍ସାହର ସହିତ ଗଣତାନ୍ତ୍ରିକ ପ୍ରଣାଳୀରେ କାର୍ଯ୍ୟ କରିପାରିବେ । ଜିଲ୍ଲା ପରିଷଦ ଓ ଅନ୍ୟାନ୍ୟ ପଞ୍ଚାୟତ ସଂଗଠନଗୁଡିକ ମାଧ୍ୟମରେ ବିଭିନ୍ନ ସାମାଜିକ ତଥା ଆର୍ଥିକ କାର୍ଯ୍ୟକ୍ରମର ରୂପାୟନରେ ଅଂଶ ଗ୍ରହଣ କରିବାପାଇଁ ମହିଳାମାନଙ୍କୁ ଆମ ରାଜ୍ୟ ବିଧିବଦ୍ଧ ଭାବେ ସୁଯୋଗ ପ୍ରଦାନ କରିଛି । ଏଭଳି ଏକ ଉଲ୍ଲେଖନୀୟ ଅଭିଯାନରେ ଆମେ କେତେଦୂର ଅଗ୍ରଗତି କରିପାରିଛୁ ଏବଂ ସମାଜ ସଂସ୍କାର କ୍ଷେତ୍ରରେ ଆମେ କେତେ ଲକ୍ଷ୍ୟ ହାସଲ କରିପାରିଛୁ, ବିଭିନ୍ନ ସମୟରେ ଆମେ ସେଗୁଡିକୁ ସମୀକ୍ଷା କରିବା ଉଚିତ ।

ଆମ ରାଜ୍ୟର ବହୁତ ଗରିବ ଲୋକ ଅସ୍ୱାସ୍ଥ୍ୟକର ପରିବେଶରେ ବସବାସ କରୁଛନ୍ତି । ସହରାଞ୍ଚଳରେ ଛୋଟଛୋଟ କୁଡିଆକୁ ନେଇ ଗଢି ଉଠିଥିବା ବସ୍ତିଗୁଡିକ ଅତ୍ୟଧିକ ଜନଗହଳିରେ ପରିପୂର୍ଣ୍ଣ । ସେଥିରେ ବାସ କରୁଥିବା ଲୋକମାନେ ସର୍ବନିମ୍ନ ଆବଶ୍ୟକତା ପାଇବାରୁ ବଞ୍ଚିତ । ଗାଁ ଗହଳିରେ ଅନେକ ପରିବାରର ମୁଣ୍ଡ ଗୁଞ୍ଜିବାକୁ ଚାଳ ଖଣ୍ଡେ ନାହିଁ । ଏହି ସବୁ ସମସ୍ୟାର ମୁକାବିଲା ପାଇଁ ଅନେକ ଗୁଡିଏ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏ ସମସ୍ତ ପଦକ୍ଷେପ ସତ୍ତ୍ୱେ, ଅଧିକାଂଶ ଲୋକଙ୍କର ଆର୍ଥିକ ଉନ୍ନତି ହୋଇ ପାରିନାହିଁ ।

ଓଡ଼ିଶା ବିପୁଳ ପ୍ରାକୃତିକ ସଂପଦରେ ପରିପୂର୍ଣ୍ଣ । ଏ ରାଜ୍ୟ ଜଙ୍ଗଲ, ଖଣିଜ ସମ୍ପଦ, ଜଳ ଓ ମାନବ ସମ୍ବଳରେ ସମୃଦ୍ଧ । ଏଦିଗରେ ବିପୁଳ ସାମର୍ଥ୍ୟ ରହିଥିବା ଯୋଗୁଁ ରାଜ୍ୟରେ ଶିଳ୍ପାୟନ ପାଇଁ ପର୍ଯ୍ୟାପ୍ତ ସୁଯୋଗ ରହିଛି । ଏ ସମସ୍ତ ପ୍ରାକୃତିକ ସଂପଦ ସତ୍ତ୍ୱେ, ଅପେକ୍ଷାକୃତ ଭାବେ ଆମ ରାଜ୍ୟର ବିକାଶ ହୋଇପାରି ନାହିଁ ।

ଓଡ଼ିଶା ଏକ ଗ୍ରାମ ବହୁଳ ରାଜ୍ୟ । ଗ୍ରାମାଞ୍ଚଳର ଦାରିଦ୍ର୍ୟ ଦୂର କରିବା ପାଇଁ ପ୍ରଥମତଃ କୃଷିର ବିକାଶ ହେବା ଆବଶ୍ୟକ । କୃଷିର ବିକାଶ ହିଁ ଗ୍ରାମାଞ୍ଚଳର ଦାରିଦ୍ର୍ୟ ଓ ବେକାରୀ ସମସ୍ୟା ସମାଧାନରେ ଯଥେଷ୍ଟ ସହାୟକ ହୋଇଥାଏ । ଦେଶ ସ୍ୱାଧୀନ ହେବାଠାରୁ କୃଷି ଉତ୍ପାଦନ କ୍ଷେତ୍ରରେ ଏ ରାଜ୍ୟର ଆଶାତୀତ ଅଭିବୃଦ୍ଧି ଘଟିଛି ଏବଂ ଜଳସେଚନର ସାମର୍ଥ୍ୟ ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଛି । ତଥାପି, ଏ ଦିଗରେ ଅନେକ କାର୍ଯ୍ୟ କରିବା ପାଇଁ ରହିଛି ।

ଆଦିବାସୀ, ହରିଜନ, ଅନ୍ୟାନ୍ୟ ପଛୁଆ ଓ ଦୁର୍ବଳ ଶ୍ରେଣୀ ଲୋକଙ୍କ କଲ୍ୟାଣ ତଥା ପ୍ରଗତି ନିମନ୍ତେ ରାଜ୍ୟ ସରକାରଙ୍କର ସ୍ୱତନ୍ତ୍ର ଦାୟିତ୍ୱ ରହିଛି । ଏ ସବୁ ବର୍ଗର ଅଗ୍ରଗତି ସଂପର୍କରେ ସମୀକ୍ଷା କରି ଅନ୍ୟ ଯେଉଁ କ୍ଷେତ୍ରଗୁଡିକ ଉପରେ ଅଧିକ ଦୃଷ୍ଟି ଦିଆଯିବା ଆବଶ୍ୟକ, ସେଗୁଡିକ ଚିହ୍ନଟ କରିବା ପାଇଁ ସ୍ୱାଧୀନତା ଦିବସର ପବିତ୍ର ଅବସର ଆମର ଗୁରୁ ଦାୟିତ୍ୱବୋଧକୁ ସ୍ମରଣ କରାଇ ଦେଇଥାଏ ।

ଏ ଜାତିର ନିର୍ମାତାମାନଙ୍କ ସ୍ୱପ୍ନକୁ ସାକାର କରିବାର ଐତିହାସିକ ଦାୟିତ୍ୱ ଚଳନ୍ତି ପୀଢ଼ି ଉପରେ ନ୍ୟସ୍ତ । ଆମମାନଙ୍କ ମଧ୍ୟରେ ଏକତା ଓ ସଂହତି ବଜାୟ ରଖିବା ପାଇଁ ଆମକୁ କଠିନ ପରିଶ୍ରମ କରିବାକୁ ହେବ । ସହଯୋଗ ମନୋବୃତ୍ତି ନେଇ ଆମ ଭିତରେ ଥିବା ସମସ୍ତ ଭେଦଭାବ ଭୁଲି ତଥା ଦଳଗତ ଓ ଗୋଷ୍ଠୀଗତ ସଂକୀର୍ଣ୍ଣତା ଠାରୁ ଊର୍ଦ୍ଧ୍ୱରେ ରହି ଆମକୁ କଠୋର ପରିଶ୍ରମ କରିବାକୁ ପଡିବ । ଆମର ନମସ୍ୟ ପୂର୍ବସୂରୀଗଣ ଯେଉଁ ଶୃଙ୍ଖଳିତ ଓ ଅଖଣ୍ଡ ଭାରତର ସ୍ୱପ୍ନ ଦେଖିଥିଲେ ଏବଂ ଆମମାନଙ୍କ ପାଇଁ ସ୍ୱାଧୀନତା ଆଣି ଦେଇଥିଲେ, ସେମାନଙ୍କର ସେହି ସ୍ୱପ୍ନକୁ ସାକାର କରିବା ପାଇଁ ଆସନ୍ତୁ, ଆଜି ଆମେ ଦୃଢ଼ ଶପଥ ନେବା । ଆମେ ଆଶା କରୁଛୁ, ଆଗାମୀ ନୂତନ ସହସ୍ରାବ୍ଦଟି ବିଶ୍ୱବାସୀଙ୍କ ପାଇଁ ଶାନ୍ତି ଓ ସଂହତି ସହିତ କ୍ଷୁଧା ଓ ନିରକ୍ଷରତାରୁ ମୁକ୍ତି ଆଣିଦେବ ।

ଏହି ପବିତ୍ର ଦିବସ ଅବସରରେ ପାରସ୍ପରିକ ବୁଝାମଣା ତଥା ସଂହତି ରକ୍ଷାପୂର୍ବକ ସାମାଜିକ ପ୍ରଗତି ଓ ଦ୍ରୁତ ଆର୍ଥିକ ବିକାଶ ପାଇଁ ଉତ୍ସର୍ଗୀକୃତ ଭାବେ କାର୍ଯ୍ୟକରିବାକୁ, ମୁଁ ମୋର ଓଡ଼ିଶାର ଭାଇଭଉଣୀମାନଙ୍କୁ ଆହ୍ୱାନ କରୁଛି ।

ଜୟହିନ୍ଦ

# ୫୩ତମ ସ୍ୱାଧୀନତା ଦିବସ ଉପଲକ୍ଷେ
# ଓଡ଼ିଶାର ମୁଖ୍ୟମନ୍ତ୍ରୀ
# ଡଃ. ଗିରିଧର ଗମାଙ୍ଗଙ୍କ
# ବାର୍ତ୍ତା



ପବିତ୍ର ସ୍ୱାଧୀନତା ଦିବସ ଉପଲକ୍ଷେ ରାଜ୍ୟବାସୀ ଭାଇଭଉଣୀମାନଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା, ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସ୍ୱାଧୀନତା ଦିବସ ଆମ ଜାତୀୟ ଜୀବନର ଏକ ମହତ୍ତ୍ୱପୂର୍ଣ୍ଣ ଦିବସ । ଦୀର୍ଘକାଳର ବିଦେଶୀ ଶାସନାଧୀନ ଭାରତବର୍ଷକୁ ସ୍ୱାଧୀନ କରିବାରେ ଦେଶର ଅଗଣିତ ନରନାରୀ ନିଜ ଜୀବନକୁ ବଳିଦାନ ଦେଇ ଅତ୍ୟାଚାର ଓ ନିର୍ଯ୍ୟାତନାକୁ ଖାତିର ନକରି, ଦେଶପ୍ରେମ ଓ ବ୍ୟକ୍ତିତ୍ୱର ଯେଉଁ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ତାହା ପୃଥିବୀର ଇତିହାସରେ ଏକ ବିରଳ ଘଟଣା । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଶାନ୍ତି ଓ ଅହିଂସା ମନ୍ତ୍ରରେ ଦୀକ୍ଷିତ ହୋଇ ଭାରତର ଜନଗଣ ବ୍ରିଟିଶରାଜ ବିରୁଦ୍ଧରେ ଯେଉଁ ସାଲିସହୀନ ଅହିଂସା ସଂଗ୍ରାମ ଗଢି ତୋଳିଥିଲେ, ତାହା ଦେଶବାସୀଙ୍କୁ ଚିରକାଳ ଉଦ୍‌ବୁଦ୍ଧ କରୁଥିବ । ଜାତୀୟ ମୁକ୍ତି ସଂଗ୍ରାମରେ ଓଡ଼ିଶାର ବହୁମୂଲ୍ୟ ଅବଦାନ କାହାରିକୁ ଅବିଦିତ ନୁହେଁ । ଦେଶର ସ୍ୱାଧୀନତା ପାଇଁ ଭାରତମାତାର ଯେଉଁ ସୁଯୋଗ୍ୟ ସନ୍ତାନମାନେ ଆତ୍ମବଳି ଦେଇଛନ୍ତି, ସେମାନେ ଆମ୍ଭମାନଙ୍କର ଚିରସ୍ମରଣୀୟ । ମୁଁ ସେମାନଙ୍କ ଉଦ୍ଦେଶ୍ୟରେ ଆଜିର ଏ ଶୁଭ ଅବସରରେ ମୋର ଭକ୍ତିପୂତ ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଦେଶର ଏକତା, ଅଖଣ୍ଡତା ଓ ସାର୍ବଭୌମତ୍ୱ ରକ୍ଷା କରିବାରେ ଭାରତୀୟ ସେନାବାହିନୀ ସଦାସର୍ବଦା ଜାଗ୍ରତ ରହି ଆସିଛି । ବିଦେଶୀରାଷ୍ଟ୍ରର ଆକ୍ରମଣର କଡ଼ା ମୁକାବିଲା କରି ଦେଶର ସୀମା ସୁରକ୍ଷା କରିବାରେ ସେମାନେ ପ୍ରଶଂସନୀୟ କାର୍ଯ୍ୟ କରିଆସିଛନ୍ତି । ବହୁ ସୈନିକ ଯୁଦ୍ଧଭୂମିରେ ପ୍ରାଣପାତ କରି ଦେଶର ସମ୍ମାନ ଓ ଗୌରବ ବୃଦ୍ଧି କରିଛନ୍ତି । ସଂପ୍ରତି କାର୍‌ଗିଲ୍‌ରେ ଲଢ଼େଇ କରି ଶହୀଦ ହୋଇଥିବା ଦେଶର ବୀର ଜବାନଙ୍କ ମଧ୍ୟରେ ଆମ ରାଜ୍ୟର ଜବାନମାନେ ଜୀବନ ଉତ୍ସର୍ଗ କରି ରାଜ୍ୟର ମାନ ବଜାୟ ରଖିଛନ୍ତି । ସେହି ପରଲୋକଗତ ବୀର ଜବାନମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ମୁଁ ଶ୍ରଦ୍ଧା ନିବେଦନ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ରାଜ୍ୟବାସୀଙ୍କ ତରଫରୁ ଗଭୀର ସମବେଦନା ଜଣାଉଛି ।

ଭାରତବର୍ଷର ଐତିହ୍ୟ ଓ ପରମ୍ପରା ସୁମହାନ୍ । ସ୍ୱାଧୀନତା ପରେ ଦେଶକୁ ନାନା କ୍ଷେତ୍ରରେ ସମୃଦ୍ଧ କରି ପୃଥିବୀରେ ଏକ ଶ୍ରେଷ୍ଠ ସ୍ଥାନ ଦେବାପାଇଁ ଆମର ରାଷ୍ଟ୍ରନିର୍ମାତାମାନେ ଉଦ୍ୟମ କରିଆସିଛନ୍ତି । ଭାରତୀୟ ସଂବିଧାନରେ ଗଣତାନ୍ତ୍ରିକ ମୂଲ୍ୟବୋଧ, ସାଂପ୍ରଦାୟିକ ସଦ୍‌ଭାବ, ଧର୍ମନିରପେକ୍ଷତା ଓ ଜାତୀୟତା ଉପରେ ସର୍ବାଧିକ ଗୁରୁତ୍ୱ ଦିଆଯାଇଛି । ଆଜି ଭାରତବର୍ଷ ସମଗ୍ର ପୃଥିବୀରେ ଏକ ଆଦର୍ଶ ଗଣତାନ୍ତ୍ରିକ ରାଷ୍ଟ୍ରର ମାନ୍ୟତା ଲାଭ କରିପାରିଛି, ବହୁ କ୍ଷେତ୍ରରେ ଦେଶ ସ୍ୱାବଲମ୍ବୀ ହୋଇପାରିଛି । ଦେଶବାସୀଙ୍କ ପରିଶ୍ରମ, ନିଷ୍ଠା ଓ ତ୍ୟାଗ ଯୋଗୁଁ ଦେଶ ବିକାଶ ପଥରେ ଅଗ୍ରସର ହେବାରେ ଲାଗିଛି ।

ଭାରତବର୍ଷ ୧୦୦ କୋଟି ଲୋକଙ୍କର ଏକ ବିରାଟ ଦେଶ । ଆଚାର ବିଚାର, ବେଶଭୂଷା, ଚଳଣି, ଭାଷା, ଖାଦ୍ୟ — ସବୁଥିରେ ଦେଶବାସୀଙ୍କର ରୁଚି ଭିନ୍ନ ଭିନ୍ନ । କିନ୍ତୁ ଅନୈକ୍ୟ ମଧ୍ୟରେ ଐକ୍ୟ ବା ବିଭିନ୍ନତା ମଧ୍ୟରେ ଏକତା ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ । ବିଭିନ୍ନ ରାଜ୍ୟର ବିଭିନ୍ନ ଭାଷାଭାଷୀ ଲୋକଙ୍କ ମଧ୍ୟରେ ଯେଉଁ ଭାବଗତ ଐକ୍ୟ ପ୍ରତିଷ୍ଠିତ ହୋଇଛି, ତାହାହିଁ ଆମର ପ୍ରଧାନ ରାଷ୍ଟ୍ରୀୟ ସଂପଦ ।

କପିଳସଂହିତାରେ କୁହାଯାଇଛି — "ଉତ୍କଳସ୍ୟ ସମୋ ଦେଶୋ, ନାସ୍ତି ନାସ୍ତି ମହୀତଳେ" । ପୁରାଣ ଶାସ୍ତ୍ରରେ ଉତ୍କଳ ଏକ ମହିମାମଣ୍ଡିତ ପୁଣ୍ୟଭୂମି । ଦୀର୍ଘ ୫୦୦ କିଲୋମିଟର ବ୍ୟାପୀ ଉପକୂଳ, ବଣ ଜଙ୍ଗଲ ପାହାଡ ପର୍ବତ ଘେରା ଉତ୍କଳ ପ୍ରକୃତିର ଏକ ଉତ୍କଳ ଅବ୍‌ଦାନ । ଆମ ରାଜ୍ୟରେ ଅମାପ ଖଣିଜ ସଂପଦ, ବନ୍ୟସଂପଦ ଓ ଜଳସଂପଦ ଭରି ରହିଛି । ଆମର ପ୍ରାକୃତିକ ସଂପଦ ଓ ମାନବ ସମ୍ବଳର ସୁବିନିଯୋଗ ଦ୍ୱାରା ଓଡ଼ିଶାକୁ ଦେଶର ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବାପାଇଁ ଆଜିର ଏ ଶୁଭ ଅବସରରେ ମୁଁ ରାଜ୍ୟର ଅଗଣିତ ଛାତ୍ର, ଯୁବକ, କୃଷକ, ଶ୍ରମିକ, ବୁଦ୍ଧିଜୀବୀ ଓ ମହିଳାମାନଙ୍କୁ ସାଦର ଆହ୍ୱାନ ଜଣାଉଛି ।

**ଜୟହିନ୍ଦ**

# ୫୩ତମ ସ୍ୱାଧୀନତା ଦିବସ ଉପଲକ୍ଷେ

# ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ

# ଶ୍ରୀ ଭୂପିନ୍ଦର ସିଂହଙ୍କ

# ବାର୍ତ୍ତା



ସ୍ୱାଧୀନତା ଦିବସ ପାଳନ ଅବସରରେ ଲକ୍ଷ ଲକ୍ଷ ଭାରତୀୟଙ୍କ ପ୍ରାଣରେ ପ୍ରବଳ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି ହୋଇଥାଏ । ଆମର ଐତିହାସିକ ସ୍ୱାଧୀନତା ଆନ୍ଦୋଳନରେ ଅକଥନୀୟ ଦୁଃଖକଷ୍ଟ ଭୋଗିଥିବା ଆମର ଜାତୀୟ ନେତା, ଦେଶପ୍ରେମୀ ଓ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଦେଶପ୍ରେମ ଆମକୁ ବିହ୍ୱଳିତ କରିଥାଏ । ପରାଧୀନତାର ଶୃଙ୍ଖଳରୁ ଭାରତମାତାର ମୁକ୍ତି ପାଇଁ ଅଗଣିତ ନରନାରୀ ଜୀବନ ଉତ୍ସର୍ଗ କରିଛନ୍ତି । ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଆମେ ଏକ ଅଭୂତପୂର୍ବ ଅହିଂସ ସଂଗ୍ରାମ କରିଛୁ । ଆଜିର ଏହି ପବିତ୍ର ଦିବସରେ ସେହି ଦିବଂଗତ ସଂଗ୍ରାମୀମାନଙ୍କୁ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

ସ୍ୱାଧୀନତା ବହୁ କଷ୍ଟରେ ମିଳିଥାଏ । ସ୍ୱାଧୀନତାକୁ ଅକ୍ଷୁଣ୍ଣ ଓ ଚିରସ୍ଥାୟୀ କରି ରଖିବା ଦୁରୂହ ବ୍ୟାପାର । ସ୍ୱାଧୀନତାର ପ୍ରକୃତ ମୂଲ୍ୟ ଅବିରତ ସତର୍କତା ଉପରେ ନିର୍ଭର କରେ । ଆମର ସଂଗ୍ରାମ ଶେଷ ହୋଇନାହିଁ । ନିକଟ ଅତୀତରେ ସୀମା ସୁରକ୍ଷା ଆନ୍ଦୋଳନରେ ଓଡ଼ିଶାର ତଥା ଭାରତର ବୀର ଯବାନମାନଙ୍କୁ ପ୍ରାଣବଳି ଦେବାକୁ ପଡିଛି । ଶହୀଦମାନେ ଦେଶର ଗର୍ବ ଓ ଗୌରବ । ଆମେ ସେହି ବୀର ଶହୀଦମାନଙ୍କ ଉଦ୍ଦେଶ୍ୟରେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

ଆମ ସମ୍ମୁଖରେ ଅନେକ ସମସ୍ୟା ରହିଛି – ଦାରିଦ୍ର୍ୟ, ନିରକ୍ଷରତା, ବେକାରୀ, ବାସଗୃହ ଓ ଆନୁଷଙ୍ଗିକ ଭିତ୍ତିଭୂମିର ଅଭାବ ଇତ୍ୟାଦି । ଏହାର ସମାଧାନ ଯଥାଶୀଘ୍ର କରିବାକୁ ପଡ଼ିବ । ଆଧୁନିକ ଓଡ଼ିଶାର ସ୍ଥପତି ଉତ୍କଳଗୌରବ ମଧୁସୂଦନ, ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ପ୍ରଭୃତି ମନୀଷୀମାନେ ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାବାସୀଙ୍କୁ ଦୀକ୍ଷିତ କରାଇବା ସଙ୍ଗେ ସଙ୍ଗେ ଓଡ଼ିଶାକୁ ଏକ ସମୃଦ୍ଧ ରାଜ୍ୟ ଭାବେ ଗଢ଼ି ତୋଳିବା ପାଇଁ ପ୍ରୟାସ କରିଥିଲେ । ସେମାନଙ୍କର ସ୍ୱପ୍ନ ଏବେ ବି ପୂରଣ ହୋଇପାରିନାହିଁ ।

ଆଜିର ଏହି ପବିତ୍ର ସ୍ୱାଧୀନତା ଦିବସ ଅବସରରେ ଆସନ୍ତୁ, ଆମେ ସମସ୍ତେ ଗଣତାନ୍ତ୍ରିକ ମୂଲ୍ୟବୋଧ, ସାମ୍ପ୍ରଦାୟିକ ସଂପ୍ରୀତି ଓ ଧାର୍ମିକ ସହନଶୀଳତାର ଆଦର୍ଶରେ ଅନୁପ୍ରାଣିତ ହୋଇ ଓଡ଼ିଶାର ପୁନର୍ଗଠନ ପାଇଁ ସଂକଳ୍ପବଦ୍ଧ ହେବା ।

**ଜୟହିନ୍ଦ**

**ବନ୍ଦେ ଉତ୍କଳ ଜନନୀ**

# ଭାରତର ସ୍ୱାଧୀନତା ସଂଗ୍ରାମ

ପରାଧୀନତାର ଗର୍ଭରେ ମୁକ୍ତି ସଂଗ୍ରାମର ବୀଜ ନିହିତ ଥାଏ । ପୃଥିବୀର ଇତିହାସ ଏ ଚିରନ୍ତନ ସତ୍ୟର ପ୍ରମାଣ । ଭାରତର ଅଧୀନତା ବ୍ରିଟିଶ ରାଜତ୍ୱ ସହିତ ଆରମ୍ଭ ହୋଇ ବ୍ରିଟିଶ ରାଜତ୍ୱର ପରିସମାପ୍ତି ସହିତ ଶେଷ ହୋଇଛି । ଏ ଦେଶ ଉପରେ ବାରମ୍ବାର ଆକ୍ରମଣ ହୋଇଥିଲା । ଆକ୍ରମଣକାରୀମାନେ ହୁଏତ ଏଦେଶର କେତେକାଂଶ ଲୁଣ୍ଠନ କରି ନିଜ ଦେଶକୁ ଫେରି ଯାଉଥିଲେ କିମ୍ବା ଏ ଦେଶରେ ରହି ଏ ସଭ୍ୟତାର ବିରାଟ ଗର୍ଭରେ ବିଲୀନ ହୋଇ ଭାରତବାସୀ ରୂପେ ପରିଣତ ହୋଇଥିଲେ; କିନ୍ତୁ ଇତିହାସର କୌଣସି ଯୁଗରେ କୌଣସି ଆକ୍ରମଣକାରୀ ଭାରତ ପରି ଗୋଟାଏ ବିରାଟ ଦେଶକୁ ସଙ୍ଗଠିତ ଭାବରେ ନିଜ ଦେଶର ସୁଖ ସମୃଦ୍ଧି ବଢ଼ାଇବା ଉଦ୍ଦେଶ୍ୟରେ ବ୍ୟବହାର କରି ନଥିଲେ । ଏ କାର୍ଯ୍ୟ ବ୍ରିଟିଶ ଆରମ୍ଭ କଲେ । ସେମାନେ ନିଜ ଅସ୍ତିତ୍ୱ ବଜାୟ ରଖି ଗୋଟାଏ ଶାସକ ଜାତି ରୂପେ ଏ ଦେଶରେ ଅବତୀର୍ଣ୍ଣ ହେଲେ; ବଣିକ ବେଶରେ ଆସି ରାଜାରୂପେ ଶୋଷଣ ଆରମ୍ଭ କଲେ । ସେମାନେ ଏ ଦେଶର ସଭ୍ୟତାକୁ ବା ସମାଜକୁ ବୁଝି ପାରିଲେ ନାହିଁ । ପ୍ରଥମରୁ ହିଁ ଭାରତବାସୀଙ୍କୁ ନିଜ ମାନଦଣ୍ଡରେ ବିଚାର କରି ସଂଖ୍ୟେତର ମନେ କଲେ । ବ୍ରିଟିଶ ଶାସନର ମୂଳନୀତିଗୁଡ଼ିକୁ ଏ ଦେଶରେ ପ୍ରଚଳିତ କରିବା ଉଦ୍ଦେଶ୍ୟରେ ସେମାନେ ଅଗ୍ରସର ହେଲେ । ନିଜ ଭାଷାକୁ ଏ ଦେଶରେ ଚଳାଇବା ପାଇଁ ମଧ୍ୟ ଧାରାବାହିକ ଉଦ୍ୟମ ହେଲା । ବ୍ରିଟିଶ ସାମାଜିକ ନୀତିର ଆଦର୍ଶରେ ସେମାନେ ଏଦେଶରେ ଗୋଟାଏ ତଥାକଥିତ ଶିକ୍ଷିତ ଶ୍ରେଣୀ ଗଠନ କରିବାରେ ସମର୍ଥ ହେଲେ । ମୁଖ୍ୟତଃ ଏ ଶ୍ରେଣୀର ଲୋକ ଥିଲେ ବ୍ରିଟିଶ ଶାସନର ଦଲାଲ । ସେମାନଙ୍କ ଉଦ୍ୟମରେ ଶାସନ ଦୃଢ଼ୀଭୂତ ହୋଇ ପାରିବ ବୋଲି ବ୍ରିଟିଶମାନେ ଆଶା ପୋଷଣ କରିଥିଲେ । ଫଳରେ ଏହି ଶିକ୍ଷିତମାନେ ମଧ୍ୟ ଦେଶର ସଭ୍ୟତା-ଧାରାରୁ ବିଚ୍ଛିନ୍ନ ହୋଇ ପଡ଼ିଲେ । ପ୍ରତି ପଦରେ ବ୍ରିଟିଶ ଶାସକମାନଙ୍କୁ ବିରୋଧ ଓ ବିଦ୍ରୋହର ସମ୍ମୁଖୀନ ହେବାକୁ ପଡ଼ିଲା । ଯେଉଁ ଶିକ୍ଷିତ ସମାଜ ଉପରେ ସେମାନେ ନିର୍ଭର କରିଥିଲେ, ସେହିମାନଙ୍କ ନେତୃତ୍ୱରେ ବିପ୍ଳବର ନିଆଁ ଜଳି ଉଠିଲା । ଶେଷରେ ସେମାନଙ୍କୁ ନିଜର ଶାସନ ପାଟ ଛାଡ଼ି ନିଜ ଦେଶକୁ ଫେରି ଯିବାକୁ ପଡ଼ିଲା । ଏହା ହିଁ ହେଲା ଭାରତର ମୁକ୍ତି ସଂଗ୍ରାମର ସଂକ୍ଷିପ୍ତ ପରିଚୟ ।

## ପ୍ରଥମ ମୁକ୍ତି ସଂଗ୍ରାମ

ଇଷ୍ଟ ଇଣ୍ଡିଆ କମ୍ପାନୀର ଶାସନ ଯେତେବେଳେ ଦୃଢ଼ୀଭୂତ ହୋଇ ସାରିଥିଲା, ଠିକ୍ ସେହି ସମୟରେ ଭାରତର ପ୍ରଥମ ମୁକ୍ତି ସଂଗ୍ରାମ ଆରମ୍ଭ ହୋଇ ତାହାକୁ ଦୋହଲାଇ ଦେଇଥିଲା । ଇଂରେଜ ଐତିହାସିକମାନେ ଏହାକୁ ହିଁ 'ସିପାହୀ ବିଦ୍ରୋହ' ଆଖ୍ୟାରେ ଅଭିହିତ କରିଥିଲେ । ଏଥିରେ ହିନ୍ଦୁ-ମୁସଲମାନ ଏକତ୍ରିତ ହୋଇ ବ୍ରିଟିଶ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ଅଯୋଧ୍ୟାର ନବାବଙ୍କଠାରୁ ଝାନ୍ସୀର ରାଣୀ ଲକ୍ଷ୍ମୀ ବାଈ ଓ ଓଡ଼ିଶାର ଚନ୍ଦନ ହଜୁରୀ ପର୍ଯ୍ୟନ୍ତ ସମସ୍ତେ ଏ ବିପ୍ଳବର ଅଗ୍ରଣୀ ଥିଲେ । ସେମାନେ ବାହାଦୁର ଶାହାଙ୍କୁ ସମ୍ରାଟ ବୋଲି ଘୋଷଣା କରିଥିଲେ । ବିଜୟ ହସ୍ତଗତ ହେବା ଉପରେ ଥିଲା । ଏହି ସମୟରେ ଘଟଣା ପରମ୍ପରାରେ ଅଭାବନୀୟ ପରିବର୍ତ୍ତନ ଘଟିଲା । ଏ ଦେଶର କେତେକ ଲୋକଙ୍କ ସାହାଯ୍ୟରେ ବ୍ରିଟିଶ ଶାସକମାନେ ପ୍ରଥମ ମୁକ୍ତି ସଂଗ୍ରାମକୁ ବ୍ୟର୍ଥ କଲେ । ବାହାଦୁର ଶାହା ବନ୍ଦୀ ଓ ତାଙ୍କ ପୁତ୍ର ନିହତ ହେଲେ; ତାନ୍ତିଆ ଟୋପୀ ଫାଶୀଖୁଣ୍ଟରେ ପ୍ରାଣ ହରାଇଥିଲେ । ଧାରାବାହିକ ଦମନ ଫଳରେ ଦେଶର ଶତ ଶତ ଲୋକ ମୃତ୍ୟୁବରଣ କଲେ । ଇଂରେଜ ଶାସନ ଏଥର ବର୍ତ୍ତି ଯାଇଥିଲା; କିନ୍ତୁ ଇଷ୍ଟଇଣ୍ଡିଆ କମ୍ପାନୀ 'କମ୍ପାନୀ ବାହାଦୁର' ବିଲୟ ଭଜିଲେ ।

## ଅବସାଦର ଛାଇ

ପ୍ରଥମ ମୁକ୍ତିସଂଗ୍ରାମ ପରେ ଦେଶ ଉପରେ ଗୋଟାଏ ଅବସାଦର ଛାଇ ମାଡ଼ି ଯାଇଥିଲା । ବିଦେଶୀମାନେ ଏ ଦେଶରେ ସ୍ଥାୟୀ ହୋଇଗଲେ ବୋଲି ଧରି ନିଆଗଲା । ବିଦେଶୀମାନଙ୍କ ମନରେ ମଧ୍ୟ ନିଜର ଭବିଷ୍ୟତ୍ ବିଷୟରେ ସନ୍ଦେହ ରହିଲା ନାହିଁ । ଏହି ସମୟରେ ସ୍ୱାଧୀନତା ଯୁଦ୍ଧର ଇତିହାସରେ ଗୋଟାଏ ନୂତନ ଅଧ୍ୟାୟ ଆରମ୍ଭ । ଭାରତ ଜାତୀୟ କଂଗ୍ରେସ ସ୍ଥାପିତ ହେଲା । ଠିକ୍ ଏହି ସମୟରେ ମଧ୍ୟ ବ୍ରିଟିଶ ଶାସନକୁ ସୁଦୃଢ଼ କରିବା ପାଇଁ ଶିକ୍ଷା,ନ୍ୟାୟ ବିଚାର ଓ ରାଜନୀତି କ୍ଷେତ୍ରରେ ତିନୋଟି ଲେଖାଏଁ ବ୍ରିଟିଶ ଅନୁଷ୍ଠାନ ସ୍ଥାପିତ ହୋଇଥିଲା । କଲିକତା, ବମ୍ବେ ଓ ମାନ୍ଦ୍ରାଜ ଏ ତିନୋଟି କେନ୍ଦ୍ରରେ ୧୮୫୮ରେ ତିନୋଟି ବିଶ୍ୱବିଦ୍ୟାଳୟ, ୧୮୬୦ରେ ତିନୋଟି ବ୍ୟବସ୍ଥା ସଭା ଓ ୧୮୬୧ରେ ତିନୋଟି ହାଇକୋର୍ଟ ସ୍ଥାପନ କରାଗଲା । ଏଥିରୁ ଦୁଇଟି ଫଳ ଫଳିଲା-କେତେକ ଲୋକ ବ୍ରିଟିଶ ରାଜତ୍ୱ ପ୍ରତି ଅନୁରକ୍ତ ହୋଇ ରହିଲେ, ଶିକ୍ଷାଲାଭ କରିଥିବା ଆଉ କେତେକ ଲୋକଙ୍କ ମନରେ ଅଶାନ୍ତିର ନିଆଁ ଜୁଳୁଳିଲା । ସେମାନେ ଗୁପ୍ତ ସମିତିମାନ ଗଠନ କରି ବୋମା ପିସ୍ତଲ ସାହାଯ୍ୟରେ ହତ୍ୟାବିଭୀଷିକା ସୃଷ୍ଟି କରିବା ଦ୍ୱାରା ବ୍ରିଟିଶ ଶାସକ ଗୋଷ୍ଠୀକୁ ଏ ଦେଶରୁ ବିଦାୟ କରିବା ପାଇଁ ଉଦ୍ୟମ କଲେ ।

## କଂଗ୍ରେସ

କଂଗ୍ରେସ ଏ ଦୁଇ ପଥ ମଝିରେ ଛିଡ଼ାହୋଇ ସେ ସମୟରେ ଜାତୀୟ ଦାବୀ ବୋଲି ଯାହା ମନେ କରାଯାଉଥିଲା, ସେ ବିଷୟରେ ଜନମତ ସଙ୍ଗଠିତ କରୁଥିଲା । କଂଗ୍ରେସ ଅଧିବେଶନ ସମୟରେ ଭାରତର ବିଭିନ୍ନ ଅଞ୍ଚଳରୁ ପ୍ରତିନିଧିମାନେ ସମବେତ ହେଉଥିଲେ । ତାହା ଜାତି ଭିତରେ ସାମାଜିକ ଓ ରାଜନୀତିକ ଜୀବନ ଗଠନ କରିବାରେ ସାହାଯ୍ୟ କରୁଥିଲା ।

କହିବାକୁ ଗଲେ ବ୍ରିଟିଶ ଗଭର୍ଣ୍ଣର-ଜେନେରାଲ ଲର୍ଡ଼ ଡଫରିନ୍ ଓ ବ୍ରିଟିଶ ସିଭିଲିୟାନ ଏ.ଓ. ହ୍ୟୁମଙ୍କ ଆନୁକୂଲ୍ୟରେ କଂଗ୍ରେସ ଆରମ୍ଭ ହୋଇଥିଲା । କିନ୍ତୁ ୧୮୮୮ ବେଳକୁ ବ୍ରିଟିଶ କର୍ତ୍ତୃପକ୍ଷ ମନେ କଲେ ଯେ ଏ ଅନୁଷ୍ଠାନ ରାଜଦ୍ରୋହ ପ୍ରଚାରରେ ଅଗ୍ରଣୀ ହୋଇଛି । ସେହି ସମୟରୁ କଂଗ୍ରେସ ଯେ ରାଜଦ୍ରୋହୀ ସଙ୍ଗଠନ ନୁହେଁ , ତାହା ପ୍ରମାଣିତ କରିବା ପାଇଁ ଉଦ୍ୟମ କରିବାକୁ ହୋଇଥିଲା । ରାଜଭକ୍ତିସୂଚକ ପ୍ରସ୍ତାବ ବିଭିନ୍ନ ଅଧିବେଶନରେ ଗୃହୀତ ହେଲେ ମଧ କଂଗ୍ରେସ ଯେ ପ୍ରକୃତ ରାଜାନୁରକ୍ତ, ଏ ବିଶ୍ୱାସ ବ୍ରିଟିଶ ଶାସକମାନଙ୍କର ରହିଲା ନାହିଁ । ଲୋକଙ୍କୁ ସନ୍ତୁଷ୍ଟ ରଖି କଂଗ୍ରେସ ଆନ୍ଦୋଳନର ମୂଳଭିତ୍ତିକୁ ଦୁର୍ବଳ କରିଦେବା ଉଦ୍ଦେଶ୍ୟରେ ଏହି ସମୟରେ ବ୍ରିଟିଶ ଶାସକମାନେ ତଦାନୀନ୍ତନ ବ୍ୟବସ୍ଥାପକଭାବରେ ୬/୭ଜଣ ଲେଖାଏଁ ନିର୍ବାଚିତ ପ୍ରତିନିଧିଙ୍କୁ ସ୍ଥାନ ଦେବାର ବ୍ୟବସ୍ଥା କଲେ । ଏହି ନିର୍ବାଚିତ ପ୍ରତିନିଧିଙ୍କ ସଂଖ୍ୟା କ୍ରମେ କ୍ରମେ ବଢ଼ାଇ ଦିଆଗଲା ।୧୯୦୮ର ମିଣ୍ଟୋ-ମର୍ଲେ ସଂସ୍କାର ଓ ୧୯୧୯ର ମଣ୍ଟେଗୁ- ଚେମ୍ସଫୋର୍ଡ଼ ସଂସ୍କାର ବ୍ୟବସ୍ଥା ଏହାର ପ୍ରମାଣ ।

## ସଂସ୍କାର ଓ ଦମନ

ଏକ ଦିଗରେ ନିର୍ବାଚିତ ପ୍ରତିନିଧିମାନଙ୍କୁ ଶାସନ ବ୍ୟବସ୍ଥା ସହିତ ସଂଶ୍ଳିଷ୍ଟ କରିବା ସଙ୍ଗେ ସଙ୍ଗେ ଅପର ଦିଗରେ ନାନା ଦମନମୂଳକ ବ୍ୟବସ୍ଥା ଚାଲିଲା । ୧୮୯୯-୧୯୦୭ ପର୍ଯ୍ୟନ୍ତ ଲର୍ଡ଼ କର୍ଜନ ଭାରତର ବଡ଼ଲାଟ ଥିଲେ । ତାଙ୍କ କାର୍ଯ୍ୟକାଳ ମଧ୍ୟରେ ଅକ୍ଟୋବର ୧୬ ତାରିଖ, ୧୯୦୫ରେ ବଙ୍ଗ-ବିଚ୍ଛେଦ ବ୍ୟବସ୍ଥା ଘୋଷଣା କରାଗଲା । ଏହା ଫଳରେ ଦେଶରେ ଗୋଟିଏ ନୂଆ ଭାବଧାରା ଜନ୍ମ ଲାଭ କଲା; ଦେଶସାରା ଗୋଟିଏ ନୂଆ ରାଜନୀତିକ ଜାଗରଣର ଚିହ୍ନ ଫୁଟି ଉଠିଲା । ଅବସ୍ଥା ସମ୍ଭାଳି ନେବା ପାଇଁ ବ୍ରିଟିଶ ସରକାର ଲର୍ଡ଼ କର୍ଜନଙ୍କ ପରେ ଲର୍ଡ଼ ମିଣ୍ଟୋଙ୍କୁ ପଠାଇଲେ; କିନ୍ତୁ ସେଥିରେ ମଧ ଆଶାନୁରୂପ ଫଳ ଲାଭ ହେଲା ନାହିଁ । ସେତେବେଳକୁ ଭାରତର ବାସ୍ତବ ପରିସ୍ଥିତି ଭିନ୍ନ ଧାରା ଧରିଥିଲା । ଜାତିର ରାଜନୀତିକ ଦାବୀ ଯେତିକି ବଢ଼ିଗଲା, ବ୍ରିଟିଶ ସରକାର ତାହାର ସମ୍ମୁଖୀନ ହେବା ପାଇଁ ସେହି ଅନୁପାତରେ ଜୋରସୋରରେ ଦ୍ୱୈତ-ନୀତି ଚଳାଇଲେ । ଏ ନୀତିର ଦୁଇଟି ଦିଗ । ଏକ ଦିଗରେ ଭାରତବାସୀଙ୍କ ହାତକୁ ସାମାନ୍ୟ ରାଜନୀତିକ ଅଧିକାର ଦିଆଯିବ; ଅନ୍ୟ ଦିଗରେ ଜାତୀୟ ଜାଗରଣକୁ ଦବାଇ ଦେବା ପାଇଁ ସେହି ପରିମାଣରେ ଦମନ ଚଳାଇବାକୁ ହେବ । ବ୍ରିଟିଶମାନେ ଭାରତ ଛାଡ଼ି ଯିବା ପର୍ଯ୍ୟନ୍ତ ଏ ନୀତି ଧରି ଚଳିଲେ । ଗଲାବେଳେ ଦେଶକୁ ଦୁଇଖଣ୍ଡ କରି ଭାରତ ଓ ପାକିସ୍ତାନ ସୃଷ୍ଟି କଲେ । ଏହା ଏ ନୀତିର ଚରମ ପରିଣତି ।

## ବଙ୍ଗ-ଭଙ୍ଗ

ବଙ୍ଗ-ଭଙ୍ଗ ପରେ ୧୯୦୫ ଠାରୁ ୧୯୧୨ ମଧ୍ୟରେ ଦମନ ନୀତି ଭୀଷଣ ଆକାର ଧାରଣ କରିଥିଲା । ୧୯୦୮ରେ ରାଜଦ୍ରୋହାତ୍ମକ ସଭା ଆଇନ, ୧୯୧୦ରେ ପ୍ରେସ ଆଇନ ଓ ୧୯୧୨ରେ ଫୌଜଦାରୀ(ସଂଶୋଧନ) ଆଇନ ପ୍ରଣୟନ କରାଯାଇଥିଲା । ଅଥଚ ଏହି ସମୟରେ ଶାସନ ସଂସ୍କାରର ଦ୍ୱିତୀୟ ଦଫା ଭାରତକୁ ଦିଆଯାଇଥିଲା ।

## ନବ ଜାଗରଣର ତରଙ୍ଗ

ଏହି ସମୟରେ ଭାରତର ଚାରିଆଡ଼େ ନବଜାଗରଣର ତରଙ୍ଗ ଖେଳି ଯାଇଥିଲା । ୧୯୦୮ରୁ ୧୯୧୦ରେ ସନ୍ତ୍ରାସମୂଳକ କାର୍ଯ୍ୟକଳାପ ନାନା କ୍ଷେତ୍ରରେ ଆତ୍ମପ୍ରକାଶ କରିଥିଲା । ୧୯୦୮ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୧୮ ତାରିଖରେ ଲୋକମାନ୍ୟ ତିଳକଙ୍କୁ ଛଅବର୍ଷ ସଶ୍ରମ କାରାଦଣ୍ଡର ହୁକୁମ ହୋଇଥିଲା । ଖବରକାଗଜଗୁଡ଼ିକ ମୁହଁରେ ତୁଣ୍ଡ ବାନ୍ଧି ଦିଆଯାଇଥିଲା । ସଭା ସମିତିଗୁଡ଼ିକୁ ବେଆଇନ୍ ଘୋଷଣା କରାଯାଇଥିଲା । ୧୯୧୨ରେ ଦିଲ୍ଲୀର ଚାନ୍ଦନୀଚୌକଠାରେ ତଦାନୀନ୍ତନ ଭାଇସ୍‌ରୟ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ଉପରେ ବୋମାମାଡ଼ ହୋଇଥିଲା । ତାହା ଫଳରେ ସେ ଆହତ ହୋଇଥିଲେ । ସେହି ବର୍ଷ ପଞ୍ଚମ ଜର୍ଜ ସିଂହାସନରେ ଅଭିଷିକ୍ତ ହେଲେ । ଏ ସୁବିଧା ଗ୍ରହଣ କରି ବ୍ରିଟିଶ ସରକାର ପୂର୍ବ ଓ ପଶ୍ଚିମ ଉଭୟ ବଙ୍ଗକୁ ମିଶାଇ ଦେଲେ; ବିହାର ଓ ଓଡ଼ିଶାକୁ ବଙ୍ଗଳାରୁ କାଢ଼ି ଆଣି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ସ୍ଥାପନ କଲେ । ଏହି ସମୟରେ ଭାଷା, ସଂସ୍କୃତି , ଶାସନ ସୁବିଧା ଓ ଆର୍ଥନୀତିକ ସମ୍ପର୍କ ଭିତ୍ତିରେ ପ୍ରଦେଶ ଗଠନ ନୀତି ଓ ପ୍ରାଦେଶିକ ସ୍ୱତନ୍ତ୍ରତା ନୀତି ସ୍ଥିର କଲେ ।

## ଲୋକମାନ୍ୟ ତିଳକ

ଲୋକମାନ୍ୟ ତିଳକ ୧୯୧୬ ଅପ୍ରେଲ ମାସରେ ମହାରାଷ୍ଟ୍ରରେ ହୋମରୁଲ ଲିଗ୍ ସ୍ଥାପନ କରିଥିଲେ । ସେହି ବର୍ଷ ଅକ୍ଟୋବର ମାସରେ ଆନୀ ବେଶାନ୍ତଙ୍କ ନେତୃତ୍ୱରେ ନିଖିଳ ଭାରତ ହୋମରୁଲ ଲିଗ୍ ସ୍ଥାପିତ ହେଲା । ହୋମରୁଲ୍ ଆନ୍ଦୋଳନ କ୍ରମେ କ୍ରମେ ବୃଦ୍ଧି ପାଇଥିଲା । ବ୍ରିଟିଶ ସରକାର ଆତଙ୍କିତ ହେଲେ । ତାହା ଫଳରେ ଦୁଇଜଣ ସହକର୍ମୀଙ୍କ ସହ ମିସେସ୍ ବେଶାନ୍ତଙ୍କୁ ଉଟକମଣ୍ଡଳଠାରେ ୧୯୧୭ ଜୁନ୍ ମାସ ୧୪ ତାରିଖଠାରୁ ନଭେମ୍ବର ୧୪ ତାରିଖ ପର୍ଯ୍ୟନ୍ତ ଅଟକବନ୍ଦୀ କରି ରଖାଗଲା ।

## ପ୍ରଥମ ମହାଯୁଦ୍ଧ

ଏ ସମୟରେ ପ୍ରଥମ ମହାଯୁଦ୍ଧ ଚାଲିଥିଲା । ଦଳେ ଭାରତୀୟ ବିପ୍ଳବୀ ଦେଶ ବାହାରୁ ଅସ୍ତ୍ରଶସ୍ତ୍ର ଆମଦାନୀ କରି ଏ ଦେଶରେ ବିପ୍ଳବ ନିଆଁ ଚଳାଇବା ପାଇଁ ଉଦ୍ୟମ କରିଥିଲେ । ଏମାନଙ୍କ ମଧ୍ୟରୁ ଆଉ ଦଳେ ଜର୍ମାନୀ ସହିତ ବନ୍ଧୁତ୍ୱ ସ୍ଥାପନ କରିଥିଲେ । ଏହି ସମୟରେ ମେସୋପଟାମିଆ ଦୁର୍ଘଟନା ଘଟିଲା । ଅଷ୍ଟିନ୍ ଚେମ୍ବରଲେନ୍ ଭାରତ ସଚିବ ପଦରୁ ଇସ୍ତଫା ଦେଲେ । ତାଙ୍କ ସ୍ଥାନରେ ମଣ୍ଟେଗୁ ନିଯୁକ୍ତ ହେଲେ । ସେ ଭାରତକୁ ଆସି ଅନୁସନ୍ଧାନ ଚଳାଇଲେ । ସେତେବେଳେ ଲର୍ଡ଼ ଚେମ୍ସଫୋର୍ଡ଼ ବଡ଼ଲାଟ ଥିଲେ । ସେ ଦୁହେଁ ମିଶି ଭାରତରେ ଶାସନ ସଂସ୍କାର ସମ୍ବନ୍ଧରେ ଗୋଟିଏ ରିପୋର୍ଟ ଦେଲେ । ତାହା ୧୯୧୮ ଜୁନ୍ ମାସରେ ପ୍ରକାଶିତ ହୋଇଥିଲା । ମଣ୍ଟେଗୁ-ଚେମସ୍‌ଫୋର୍ଡ଼ ନାମରେ ଏ ରିପୋର୍ଟ ପରିଚିତ । ଭାରତରେ ଦ୍ୱୈତ ଶାସନ ପ୍ରବର୍ତ୍ତିତ ହେବ ବୋଲି ଏଥିରେ ପରାମର୍ଶ ଦିଆଯାଇଥିଲା । ବ୍ରିଟିଶ ପାର୍ଲିଆମେଣ୍ଟରେ ସେ ଅନୁସାରେ ଆଇନ ଗୃହୀତ ହୋଇଗଲା ଓ ୧୯୧୯ ଡ଼ିସେମ୍ବରମାସ

୨୫ ତାରିଖ ଦିନ ଭାରତରେ ମଣ୍ଟେଗୁ-ଚେମସଫୋର୍ଡ଼ ଶାସନ ସଂସ୍କାର ଚାଲୁ ହେଲା । ସେତେବେଳକୁ ମୌଲାନା ସଉକତ ଅଲି, ମହମ୍ମଦ ଅଲି ଓ ମୌଲାନା ଆଜାଦଙ୍କୁ ୫ ବର୍ଷ କାଳ ଅଟକବନ୍ଦୀ କରି ରଖାଯାଇଥିଲା । ଶାସନ ସଂସ୍କାର ଚଳିବା ଦିନ ସେମାନଙ୍କୁ ମୁକ୍ତି ଦିଆଯାଇଥିଲା ।

## ଜାଲିଆନାବାଲାବାଗ ହତ୍ୟାକାଣ୍ଡ

ଏହା ପୂର୍ବରୁ ପ୍ରଥମ ମହାଯୁଦ୍ଧ ଶେଷ ହୋଇଥିଲା । ଭାରତର ଜାତୀୟତାକୁ ଦବାଇବା ପାଇଁ ରାଉଲାଟ୍ ବିଲ୍ ଆରମ୍ଭ କରାଯାଇଥିଲା । ତାହା ପୂର୍ବରୁ ଭାରତରେ ରାଜଦ୍ରୋହର ପ୍ରସାର ବିଷୟରେ ଅନୁସନ୍ଧାନ କରିବା ପାଇଁ ଗୋଟିଏ କମିଟି ବସିଥିଲା । ଲର୍ଡ଼ ରାଉଲାଟ୍ ଏ କମିଟିର ସଭାପତି ଥିଲେ । ତେଣୁ ଏ କମିଟି ରାଉଲାଟ୍ କମିଟି ନାମରେ ପରିଚିତ । ଏ କମିଟି ଯେଉଁ ରିପୋର୍ଟ ଦେଇଥିଲେ, ଭାରତର ଚାରିଆଡ଼େ ରାଜଦ୍ରୋହାତ୍ମକ ଭାବ ବ୍ୟାପି ଯାଇଛି, ଏପରିକି ସ୍ୱାମୀ ବିବେକାନନ୍ଦ ମଧ୍ୟ ରାଜଦ୍ରୋହର ପ୍ରଚାର କରୁଥିଲେ ବୋଲି ସେଥିରେ ଲେଖାଥିଲା । ଏହାକୁ ଦବାଇବା ପାଇଁ ଆଇନ ପ୍ରଣୟନ କରାଯାଉ ବୋଲି ସେଥିରେ ପରାମର୍ଶ ଦିଆଯାଇଥିଲା । ତଦନୁସାରେ ଆଇନର ପାଣ୍ଡୁଲିପି ପ୍ରସ୍ତୁତ ହୋଇଥିଲା । ଏହି ରାଉଲାଟ ବିଲ ବିରୁଦ୍ଧରେ ତୀବ୍ର ପ୍ରତିବାଦ ହେଲା । ଦିଲ୍ଲୀ, ପଞ୍ଜାବ ଓ ଭାରତର ଆଉ କେତେକ ସ୍ଥାନରେ ଜନତା ଉପରେ ଗୁଳି ଚାଲିଲା । ଏହି ଆନ୍ଦୋଳନ ସମୟରେ ଜାଲିଆନାବାଲାବାଗ ଗୁଳିକାଣ୍ଡ ଘଟିଥିଲା । ଜେନେରାଲ ଡ଼ାୟାରଙ୍କ ଦ୍ୱାରା ପରିଚାଳିତ ବ୍ରିଟିଶ ସୈନ୍ୟଙ୍କ ଗୁଳିରେ ଜାଲିଆନାବାଲାବାଗଠାରେ ହେଉଥିବା ସଭାରେ ୧୨୦୦ ଭାରତୀୟ ମରି ଶୋଇଲେ ।

## ମହାତ୍ମା ଗାନ୍ଧୀଙ୍କ ଆବିର୍ଭାବ

ଏହି ସମୟରେ ଭାରତର ରାଜନୀତି କ୍ଷେତ୍ରରେ ମହାତ୍ମା ଗାନ୍ଧୀଙ୍କ ଆବିର୍ଭାବ । ଦକ୍ଷିଣ ଆଫ୍ରିକାର ଟ୍ରାନ୍ସଭାଲଠାରେ ସତ୍ୟାଗ୍ରହର ଯେଉଁ ପରୀକ୍ଷାରେ ସେ କୃତକାର୍ଯ୍ୟ ହୋଇଥିଲେ, ସେତେବେଳକୁ ଭାରତର ଖଇରା, ବୋରାସାଦ ଓ ଚମ୍ପାରଣଠାରେ ସେହି ପରୀକ୍ଷା ଚଳାଇ ସେ ଜୟଯୁକ୍ତ ହୋଇଥିଲେ । ୧୯୧୯ରେ ଅମୃତସରଠାରେ କଂଗ୍ରେସ ଅଧିବେଶନ ହେଲା । ଲୋକେ ଯେଉଁ ହିଂସାତ୍ମକ କାର୍ଯ୍ୟ କରିଥିଲେ, ତାହାର ନିନ୍ଦାବାଦ କରି ଗାନ୍ଧିଜୀ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ । ଏହା ବିରୁଦ୍ଧରେ ତୀବ୍ର ପ୍ରତିବାଦ ଉଠିଲା, କିନ୍ତୁ ପରିଶେଷରେ ଗାନ୍ଧିଜୀଙ୍କ ପ୍ରସ୍ତାବ ଗୃହୀତ ହୋଇ ପାରିଥିଲା ।

## ଅସହଯୋଗ ଆନ୍ଦୋଳନ

ଜାଲିଆନାବାଲାବାଗ ହତ୍ୟାକାଣ୍ଡ ଫଳରେ ତ ଲୋକେ ଉତ୍ତେଜିତ ହୋଇଥିଲେ, ଖିଲାଫତ୍ ପ୍ରଶ୍ନ ମୁସଲମାନମାନଙ୍କୁ ଉତ୍କ୍ଷିପ୍ତ କରି ପକାଇଲା । ହିନ୍ଦୁ-ମୁସଲମାନ ମିଶି ୧୯୨୦ ଅପ୍ରେଲ ମାସ ୯ ତାରିଖ ଦିନ ସରକାରଙ୍କ ସହିତ ଅସହଯୋଗ କରିବା ପାଇଁ ବ୍ୟବସ୍ଥା କଲେ । ୧୯୨୦ ଅଗଷ୍ଟ ମାସ ୧ ତାରିଖ ଦିନ ଲୋକମାନ୍ୟ ତିଳକ ସ୍ୱର୍ଗାରୋହଣ କଲେ; ଆନ୍ଦୋଳନର ନେତୃତ୍ୱ ଭାର ଗାନ୍ଧିଜୀଙ୍କ ଉପରେ ପଡ଼ିଲା ।

୧୯୨୦ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ କଲିକତାଠାରେ କଂଗ୍ରେସର ଗୋଟିଏ ବିଶେଷ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିରେ ବ୍ରିଟିଶ ସରକାରଙ୍କ ସ୍କୁଲ କଲେଜ, କଚିରୀ ଓ କାଉନ୍ସିଲ ସହିତ ଅସହଯୋଗ କରାଯିବ ବୋଲି ପ୍ରସ୍ତାବ ଗୃହୀତ ହେଲା । ଏହିଠାରୁ ଭାରତର ରାଜନୀତିରେ ଏକ ନୂତନ ଯୁଗ-ସ୍ୱରାଜ୍ୟ ଅଧ୍ୟାୟ ଆରମ୍ଭ ହେଲା ।

ଏହା ପରେ ୧୯୨୦ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ମାସରେ ନାଗପୁରଠାରେ କଂଗ୍ରେସ ଅଧିବେଶନ ହେଲା । ସେଥିରେ କଂଗ୍ରେସର ପୁରୁଣା ଉଦ୍ଦେଶ୍ୟ ବଦଳରେ 'ଶାନ୍ତିପୂର୍ଣ୍ଣ ଓ ନ୍ୟାୟସଙ୍ଗତ' ଉପାୟରେ ଭାରତବାସୀଙ୍କ ଦ୍ୱାରା 'ସ୍ୱରାଜ୍ୟ ପ୍ରାପ୍ତି' ନୂତନ ଉଦ୍ଦେଶ୍ୟ ରୂପେ ଗୃହୀତ ହେଲା ।

## ସ୍ୱଦେଶୀ

ସେହି ସମୟରୁ ହାତକଟା ହାତବୁଣା ଲୁଗା ପିନ୍ଧିବା ଓ ଗାଁଗହଳିରେ ଉତ୍ପନ୍ନ ହେଉଥିବା ଜିନିଷ ବ୍ୟବହାର କରିବା ଅର୍ଥ "ସ୍ୱଦେଶୀ ବ୍ରତ" ବୋଲି ଗ୍ରହଣ କରାଗଲା । ବିଦେଶୀ ବର୍ଜନ ଓ ଜାତୀୟ ଶିକ୍ଷାର ପ୍ରସାର ବ୍ୟବସ୍ଥା ହେଲା । କଂଗ୍ରେସ ଲୋକେ ବ୍ୟବସ୍ଥା ସଭାରେ ପ୍ରବେଶ କଲେ ନାହିଁ । ୧୯୨୧ରେ ତତ୍କାଳୀନ ବ୍ରିଟିଶ ଯୁବରାଜ ଯେତେବେଳେ ଭାରତ ପରିଦର୍ଶନ କଲେ, ସେତେବେଳେ ସେ ସମ୍ପର୍କୀୟ ସମସ୍ତ ଅନୁଷ୍ଠାନକୁ ବର୍ଜନ କରାଯାଇଥିଲା । ଏହି ସମୟରେ ପ୍ରଥମ ସତ୍ୟାଗ୍ରହର ସୂତ୍ରପାତ ହୋଇଥିଲା । ଗୁଜରାଟର ବର୍ଦ୍ଦୋଲୀ ଓ ବୋରାସାଦ ତାଲୁକାରେ ଗାନ୍ଧିଜୀ ଖଜଣା ବନ୍ଦ ଆକାରରେ ବ୍ୟାପକ "ଆଇନ୍ ଅମାନ୍ୟ ଆନ୍ଦୋଳନ" ଆରମ୍ଭ କରିବେ ବୋଲି ସ୍ଥିର କରିଥିଲେ । ୧୯୨୧ରେ ଅହମଦାବାଦଠାରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା, ସେଥିରେ ଏ ପ୍ରସ୍ତାବ ଗୃହୀତ ହୋଇଥିଲା । ଏ ଅଧିବେଶନ ପୂର୍ବରୁ ଭାରତର ସେ ସମୟର ବଡ଼ଲାଟ ଲର୍ଡ଼ ରିଡ଼ିଂ ଓ ଗାନ୍ଧିଜୀଙ୍କ ଭିତରେ କେତେକ ଆଲୋଚନା ହୋଇଥିଲା, କିନ୍ତୁ ସେଥିରେ କିଛି ଲାଭ ହେଲା ନାହିଁ । ତତ୍ପରେ ଲର୍ଡ଼ ରିଡ଼ିଂ ବୋମ୍ବେଠାରେ ଏକ ସଭାରେ ମାନିଥିଲେ ଯେ, "ଅସହଯୋଗ ଆନ୍ଦୋଳନ ସଫଳ ହେବାର ଅତି ନିକଟ୍‌ରେ ପହଞ୍ଚିଥିଲା ।"

## ଚୌରୀଚୌରା

ଏହି ସମୟରେ ଚୌରୀଚୌରା ଘଟନା ଘଟିଲା । ଉତ୍ତର ପ୍ରଦେଶ ଗୋରଖପୁର ଜିଲ୍ଲାର ଗୋଟିଏ ଗ୍ରାମରେ ଲୋକେ ଉତ୍‌କ୍ଷିପ୍ତ ହୋଇ ୨୧ ଜଣ କନେଷ୍ଟବଲ ଓ ଜଣେ ସବ୍-ଇନିସ୍‌ପେକ୍ଟରଙ୍କୁ ଥାନା ଭିତରେ ପୂରାଇ ପୋଡ଼ି ମାରି ପକାଇଲେ । ଏ ହିଂସାତ୍ମକ ଘଟଣା ଯୋଗୁଁ ଗାନ୍ଧିଜୀ 'ଖଜଣା ବନ୍ଦ ଆନ୍ଦୋଳନ' ବନ୍ଦ କରି ଦେଲେ । ଏହା ପରେ ପରେ ତାଙ୍କୁ ଗିରଫ କରି ଛଅ ବର୍ଷ ଜେଲଦଣ୍ଡ ଦିଆଯାଇଥିଲା ।

## ବ୍ୟବସ୍ଥାସଭା ପ୍ରବେଶ

ଗାନ୍ଧିଜୀଙ୍କ ଅନୁପସ୍ଥିତିରେ ଆଇନ ଅମାନ୍ୟ ଆନ୍ଦୋଳନ ଚାଲିବ କି କଂଗ୍ରେସର ଲୋକେ ବ୍ୟବସ୍ଥାସଭାରେ ପଶି ବିରୋଧ ସୃଷ୍ଟି କରିବେ, ଏ ବିଷୟ ନେଇ କଂଗ୍ରେସ ଭିତରେ ତୀବ୍ର ମତଭେଦ ଉପସ୍ଥିତ ହେଲା । ଏ ପ୍ରଶ୍ନର ସମାଧାନ କରିବା ପାଇଁ ଆଇନ ଅମାନ୍ୟ ଅନୁସନ୍ଧାନ କମିଟି

ନିଯୁକ୍ତ ହେଲା । ଭାରତର ବିଭିନ୍ନ ପ୍ରଦେଶରେ ଗସ୍ତ କରିବା ପରେ ଏ କମିଟି ଯେଉଁ ମତ ଦେଲେ, ସେଥିରେ ମଧ୍ୟ କିଛି ନିଷ୍ପତ୍ତି ହୋଇପାରିଲା ନାହିଁ । ୧୯୨୩ ସେପ୍ଟେମ୍ବର ମାସରେ ଦିଲ୍ଲୀଠାରେ କଂଗ୍ରେସର ଗୋଟିଏ ବିଶେଷ ଅଧିବେଶନ ବସିଲା । ବ୍ୟବସ୍ଥାପକସଭାମାନଙ୍କରେ ପ୍ରବେଶ କରିବା ପାଇଁ ସେ ବୈଠକରେ ଅନୁମତି ଦିଆଗଲା । ୧୯୨୩ ଡ଼ିସେମ୍ବର ମାସରେ କାକିନାଡ଼ାଠାରେ କଂଗ୍ରେସ ଅଧିବେଶନ ପୁଣି ବସିଲା । ବ୍ୟବସ୍ଥାପକସଭାରେ ପ୍ରବେଶ କରିବା ପ୍ରସ୍ତାବ ଏଥିରେ ଅନୁମୋଦନ କରାଯାଇଥିଲା । ୧୯୨୪ ଫେବୃଆରୀ ମାସ ୪ ତାରିଖ ଦିନ ଗାନ୍ଧିଜୀଙ୍କୁ ମୁକ୍ତି ଦିଆଯାଇଥିଲା । ସେବର୍ଷ ଡ଼ିସେମ୍ବର ମାସରେ ବେଲଗାଁଓଠାରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା, ସେଥିରେ ସେ ସଭାପତି ଆସନ ଗ୍ରହଣ କରିଥିଲେ । ଆଇନ୍ ଅମାନ୍ୟ ଆନ୍ଦୋଳନ ଚଳାଇବା ପାଇଁ ଦେଶ ପ୍ରସ୍ତୁତ ନଥିଲା । ୧୯୨୫ରେ କାନପୁରଠାରେ କଂଗ୍ରେସର ଯେଉଁ ଅଧିବେଶନ ହେଲା, ସେଥିରେ ବ୍ୟବସ୍ଥାପକସଭା ପ୍ରବେଶ ପ୍ରସ୍ତାବ ପୁଣି ସ୍ୱୀକୃତ ହୋଇଥିଲା । ସେତେବେଳକୁ କଂଗ୍ରେସ ଭିତରେ ଦଳେ ବ୍ୟବସ୍ଥାପକସଭା ପ୍ରବେଶର ପକ୍ଷପାତୀ, ଆଉ ଦଳେ ରଚନାତ୍ମକ କାର୍ଯ୍ୟକ୍ରମ ଓ ଆଇନ୍ ଅମାନ୍ୟ ଆନ୍ଦୋଳନର ସମର୍ଥକ, ଏହିପରି ଦୁଇଟି ଦଳ ଥିଲେ । ପ୍ରଥମ ଦଳର ନେତୃସ୍ଥାନୀୟ ବ୍ୟକ୍ତିଙ୍କ ମଧ୍ୟରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଓ ପଣ୍ଡିତ ମୋତିଲାଲ ନେହେରୁ ଓ ଦ୍ୱିତୀୟ ଦଳର ନେତା ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଥିଲେ । ବ୍ୟବସ୍ଥାପକସଭାରେ ପ୍ରବେଶ କରିବା ଦ୍ୱାରା ସ୍ୱରାଜ୍ୟର ପଥ ସୁଗମ ହେବ ବୋଲି ଯେଉଁମାନେ ବିଶ୍ୱାସ କରୁଥିଲେ, ବର୍ଷ କେତୋଟି ଭିତରେ ସେମାନଙ୍କର ଆଖି ଖୋଲିଗଲା । ୧୯୩୦ରେ ବ୍ୟବସ୍ଥାପକସଭା ଛାଡ଼ି ଚାଲି ଆସିବା ପାଇଁ ଯେଉଁ ନିର୍ଦ୍ଦେଶମୂଳକ ପ୍ରସ୍ତାବ କଂଗ୍ରେସର ଗୃହୀତ ହୋଇଥିଲା, ପଣ୍ଡିତ ମୋତିଲାଲ ନେହେରୁ ତାହାର ସ୍ରଷ୍ଟା ଥିଲେ । ତାହା ପୂର୍ବରୁ ୧୯୨୮ରେ କଂଗ୍ରେସର ଯେଉଁ ଅଧିବେଶନ ହୋଇଥିଲା, ସେଥିରେ ବର୍ଷକ ଭିତରେ ଭାରତରେ ଔପନିବେଶିକ ସ୍ୱାୟତ୍ତ ଶାସନ ସ୍ଥାପନ କରନ୍ତୁ ବୋଲି ବ୍ରିଟିଶ ସରକାରଙ୍କୁ ନୋଟିସ ଦ୍ୱାରା ଜଣାଇ ଦିଆଯାଇଥିଲା । ସେଥିରେ କିଛି ଫଳ ହେଲା ନାହିଁ । ବର୍ଷ ପୂରିବାର ଦୁଇ ଦିନ ପୂର୍ବରୁ ଅର୍ଥାତ୍ ୧୯୨୯ ଡ଼ିସେମ୍ବର ମାସ ୨୩ ତାରିଖ ଦିନ ଗାନ୍ଧିଜୀ ସେ ସମୟର ବଡ଼ଲାଟ ଲର୍ଡ୍ ଇରଉଇନଙ୍କ ସହିତ ଦେଖା କରି ଶେଷ ଚେଷ୍ଟା କରିଥିଲେ । ତାହା ମଧ୍ୟ ବିଫଳ ହେଲା । ଦୁଇ ଦିନ ପରେ ଅର୍ଥାତ୍ ୧୯୨୯ ଡ଼ିସେମ୍ବର ମାସ ୨୫ ତାରିଖ ଦିନ ଲାହୋର କଂଗ୍ରେସ ଅଧିବେଶନରେ ସ୍ୱାଧୀନତା ପ୍ରସ୍ତାବ ଗୃହୀତ ହେଲଣ ।

## ପୂର୍ଣ୍ଣ ସ୍ୱାଧୀନତା ଯୁଗ

ଏହା ପୂର୍ବରୁ କଂଗ୍ରେସର ଉଦ୍ଦେଶ୍ୟ ଥିଲା ସ୍ୱରାଜ୍ୟ ଲାଭ । ସ୍ୱରାଜର ଅର୍ଥ-ସମ୍ଭବ ହେଲେ ବ୍ରିଟିଶ ସାମ୍ରାଜ୍ୟ ଭିତରେ ଥାଇ ମୁକ୍ତି ଲାଭ; ଆବଶ୍ୟକ ହେଲେ ବ୍ରିଟିଶ ସାମ୍ରାଜ୍ୟ ବାହାରେ ସ୍ୱାଧୀନତା । ପୂର୍ଣ୍ଣ ସ୍ୱାଧୀନତା ଦ୍ୱାରା ବ୍ରିଟିଶ ସାମ୍ରାଜ୍ୟ ବାହାରେ ରହିବା ସଙ୍କଳ୍ପ ଗ୍ରହଣ କରାଯାଇଥିଲା । ସ୍ୱାଧୀନତା ଲାଭ କରିବାକୁ ହେଲେ ତୀବ୍ର ସଂଗ୍ରାମ ଆବଶ୍ୟକ । ଲବଣ ସତ୍ୟାଗ୍ରହ, ଖଜଣା ବନ୍ଦ ଆଦି ଆକାରରେ ଏ ଯୁଦ୍ଧ ଆରମ୍ଭ ହେଲା । ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହିତ ୬୦ ହଜାର କଂଗ୍ରେସ ସେବକ ବନ୍ଦୀ ହେଲେ । ପୂର୍ଣ୍ଣ ବେଗରେ ୮ ମାସ କାଳ ଏ ଅହିଂସା ସଂଗ୍ରାମ ଚାଲିଲା । ସେ ସମୟରେ ଲଣ୍ଡନଠାରେ ଗୋଲଟେବୁଲ ବୈଠକ ଚାଲିଥିଲା । ସେ ସମୟର ବ୍ରିଟିଶ ପ୍ରଧାନମନ୍ତ୍ରୀ ରାମସେ ମ୍ୟାକଡୋନାଲଡ୍ ସେଥିରେ କୌଣସି ଫଳ ଲାଭ ହେବାର ଆଶା ନ ଦେଖି କଂଗ୍ରେସ ସହିତ ମିଳାମିଶା କରିବା ଦିଗରେ ଉଦ୍ୟମ ଆରମ୍ଭ କଲେ । ୧୯୩୧ ଜାନୁଆରୀ ମାସ ୨୬ ତାରିଖ ଦିନ ଗାନ୍ଧିଜୀ ଓ ଅନ୍ୟ ୨୫ ଜଣ ମୁଖ୍ୟ ନେତାଙ୍କୁ ବନ୍ଦୀଶାଳାରୁ ମୁକ୍ତି ଦିଆଗଲା । ବଡ଼ଲାଟ ଲର୍ଡ୍ ଇରଉଇନ ସେମାନଙ୍କ ସହିତ ଆଲୋଚନା ଚଳାଇଲେ । ଏହା ଫଳରେ "ଗାନ୍ଧୀ-ଇରଉଇନ ଚୁକ୍ତି" ସ୍ଥାପିତ ହେଲା । ୧୯୩୧ ମାର୍ଚ୍ଚ ମାସ ୫ ତାରିଖ ଦିନ ଏ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ଏ ଚୁକ୍ତିକୁ ମୁକ୍ତି ସଂଗ୍ରାମର ପ୍ରଥମ ବିଜୟ ବୋଲି କୁହାଯାଏ । ସେବର୍ଷ ଡ଼ିସେମ୍ବର ମାସରେ ଗାନ୍ଧିଜୀ ଗୋଲଟେବୁଲ ବୈଠକରେ ଯୋଗଦାନ କରିଥିଲେ ।

## ବ୍ରିଟିଶ ପେଞ୍ଚ

ଗୋଲଟେବୁଲ ଭିତରେ ଓ ବାହାରେ ବ୍ରିଟିଶ ସରକାର ଗୋଟାଏ ନୂଆ ଚାଲ ଆରମ୍ଭ କଲେ । ଗାନ୍ଧିଜୀ ଲଣ୍ଡନରେ ଥିବା ସମୟରେ ଯୁକ୍ତପ୍ରଦେଶରେ(ବର୍ତ୍ତମାନର ଉତ୍ତର ପ୍ରଦେଶ) ପଣ୍ଡିତ ଜବାହରଲାଲ ନେହେରୁ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ 'ସୀମାନ୍ତ ଗାନ୍ଧି' ଖାଁ ଅବଦୁଲ ଗଫୁର ଖାଁଙ୍କୁ ଗିରଫ କରାଗଲା । ଗୋଲଟେବୁଲ ବୈଠକରେ ମଧ୍ୟ ଆଗାଖାଁ ଓ ଜିନ୍ନା ଚାଳିତ ମୁସଲମାନ ପ୍ରତିନିଧିଦଳ ସାମ୍ପ୍ରଦାୟିକ ମନୋଭାବ ଧରି ଭାରତରେ ସ୍ୱାଧୀନତା ପ୍ରାପ୍ତିରେ ବାଧା ଦେବାରେ ଲାଗିଲେ; ମାନ୍ଦା ଦଳର ଲୋକେ ମଧ୍ୟ ଅଗ୍ରଗମନରେ ପ୍ରତିବନ୍ଧକ ହେଲେ; ବ୍ରିଟିଶ ସରକାର ମଧ୍ୟ ହିନ୍ଦୁଙ୍କଠାରୁ ହରିଜନଙ୍କୁ ଅଲଗା କରି ଦେବାର ଚେଷ୍ଟା ଚଳାଇଲେ । ଗାନ୍ଧିଜୀ ଖାଲି ହାତରେ ଭାରତକୁ ଫେରି ଆସିଲେ । ଭାରତରେ ପହଞ୍ଚି ସେ ତଦାନୀନ୍ତନ ବଡ଼ଲାଟ ଲର୍ଡ୍ ଉଏଲିଙ୍ଗଡ଼ନଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛାକଲେ; କିନ୍ତୁ ବଡ଼ଲାଟ ନାସ୍ତି କରିଦେଲେ । ପୁଣି ବ୍ରିଟିଶ ସରକାରଙ୍କ ସହିତ ସଂଘର୍ଷ ଲାଗିଗଲା । ଆଇନ ଅମାନ୍ୟ ଆନ୍ଦୋଳନ ସମୟରେ ୧୯୩୨-୩୩ରେ ୧ ଲକ୍ଷ ୨୦ ହଜାର ଭାରତବାସୀ ବନ୍ଦୀ ହେଲେ ।

## ପୁନା-ଚୁକ୍ତି

ଗୋଲଟେବୁଲ ବୈଠକ ସମ୍ପର୍କରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ୧୯୩୨ ମାର୍ଚ୍ଚ ମାସରେ ଯେଉଁ ସାମ୍ପ୍ରଦାୟିକ ମୀମାଂସା ଦେଇଥିଲେ, ତାହା ଫଳରେ ହରିଜନମାନଙ୍କୁ ହିନ୍ଦୁ ସମ୍ପ୍ରଦାୟରୁ ଅଲଗା କରି ଦିଆଯାଇଥିଲା । ଗାନ୍ଧିଜୀ ସେତେବେଳେ ବନ୍ଦୀ । ଯେରବାଡ଼ା ଜେଲରେ ତାଙ୍କୁ ବନ୍ଦୀ କରି ରଖାଯାଇଥିଲା । ସାମ୍ପ୍ରଦାୟିକ ବଣ୍ଟୁଆରା ବିରୁଦ୍ଧରେ ସେ ଆମରଣ ଅନଶନ ଆରମ୍ଭ କଲେ । ୬ ଦିନ ଅନଶନ ଫଳରେ ବଣ୍ଟୁଆରା ବଦଳି ଗଲା ଓ ହରିଜନମାନେ ବ୍ୟବସ୍ଥାପକସଭାରେ ଅଧିକ ଆସନ ପାଇଲେ । ଜେଲ ଭିତରେ ଥାଇ ହରିଜନ ଆନ୍ଦୋଳନ ଚଳାଇବେ ବୋଲି ଗାନ୍ଧିଜୀ ଦାବୀ କଲେ । ବ୍ରିଟିଶ ସରକାର ଏଥିରେ ସ୍ୱୀକୃତ ନହେବାରୁ ୧୯୩୩ରେ ପୁଣି ସେ ଅନଶନ ଆରମ୍ଭ କରିଥିଲେ । ବର୍ଷେ କାଳ ରାଜନୀତିକ

କାର୍ଯ୍ୟକଳାପରେ ଯୋଗ ଦେବେ ନାହିଁ ବୋଲି ସେ ଘୋଷଣା କଲେ । ଏ ବର୍ଷକ ସେ ହରିଜନ କାମରେ କଟାଇଥିଲେ । ଏହି ସମୟରେ ସେ ପୁରୀଠାରୁ ଭଦ୍ରକ ପର୍ଯ୍ୟନ୍ତ ପଦଯାତ୍ରା କରିଥିଲେ । ୧୯୩୪ ଅପ୍ରେଲ ମାସରେ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖାଯିବ ବୋଲି ସେ ସ୍ଥିର କରି ଥିଲେ । ସେ ବର୍ଷ ମଇ ମାସରେ ପାଟନାଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଯେଉଁ ବୈଠକ ହୋଇଥିଲା, ସେଥିରେ ଗାନ୍ଧିଜୀଙ୍କର ଏ ନିଷ୍ପତ୍ତିକୁ ସ୍ୱୀକାର କରାଯାଇଥିଲା । ବଡ଼ଲାଟ ଲର୍ଡ଼ ୱେଲିଂଡନ ଭାବିଲେ ଯେ, କଂଗ୍ରେସକୁ ଚୂର୍ଣ୍ଣୀଭୂତ କରିବାରେ କୃତକାର୍ଯ୍ୟ ହୋଇଛନ୍ତି । ତେଣୁ ୧୯୩୪ ନଭେମ୍ବର ମାସରେ ସେ କେନ୍ଦ୍ର ବ୍ୟବସ୍ଥା ପରିଷଦର ନିର୍ବାଚନ କରାଇଲେ । ୧୯୩୪ ଅକ୍ଟୋବର ମାସରେ ବମ୍ବେଠାରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା, ସେଥିରେ ଏ ନିର୍ବାଚନରେ କଂଗ୍ରେସ ଲଢ଼ିବ ବୋଲି ସ୍ଥିର କରାଯାଇଥିଲା । ଏ ନିର୍ବାଚନରେ କଂଗ୍ରେସ ଜୟଯୁକ୍ତ ହେଲା । ୧୯୩୪ ରୁ ୧୯୪୫ ପର୍ଯ୍ୟନ୍ତ କେନ୍ଦ୍ର ବ୍ୟବସ୍ଥା ପରିଷଦରେ କଂଗ୍ରେସ ଦଳ ପ୍ରଶଂସନୀୟ କାର୍ଯ୍ୟ କରିଥିଲେ ।

## ଦାୟିତ୍ୱର ଭାର

୧୯୩୫ରେ ନୂଆ ଭାରତ ଶାସନ ଆଇନ ପ୍ରଚଳିତ ହେଲା । ଏଥିରେ ଦୁଇଟି ଭାଗ ଥିଲା- ରାଷ୍ଟ୍ରସଂଘ ବ୍ୟବସ୍ଥା ଓ ପ୍ରାଦେଶିକ ସ୍ୱତନ୍ତ୍ରତା । ଏଥିରୁ କେବଳ ପ୍ରାଦେଶିକ ସ୍ୱତନ୍ତ୍ରତା ଭାଗଟି ଚାଲୁ କରାଯାଇଥିଲା । ନୂଆ ଆଇନ ଅନୁସାରେ ୧୯୩୭ ଫେବୃଆରୀ ମାସରେ ଯେଉଁ ନିର୍ବାଚନ ହେଲା, ସେଥିରେ ୧୧ଟି ପ୍ରଦେଶ ମଧ୍ୟରୁ ୬ଟିରେ କଂଗ୍ରେସ ଜୟଯୁକ୍ତ ହେଲେ । ଲାଟମାନେ ଦୈନନ୍ଦିନ ଶାସନ ବ୍ୟବସ୍ଥାରେ ହସ୍ତକ୍ଷେପ କରିବେ ନାହିଁ ବୋଲି ପ୍ରତିଶ୍ରୁତି ନ ଦେଲେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବ ନାହିଁ, ଏହା କଂଗ୍ରେସ ପକ୍ଷରୁ ବ୍ରିଟିଶ ସରକାରଙ୍କୁ ଜଣାଇ ଦିଆଯାଇଥିଲା । ୪ ମାସ ପରେ ୧୯୩୭ ଜୁନ୍ ମାସରେ ଏ ପ୍ରତିଶ୍ରୁତି ମିଳିଲା । ତାହାଫଳରେ ୬ଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ସ୍ଥାପିତ ହେଲା । ଏହାର ଅବ୍ୟବହିତ ପରେ ଆସାମ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ମଧ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଏଠାରୁ ଏକ ନୂଆ ଅଧ୍ୟାୟ ଆରମ୍ଭ ହେଲା । ଆନ୍ଦୋଳନ ପନ୍ଥା ଛଡ଼ା କଂଗ୍ରେସ ଦେଶ ଶାସନର ଦାୟିତ୍ୱ ମଧ ଗ୍ରହଣ କଲା । କଂଗ୍ରେସ ଶାସିତ ପ୍ରଦେଶମାନଙ୍କରେ ନାନା ଲୋକହିତକର କାର୍ଯ୍ୟ ଚାଲିଲା ।

## ଦ୍ୱିତୀୟ ମହାଯୁଦ୍ଧ

ସେପ୍ଟେମ୍ବର ମାସ ୩ ତାରିଖ ୧୯୩୯ରେ ଦ୍ୱିତୀୟ ମହାଯୁଦ୍ଧ ଲାଗିଗଲା । କଂଗ୍ରେସ ଯୁଦ୍ଧ ଉଦ୍ୟମରେ ଯୋଗ ଦେବ କି ନାହିଁ, ଏ ପ୍ରଶ୍ନ ଗୁରୁତର ଆକାର ଧାରଣ କଲା । ବ୍ରିଟିଶ ସରକାର ଯେଉଁ ଯୁଦ୍ଧ କରୁଛନ୍ତି, ତାହାର ଲକ୍ଷ୍ୟ କଅଣ ଏ କଥା ଘୋଷଣା କରାଯାଉ ବୋଲି କଂଗ୍ରେସ କାର୍ଯ୍ୟକାରୀ ସମିତି ଦାବୀ କଲେ । ବ୍ରିଟିଶ ସରକାରଙ୍କ ପକ୍ଷରୁ ଉତ୍ତର ମିଳିଲା ଯେ, ସେମାନେ ଏ ବିଷୟରେ ଏ ପର୍ଯ୍ୟନ୍ତ ଚୂଡ଼ାନ୍ତ ନିଷ୍ପତ୍ତି କରି ନାହାନ୍ତି । ଏହା ଫଳରେ ୧୯୩୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ଓ ନଭେମ୍ବର ମାସରେ ବିଭିନ୍ନ ପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳଗୁଡ଼ିକ ଇସ୍ତଫା ଦେଲେ ଓ ଏଗୁଡ଼ିକରେ ଲାଟ ଶାସନ ପ୍ରବର୍ତ୍ତିତ ହେଲା । ୧୯୪୦ ଅଗଷ୍ଟ ମାସରେ ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ ଲିନଲିଥ୍‌ଗୋ ଓ ଭାରତ ସଚିବ ଆମେରି ଘୋଷଣା କଲେ ଯେ, ବଡ଼ଲାଟଙ୍କ ଏକ୍‌ଜିକ୍ୟୁଟିଭ କାଉନସିଲରେ ଆହୁରି କେତେ ଜଣ ଭାରତୀୟଙ୍କୁ ସ୍ଥାନ ଦିଆଯିବ । ଭାରତ ଶାସନ ଆଇନରେ ରାଷ୍ଟ୍ରସଂଘ ସ୍ଥାପନର ଯେଉଁ ବ୍ୟବସ୍ଥା ଥିଲା, ୯ କୋଟି ମୁସଲମାନ ସେଥିରେ ଆପତ୍ତି ଉଠାଇବାରୁ ତାହା ଚାଲୁ କରାଯିବ ନାହିଁ ବୋଲି ମଧ ସେମାନେ ଘୋଷଣା କଲେ । ଇଚ୍ଛାବିରୁଦ୍ଧରେ ଭାରତକୁ ଯୁଦ୍ଧ ଭିତରକୁ ଟାଣି ନେଇଥିବାରୁ ତାହା ବିରୁଦ୍ଧରେ ପ୍ରତିବାଦ କରିବା ଉଦ୍ଦେଶ୍ୟରେ ବ୍ୟକ୍ତିଗତ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେଲା । ଗାନ୍ଧିଜୀ ବାହାରେ ଥାଇ ଏ ଆନ୍ଦୋଳନ ଚଳାଇଲେ । ଏ ଆଇନ ଅମାନ୍ୟରେ ଆଚାର୍ଯ୍ୟ ବିନୋବା ଭାବେ ପ୍ରଥମ ସତ୍ୟାଗ୍ରହୀ ଥିଲେ । ବର୍ଷେ କାଳ ଏ ଆନ୍ଦୋଳନ ଚାଲିଲା । ତାହା ପରେ ବ୍ରିଟିଶ ସରକାର ସତ୍ୟାଗ୍ରହୀ ବନ୍ଦୀମାନଙ୍କୁ ମୁକ୍ତି ଦେଇଥିଲେ ।

## ଶେଷ ସଂଗ୍ରାମ-୧୯୪୨

୧୯୪୨ ମାର୍ଚ୍ଚ ମାସରେ ବ୍ରିଟିଶ ପାର୍ଲାମେଣ୍ଟରେ ଗୋଟିଏ ଘୋଷଣା ପ୍ରକାଶ ପାଇଲା ଯେ, କେତେଗୁଡ଼ିଏ ନୂଆ ପ୍ରସ୍ତାବ ନେଇ ସାର୍ ଷ୍ଟାଫୋର୍ଡ଼ କ୍ରିପସ ଭାରତକୁ ଯିବେ । ସେ ଆସିଲେ, ଗାନ୍ଧିଜୀଙ୍କ ସହିତ ଦେଖା ହେଲା । କଂଗ୍ରେସ ସଭାପତି, ମୁସଲିମ୍ ଲିଗ୍ ସଭାପତି, ରାଜା-ମହାରାଜା, ଅନୁନ୍ନତ ସମ୍ପ୍ରଦାୟ ସଂଘ, ହିନ୍ଦୁ ମହାସଭା ଆଦି ସମସ୍ତ ଦଳ ସହିତ ଆଲୋଚନା ଚାଲିଲା । ସୁରକ୍ଷା ସମ୍ପର୍କରେ ବଡ଼ଲାଟଙ୍କ ଏକଜିକ୍ୟୁଟିଭ କାଉନସିଲରେ ଯେଉଁ ସଭ୍ୟ ନିଯୁକ୍ତ ହେବେ, ତାଙ୍କୁ ଅଧିକ କ୍ଷମତା ଦିଆଯାଉ ବୋଲି କଂଗ୍ରେସ ପକ୍ଷରୁ ଦାବୀ ଉଠିଲା । କ୍ରିପସ ଏଥିରେ ରାଜି ହୋଇ ପାରିଲେ ନାହିଁ । ଏହି ପ୍ରଶ୍ନ ଉପରେ ତାଙ୍କ ପ୍ରଚେଷ୍ଟା ପଣ୍ଡ ହୋଇଗଲା ।

## ଭାରତ ଛାଡ଼

ଗାନ୍ଧିଜୀ ଦେଖିଲେ ଯେ, ବ୍ରିଟିଶ ସରକାର ଭାରତ ନ ଛାଡ଼ିଲେ ଏ ଦେଶର ନିସ୍ତାର ନାହିଁ । ସେ 'ଭାରତ ଛାଡ଼' ପ୍ରସ୍ତାବ ଆଗତ କଲେ । ଏହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ବ୍ୟାପକ ସତ୍ୟାଗ୍ରହ କରାଯିବ ବୋଲି ଘୋଷଣା କଲେ । ୧୯୪୨ ଅଗଷ୍ଟ ମାସ ୮ ତାରିଖ ଦିନ ବମ୍ବେଠାରେ ବସିଥିବା ନିଖିଳ ଭାରତ କଂଗ୍ରେସ କମିଟିରେ ଜାତିର ଏ ଦାବୀ ପ୍ରସ୍ତାବ ଗୃହୀତ ହେଲା । ଅଗଷ୍ଟ ୯ ତାରିଖ ଭୋର ବେଳେ ମହାତ୍ମା ଗାନ୍ଧୀ, କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଓ ଅନ୍ୟାନ୍ୟ ନେତାମାନଙ୍କୁ ଗିରଫ କରାଗଲା । ଏ ଖବର ଚାରିଆଡ଼େ ଖେଳିଗଲା, ଲୋକେ ଉତ୍‌କ୍ଷିପ୍ତ ହୋଇ ଉଠିଲେ । ବୋମ୍ବେ ଆଦି ବଡ଼ ବଡ଼ ସହରର ସମବେତ ଜନତା ଉପରେ ଗୁଳି ଚାଲିଲା । ଏକ ବିରାଟ ବିପ୍ଳବ ଦେଶର ଏକ ସୀମାରୁ ଅପର ସୀମା ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଗଲା ।

## ଆଜାଦ୍ ହିନ୍ଦ୍ ସରକାର

ଏହି ସମୟରେ ଭାରତ ବାହାରେ ସୁଭାଷଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ଆଜାଦ ହିନ୍ଦ୍ ବାହିନୀ ଯୁଦ୍ଧ ପରେ ଯୁଦ୍ଧରେ କୃତକାର୍ଯ୍ୟ ହୋଇ ଇମ୍ଫାଲ ରଣକ୍ଷେତ୍ରରେ ଜାତୀୟ ପତାକା ଉଡ଼ାଇ ଥିଲେ । ଭାରତ ବାହାରେ

ମଧ୍ୟ ସ୍ୱାଧୀନ ଭାରତ ସରକାର ସ୍ଥାପିତ ହୋଇ ରାଜ୍ୟ ପରିଚାଳନା କରୁଥିଲା ।

ଗାନ୍ଧିଜୀଙ୍କୁ ଆଗା ଖାଁ ପ୍ରାସାଦରେ ବନ୍ଦୀ କରି ରଖାଯାଇଥିଲା । ଅଗଷ୍ଟ ଆନ୍ଦୋଳନ ବିଷୟରେ ବ୍ରିଟିଶ ସରକାର କଂଗ୍ରେସ ବିରୁଦ୍ଧରେ ଯେଉଁ ଦୋଷାରୋପ କରିଥିଲେ, ତାହାର ପ୍ରତିବାଦ କରି ସେ ୨୧ ଦିନ ଅନଶନ କରିଥିଲେ । ସେତେବେଳେ ତାଙ୍କର ବୟସ ୭୩ ବର୍ଷ । ୧୯୪୩ ମାର୍ଚ୍ଚ ମାସ ୩ ତାରିଖ ଦିନ ଏ ଅନଶନ ସମାପ୍ତ ହୋଇଥିଲା । ଆଗା ଖାଁ ପ୍ରାସାଦରେ ବନ୍ଦୀ ଥିଲାବେଳେ ଗାନ୍ଧିଜୀ ସାଂଘାତିକରୂପେ ପୀଡ଼ିତ ହୋଇ ପଡ଼ିବାରୁ ୧୯୪୪ ମଇ ମାସ ୬ ତାରିଖ ଦିନ ତାଙ୍କୁ ମୁକ୍ତି ଦିଆଯାଇଥିଲା ।

## ଶେଷ ଅଧ୍ୟାୟ

୧୯୪୬ ମାର୍ଚ୍ଚ ମାସରେ ମୁକ୍ତି ସଂଗ୍ରାମର ଶେଷ ଅଧ୍ୟାୟ ଆରମ୍ଭ ହେଲା । ବ୍ରିଟିଶ କ୍ୟାବିନେଟ୍ ମିଶନ୍ ଭାରତକୁ ଆସି କଂଗ୍ରେସ, ମୁସଲିମ୍ ଲିଗ୍ ଓ ଅନ୍ୟାନ୍ୟ ରାଜନୀତିକ ଦଳ ସହିତ ଆଲୋଚନା ଆରମ୍ଭ କଲେ । କେନ୍ଦ୍ରରେ ଅସ୍ଥାୟୀ ସରକାର ସ୍ଥାପନ ଓ ବିଧାନ ସଭା ଗଠନ କରାଯିବ ବୋଲି ନିଷ୍ପତ୍ତି ହେଲା । ପ୍ରଥମେ ମୁସଲିମ୍ ଲିଗ୍ ଅସ୍ଥାୟୀ ସରକାରରେ ଯୋଗ ଦେଲେ ନାହିଁ । ଲର୍ଡ୍ ୱାଭେଲ ସେତେବେଳେ ଭାରତର ବଡ଼ଲାଟ ଥାଆନ୍ତି । ସେ ଏକ ପେଞ୍ଚ ଖେଳି ଲିଆକତ୍ ଅଲି ଖାଁ ଓ ଅବଦୁର୍ ରାବ୍ ନିସ୍ତାରଙ୍କୁ ଆଣି ଅସ୍ଥାୟୀ ସରକାରରେ ପୂରାଇ ଦେଲେ । ବିଧାନସଭାରେ ଲିଗ୍ ସଦସ୍ୟମାନେ ଯୋଗ ଦେଲେ ନାହିଁ । ଏହା ଫଳରେ ସେମାନେ ଗୋଟିଏ ଅଚଳ ପରିସ୍ଥିତି ସୃଷ୍ଟି କଲେ ।

୧୯୪୬ ଅଗଷ୍ଟ ମାସରେ ଭାରତର ଚାରିଆଡ଼େ ବ୍ୟାପକରୂପେ ସାମ୍ପ୍ରଦାୟିକ ଗଣ୍ଡଗୋଳ ଲାଗିଗଲା । ଯେଉଁ ପ୍ରଦେଶମାନଙ୍କରେ ଲିଗ୍ ମନ୍ତ୍ରିମଣ୍ଡଳ ଥିଲେ, ସେଠାରେ ଏହା ଭୀଷଣ ଆକାର ଧାରଣ କଲା । କେନ୍ଦ୍ର ସରକାରରେ ଲିଗ୍‌ପକ୍ଷର ଲୋକ କୌଣସି ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଅବଲମ୍ବନ କରିବାରେ ବାଧା ଦେଲେ । ଫଳରେ ଦେଶକୁ ଦୁଇଖଣ୍ଡ କରି ଭାରତ ଓ ପାକିସ୍ତାନ ସୃଷ୍ଟି କରିବା ଛଡ଼ା ଅନ୍ୟ ଉପାୟ ରହିଲା ନାହିଁ । ଲର୍ଡ୍ ମାଉଣ୍ଟବେଟନ ସେତେବେଳେ ବଡ଼ଲାଟ ଥିଲେ ।

୧୯୪୬ ଅଗଷ୍ଟ ମାସ ୧୫ ତାରିଖ ଦିନ ବ୍ରିଟିଶ ସରକାର ଭାରତ ଛାଡ଼ି ଚାଲିଯିବେ ବୋଲି ଘୋଷଣା କଲେ । ୧୯୪୭ ଅଗଷ୍ଟ ମାସ ୧୪ ତାରିଖ ରାତି ୨ଟାରେ ବ୍ରିଟିଶ ସରକାର କ୍ଷମତା ହସ୍ତାନ୍ତର କଲେ । ସେହିଦିନଠାରୁ ଭାରତ ସ୍ୱାଧୀନ ହେଲା ।

• • •

| | | |
|---|---|---|
| ୧୫୬୮ | : | ଗୋହିରାଟିକିରୀ ଯୁଦ୍ଧରେ ଆଫଗାନ ଶାସକ ସୁଲେମାନ କରାନୀଙ୍କ ଦ୍ୱାରା ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ପରାଜିତ । ଓଡ଼ିଶାର ସ୍ୱାଧୀନ-ସୂର୍ଯ୍ୟ ଅସ୍ତମିତ । |
| ୧୫୯୨-୧୭୫୧ | : | ଓଡ଼ିଶାରେ ମୋଗଲ ଶାସନ । |
| ୧୭୫୧-୧୮୦୩ | : | ଓଡ଼ିଶାରେ ମରହଟ୍ଟା ଶାସନ । |
| ୧୫୮୩ | : | ମୁକ୍ତା ବେପାର ପାଇଁ 'ଟାଇଗର' ଜାହାଜରେ ରାଫଲ ଫିଚ୍ ନାମକ ଇଂରେଜଙ୍କ ପ୍ରଥମ ଭାରତ ଆଗମନ । |
| ୧୫୯୯ | : | ସେପ୍ଟେମ୍ବର ୨୨-ବ୍ରିଟିଶ ସାମ୍ରାଜ୍ଞୀଙ୍କ ଦ୍ୱାରା ୩୦ ହଜାର ପାଉଣ୍ଡ ମୂଳଧନରେ ଇଷ୍ଟଇଣ୍ଡିଆ କମ୍ପାନୀ ଗଠନ । |
| ୧୬୩୩ | : | ଏପ୍ରିଲ ୨୧- ମୋଗଲ ସୁବାଦାରଙ୍କ ଅନୁମତି ନେଇ କାର୍ଟରାଇଟ ଓ କାପଟେନ ବ୍ରଟନଙ୍କ ନେତୃତ୍ୱରେ ୮ ଜଣିଆ ଫିରିଙ୍ଗି ବଣିକଦଳ ଜଗତ୍‌ସିଂହପୁରର ହରିଶପୁର ବନ୍ଦର ବାଟ ଦେଇ ଓଡ଼ିଶାରେ ପଦାର୍ପଣ । ହରିଶପୁର ପରେ ବାଲେଶ୍ୱର ଓ ପିପିଲିରେ ବାଣିଜ୍ୟ କୋଠି ସ୍ଥାପନ । |
| ୧୬୪୨ | : | ବାଲେଶ୍ୱରରେ ଇଷ୍ଟ ଇଣ୍ଡିଆ କମ୍ପାନୀର କାର୍ପାସ ବସ୍ତ୍ର କାରଖାନା ପ୍ରତିଷ୍ଠା । |
| ୧୭୫୩ | : | ନିଜାମ ଅଲ୍ଲି ଶାସନାଧୀନ ଗଞ୍ଜାମ ଓ କୋରାପୁଟ ଜିଲ୍ଲା ଫରାସୀମାନଙ୍କୁ ଦାନ । |
| ୧୭୫୩-୫୯ | : | ଗଞ୍ଜାମ ଜିଲ୍ଲା ଫରାସୀ ଶାସନାଧୀନ । |
| ୧୭୫୭ | : | ସିରାଜ ଉଦ୍ଦୌଲା ପଲାସୀ ଯୁଦ୍ଧରେ ଇଂରେଜମାନଙ୍କ ଦ୍ୱାରା ପରାଜିତ । ଫରାସୀ ଶାସନ ବିରୁଦ୍ଧରେ ସର୍ବପ୍ରଥମ ଘୁମୁସର ରାଜା କୃଷ୍ଣ ଭଞ୍ଜଙ୍କ ବିଦ୍ରୋହ । |
| ୧୭୬୪ | : | ବକ୍ସାର ଯୁଦ୍ଧରେ ବଙ୍ଗ ନବାବ, ଦିଲ୍ଲୀ ସମ୍ରାଟ ଓ ଅଯୋଧ୍ୟା ସମ୍ରାଟ ପରାଜିତ । |
| ୧୭୬୫ | : | ମୋଗଲ ସମ୍ରାଟ ସାହା ଆଲାମ-ଦ୍ୱିତୀୟଙ୍କଠାରୁ ଇଷ୍ଟ ଇଣ୍ଡିଆ କମ୍ପାନୀ ବଙ୍ଗ, ବିହାର ଓ ଓଡ଼ିଶାର ଦେୱାନୀ ଲାଭ । |
| ୧୭୬୬ | : | ହୀରା ବେପାର ପାଇଁ ମିଷ୍ଟର ଟମାସ ମୋଟେଙ୍କ ସମ୍ବଲପୁର ଆଗମନ । |
| | : | ଉତ୍ତର ସରକାର ଇଂରେଜ ଶାସନାଧୀନ- ଇଂରେଜ ଶାସନ ବିରୁଦ୍ଧରେ ଘୁମୁସର ରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଏବଂ ୧୭୬୭ରେ ପାରଳାଖେମୁଣ୍ଡି ରାଜା ନାରାୟଣ ଦେଓଙ୍କ ବିଦ୍ରୋହ । |

# ଓଡ଼ିଶାରେ ମୁକ୍ତି-ସଂଗ୍ରାମ

● ଡକ୍ଟର ଜଗନ୍ନାଥ ପଟ୍ଟନାୟକ

ଓଡ଼ିଆଜାତିର ସ୍ୱାଧୀନ ଚେତନା କଳିଙ୍ଗ ଯୁଦ୍ଧରୁ ପରିଦୃଷ୍ଟ । ଜନ୍ମଭୂମିର ସ୍ୱାଧୀନତା ରକ୍ଷା ପାଇଁ ଦୟାନଦୀ କୂଳରେ କଳିଙ୍ଗବାସୀ ଏକ ଭୟାବହ ଯୁଦ୍ଧର ସମ୍ମୁଖୀନ ହୋଇଥିଲେ । ତାର ପ୍ରାୟ ଏକଶହ ବର୍ଷ ପରେ ଖାରବେଳ କଳିଙ୍ଗକୁ ଏକ ବିରାଟ ସାମ୍ରାଜ୍ୟରେ ପରିଣତ କରିଥିଲେ । ଖଣ୍ଡଗିରିସ୍ଥିତ ହାତୀଗୁମ୍ଫା ଅନୁଶାସନରୁ ଏହା ଜଣାଯାଏ । ପରବର୍ତ୍ତୀ ସମୟରେ ଏକାଦଶ-ଦ୍ୱାଦଶ ଶତାବ୍ଦୀର ଗଙ୍ଗ ବଂଶ ରାଜତ୍ୱରେ ଚୋଡଗଙ୍ଗ ଦେବ ଏକ ବିରାଟ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ଏହି ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାନଦୀ ଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଗଙ୍ଗ ବଂଶର ପତନ ପରେ ଗଜପତି ବଂଶ ରାଜୁତି କରିଥିଲେ । ଏହି ସାମ୍ରାଜ୍ୟର ମହାମାନ୍ୟ ସମ୍ରାଟ କପିଳେନ୍ଦ୍ର ଦେବ ଓଡ଼ିଶାର ଦକ୍ଷିଣସୀମା କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ଏହି ରାଜବଂଶ ଅଧୀନରେ ଓଡ଼ିଶାର ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାନଦୀ, ପୂର୍ବରେ ବଙ୍ଗୋପସାଗର, ପଶ୍ଚିମରେ ମଧ୍ୟପ୍ରଦେଶର ଅମରକଣ୍ଟକ ଓ ଦକ୍ଷିଣରେ କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ସେହି ସମୟରେ ଓ ତା ପୂର୍ବରୁ ଓଡ଼ିଶାରେ ବହୁ କାରୁକାର୍ଯ୍ୟ ଖଚିତ ମନ୍ଦିର ନିର୍ମାଣ କରାଯାଇଥିଲା । ତନ୍ମଧ୍ୟରୁ ଲିଙ୍ଗରାଜ ମନ୍ଦିର, ପୁରୀର ଜଗନ୍ନାଥ ମନ୍ଦିର ଓ ଚନ୍ଦ୍ରଭାଗାଠାରେ କୋଣାର୍କ ମନ୍ଦିର ଉଲ୍ଲେଖଯୋଗ୍ୟ । ଗଜପତି ବଂଶର ଶାସନପରେ ମୁସଲମାନ ଶାସନ ଆରମ୍ଭ ହୋଇଥିଲା । ଓଡ଼ିଶାର ସ୍ୱାଧୀନତାକୁ ବୈଦେଶିକ ଆକ୍ରମଣରୁ ରକ୍ଷା କରିବା ନିମନ୍ତେ ରାଜାମାନେ ବହୁ ଦୁର୍ଗ ନିର୍ମାଣ କରିଥିଲେ । ବିଶେଷତଃ ଉତ୍ତରରୁ ମୁସଲମାନମାନଙ୍କର ଆକ୍ରମଣର ସମ୍ଭାବନା ଥିବାରୁ ରାଇବଣିଆଁ ଦୁର୍ଗ ନିର୍ମାଣ କରାଯାଇଥିଲା । ଗଙ୍ଗ ରାଜତ୍ୱ ଓ ଭୋଇ ବଂଶ ସମୟରେ ବହୁ ଦୁର୍ଗ ନିର୍ମାଣ କରାଯାଇଥିଲା । କଟକ ସ୍ଥିତ ବାରବାଟି ଦୁର୍ଗ ଏହାର ଜ୍ୱଳନ୍ତ ନିଦର୍ଶନ । ଏହାସତ୍ତ୍ୱେ ନିଜ ନିଜ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ଯୋଗୁଁ ଓଡ଼ିଶା ବାହ୍ୟ ଶତ୍ରୁମାନଙ୍କର ଶିକାର ହୋଇଥିଲା । ମୁସଲମାନଙ୍କ ପରେ ମୋଗଲ, ପରେ ପରେ ମରହଟ୍ଟା ଓ ଶେଷରେ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଇଂରେଜମାନଙ୍କର ଅଧୀନସ୍ଥ ହୋଇଥିଲା ।

## ଖୋର୍ଦ୍ଧା ବିଦ୍ରୋହ (୧୮୦୪-୧୮୦୬)

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ବହୁ ଷଡ଼ଯନ୍ତ୍ରର ଆଶ୍ରୟ ନେଇ ଓଡ଼ିଶାବାସୀଙ୍କର ସ୍ୱାଧୀନତା ଉପରେ କୁଠାରାଘାତ କଲେ । ଖୋର୍ଦ୍ଧା ରାଜା ଅଧୀନରେ ବହୁ ଅଞ୍ଚଳ ରହିଥିଲା । ଇଂରେଜମାନେ କୌଣସି ମତେ ଖୋର୍ଦ୍ଧା ରାଜାଙ୍କୁ ସନ୍ତୁଷ୍ଟ କରି ନିଜର ସେନାବାହିନୀକୁ ଓଡ଼ିଶା ମଧ୍ୟକୁ ପ୍ରବେଶ କରିବା ପାଇଁ ଗଜପତି ରାଜାଙ୍କୁ ପ୍ରଲୋଭନ ଦେଖାଇଥିଲେ । ଇଂରେଜ ସେନାବାହିନୀର କମାଣ୍ଡର କର୍ଣ୍ଣେଲ ହାରକୋର୍ଟ, ରାଜାଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ଯୁଦ୍ଧରେ ତାଙ୍କର ଜୟଲାଭ ନେଇ ପୂର୍ବରୁ ହରାଇଥିବା ଚାରିଗୋଟି ଅଞ୍ଚଳ ରାହାଙ୍ଗ, ଲିମ୍ବାଇ, ସିରାଇ, ଚବିଶକୁଦ ସମେତ ଚାରିଗୋଟି ପ୍ରଗଣା ଫେରସ୍ତ କରିଦିଆଯିବ । ଯୁଦ୍ଧ ସରିଗଲା, ଇଂରେଜମାନେ ଜୟଯୁକ୍ତ ହେଲେ । କିନ୍ତୁ ସେମାନେ ପ୍ରତାରିତ କରି ଆଉ ସେ ଅଞ୍ଚଳଗୁଡ଼ିକୁ ଫେରସ୍ତ ଦେଲେ ନାହିଁ । ଏହି ପ୍ରତାରଣା ଓଡ଼ିଶାବାସୀଙ୍କୁ ମର୍ମାହତ କରିଥିଲା । ସେତେବେଳେ ଗଜପତି ରାଜା ଥାଆନ୍ତି ନାବାଳକ ଦ୍ୱିତୀୟ ମୁକୁନ୍ଦଦେବ । ତାଙ୍କର ଜଣେ ବିଜ୍ଞ ପରାମର୍ଶଦାତା ଓ ମନ୍ତ୍ରୀ ଥାଆନ୍ତି ଜୟକୃଷ୍ଣ ରାଜଗୁରୁ । ପିପିଲି ଓ ଅନ୍ୟାନ୍ୟ ସ୍ଥାନରେ ଓଡ଼ିଶାର ପାଇକମାନେ ଜୟକୃଷ୍ଣ ରାଜଗୁରୁଙ୍କ ଦ୍ୱାରା ସଙ୍ଗଠିତ ହୋଇ ଇଂରେଜ ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିଦେଲେ । ପ୍ରାଥମିକ ଅବସ୍ଥାରେ ଇଂରେଜମାନେ ଭୀତତ୍ରସ୍ତ ହୋଇ ପଡ଼ିଥିଲେ । ଶେଷରେ ଫ୍ଲେଚରଙ୍କୁ ଦାୟିତ୍ୱ ଦିଆଯାଇଥିଲା । ସେ ଖୋର୍ଦ୍ଧାସ୍ଥିତ ବରୁଣେଇ ଗଡ଼ ମଧ୍ୟରେ ପ୍ରବେଶ କରିଥିଲେ । ସେତେବେଳକୁ ଦ୍ୱିତୀୟ ମୁକୁନ୍ଦ ଦେବ ଗଡ଼ ଛାଡ଼ି ଚାଲି ଯାଇଥିଲେ ଓ ଶେଷରେ ଜଙ୍ଗଲରୁ ଧରା ଯାଇଥିଲେ । ଖୋର୍ଦ୍ଧା ସମେତ ଓଡ଼ିଶାର ଲୋକେ ଏଥିରେ ମର୍ମାହତ ହୋଇଥିଲେ, କାରଣ ଗଜପତି ରାଜାଙ୍କୁ ସେମାନେ ଠାକୁର ରାଜାର ସମ୍ମାନ ଦେଉଥିଲେ । ତାଙ୍କୁ ଶେଷରେ ମେଦିନାପୁର ଜେଲକୁ ପଠାଯାଇଥିଲା । ଜୟକୃଷ୍ଣ ରାଜଗୁରୁଙ୍କୁ ମଧ୍ୟ ଧରାଯାଇ ସେହି ଜେଲକୁ ପଠାଯାଇ ଥିଲା । ରାଜା ମୁକୁନ୍ଦଦେବ ନାବାଳକ ଥିବାରୁ ତାଙ୍କୁ ୧୮୦୭ ମସିହାରେ କାରାମୁକ୍ତ କରାଯାଇଥିଲା । ମାତ୍ର ବିଚାର କରି ଜୟକୃଷ୍ଣ ରାଜଗୁରୁଙ୍କୁ ଫାଶି ଦିଆଯାଇଥିଲା । ମୁକୁନ୍ଦଦେବଙ୍କୁ ଖୋର୍ଦ୍ଧାର ବରୁଣେଇ ଗଡ଼ରେ ରଖାନଯାଇ ପୁରୀର ବାଲିସାହି ପ୍ରାସାଦରେ ରଖାଯାଇଥିଲା ଏବଂ ତାଙ୍କୁ ଜଗନ୍ନାଥ ମନ୍ଦିରର ପରିଚାଳନା ଦାୟିତ୍ୱ ଦିଆଯାଇଥିଲା । ଜୟକୃଷ୍ଣ ରାଜଗୁରୁଙ୍କୁ ଇଂରେଜ ବିରୋଧୀ ଆନ୍ଦୋଳନର ପ୍ରଥମ ଶହୀଦର ସମ୍ମାନ ଦିଆଯାଉଛି ।

## ପାଇକ ବିଦ୍ରୋହ (୧୮୧୭)

ଖୋର୍ଦ୍ଧା ବିଦ୍ରୋହ ପରେ ଆରମ୍ଭ ହୋଇଥିଲା ୧୮୧୭ ମସିହାରେ ପାଇକ ବିଦ୍ରୋହ । ତାର ନେତୃତ୍ୱ ନେଇଥିଲେ ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ମହାପାତ୍ର । ବକ୍ସି ଜଗବନ୍ଧୁ ନାମରେ ସେ ପରିଚିତ । ଏଥିରେ ସମାଜର ସବୁ ଶ୍ରେଣୀର ଲୋକ ଯୋଗ ଦେଇଥିଲେ ।

ବ୍ରିଟିଶ ଶାସନରେ ରୟତମାନେ ବହୁ ଦୁଃଖ କଷ୍ଟ ସହିଥିଲେ । ତତ୍କାଳୀନ ଇଂରେଜ ଶାସନର ଦାୟିତ୍ୱରେ ଥିବା ମେଜର ଫ୍ଲେଚର ଘନଘନ ରାଜସ୍ୱ ନୀତି ପ୍ରବର୍ତ୍ତନ କରି ଲୋକମାନଙ୍କ ଉପରେ କର ବଢ଼େଇ ଦେଇଥିଲେ । ଇଂରେଜମାନେ ଲୁଣ ତିଆରି ଓ ବିକ୍ରି ଉପରେ ଏକଚାଟିଆ ଅଧିପତ୍ୟ ବିସ୍ତାର କରିଥିଲେ । ଲୋକମାନେ ଲୁଣ ମାଗି

ଓ ତାଙ୍କୁ ବିକ୍ରି କରି ବହୁ ଅର୍ଥ ଉପାର୍ଜନ କରୁଥିଲେ । ଇଂରେଜମାନଙ୍କ ଅଧୀନକୁ ଆସିବା ଦ୍ୱାରା ଦର ବଢ଼ିଯାଇଥିଲା । ଓଡ଼ିଶାରେ ବହୁ ଦିନୁ ପ୍ରଚଳିତ କଉଡ଼ି ରାଜସ୍ୱ ଆକାରରେ ଦିଆଯାଉଥିଲା । ତାହାକୁ ଇଂରେଜମାନେ ବନ୍ଦ କରି ଦେଇଥିଲେ । ଇଂରେଜମାନେ ଏକ ନୂତନ ନୀତି ପ୍ରଣୟନ କରିବା ଦ୍ୱାରା ବହୁ ଓଡ଼ିଆ ଜମିଦାର ଜମିଦାରୀ ହରାଇଥିଲେ ଓ ତାଙ୍କ ପରେ ଆସି ପହଞ୍ଚିଥିଲେ ବଙ୍ଗଳାର ବହୁ ଜମିଦାର । ବଙ୍ଗାଳୀ ଜମିଦାରମାନଙ୍କର ରଇତମାନଙ୍କ ପ୍ରତି ସହାନୁଭୂତି ନଥିଲା । ବହୁ ଓଡ଼ିଆ ଅମଲାଙ୍କୁ ଚାକିରୀରୁ ବାହାର କରି ଦିଆଯାଇଥିଲା ଓ ତାଙ୍କ ସ୍ଥାନ ମଧ୍ୟ ବଙ୍ଗାଳି ଓ ମୁସଲମାନମାନେ ଅଧିକାର କରିଥିଲେ । ପାଇକମାନଙ୍କର ଦୁଃଖ ଦୁର୍ଦ୍ଦଶା କିଛି କମ ନଥିଲା । ପୂର୍ବରୁ ତାଙ୍କର ଜମିଦାରୀ ଉପରେ କୌଣସି କର ନଥିଲା । ମେଜର ଫ୍ଲେଚର ସେମାନଙ୍କ ଉପରେ କରଧାର୍ଯ୍ୟ କରିଥିଲେ । ଫଳରେ ସେମାନଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ପ୍ରକାଶ ପାଇଥିଲା ।

ବକ୍ସି ଜଗବନ୍ଧୁଙ୍କ ଉପରେ ଇଂରେଜମାନେ ବହୁ ଅତ୍ୟାଚାର କରିଥିଲେ । ସେ ପୁରୁଷାନୁକ୍ରମେ ଓଡ଼ଙ୍ଗ ଜମିଦାରୀ ଉପଭୋଗ କରୁଥିଲେ । କିନ୍ତୁ ଷଡ଼ଯନ୍ତ୍ର କରି ତାଙ୍କୁ ଜମିଦାରୀରୁ ବହିଷ୍କାର କରାଗଲା ଓ କୃଷ୍ଣଚନ୍ଦ୍ର ସିଂହ ନାମକ ଜଣେ ଜମିଦାରଙ୍କୁ ତାହା ନ୍ୟସ୍ତ କରାଗଲା । ଏ ଅନ୍ୟାୟ ସେ ସହ୍ୟ କରି ପାରିନଥିଲେ । ସେ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରି ଦେଲେ ।

ବାଣପୁର କନ୍ଧମାନଙ୍କ ସାହାଯ୍ୟରେ ପାଇକମାନେ ଖୋର୍ଦ୍ଧାରେ ଥିବା ଇଂରେଜମାନଙ୍କର କୋଷାଗାର ଓ ସରକାରୀ କୋଠାବାଡ଼ିମାନ ଧ୍ୱଂସ କରିଦେଇ ଥିଲେ । ରଥପୁରରେ ଦେଶଦ୍ରୋହୀ ବିଶ୍ୱାସଘାତକ ଚରଣ ପଟ୍ଟନାୟକଙ୍କୁ ହତ୍ୟା କରିଥିଲେ । ଇଂରେଜମାନେ ପ୍ରଥମେ ବହୁ କ୍ଷୟ କ୍ଷତି ସହିଥିଲେ । କ୍ରମେ ଏହି ବିଦ୍ରୋହ ପିପିଲି, ପଞ୍ଚାମୁଖାଇ, କୁଜଙ୍ଗ ଆଦି ସ୍ଥାନକୁ ପ୍ରସାରିତ ହୋଇଥିଲା । ଇଂରେଜମାନେ ବହୁ କଷ୍ଟରେ ବିଦ୍ରୋହକୁ ଦମନ କରିଥିଲେ । ଅନ୍ୟ ବିଦ୍ରୋହୀମାନେ ଧରା ହୋଇଥିଲେ ମଧ୍ୟ ବକ୍ସି ଜଗବନ୍ଧୁ ଓ ତାଙ୍କର ପ୍ରଧାନ ସହଯୋଗୀ କୃଷ୍ଣଚନ୍ଦ୍ର ବିଦ୍ୟାଧର, ପିପିଲି ବାହୁବଳେନ୍ଦ୍ର, ପାଟବାସ ମଙ୍ଗରାଜ, ପଦ୍ମନାଭ ଛୋଟରାୟ ଆଦି ନେତାମାନେ ଧରା ହୋଇ ପାରି ନଥିଲେ । ଶେଷରେ ବହୁ କୌଶଳ କରି ବକ୍ସି ଜଗବନ୍ଧୁଙ୍କୁ କଟକ ନେଇ ଯାଇଥିଲେ । ତାଙ୍କୁ ସସମ୍ମାନ କଟକରେ ଏକ ସ୍ୱତନ୍ତ୍ର ଘରେ ଅଟକ ରଖିଥିଲେ । ସେଇଠି ୧୮୨୯ ମସିହାରେ ଜଗବନ୍ଧୁ ମୃତ୍ୟୁବରଣ କରିଥିଲେ ।

ଏହି ୧୮୧୭ ବିଦ୍ରୋହକୁ ପାଇକ ବିଦ୍ରୋହ କୁହାଯାଉଥିଲେ ମଧ୍ୟ ଇଂରେଜ ଶାସନ ବିରୁଦ୍ଧରେ ଓଡ଼ିଶାବାସୀଙ୍କର ଏହା ଥିଲା ଏକ ସୁସଙ୍ଗଠିତ ବିଦ୍ରୋହ । ଏହି ବିଦ୍ରୋହ ଓଡ଼ିଶାରେ ଇଂରେଜ ଶାସନକୁ ଦୋହଲେଇ ଦେଇଥିଲା । ଇଂରେଜ ଐତିହାସିକ ଜର୍ଜ ଟ୍ୱେନ୍‌ବି ଏହା ସ୍ୱୀକାର କରିଥିଲେ ।

୧୮୧୭ ବିଦ୍ରୋହ ଦମନ ହେବାପରେ ଓଡ଼ିଶାବାସୀ ଚୁପ୍ ହୋଇ ବସି ନଥିଲେ । ଖୋର୍ଦ୍ଧାଠାରୁ ଅନତି ଦୂରରେ ତାପଙ୍ଗର ଦଳବେହେରା ମାଧବଚନ୍ଦ୍ର ରାଉତରାୟ ୧୮୨୭ ମସିହାରେ ପାଇକମାନଙ୍କୁ ଏକତ୍ରିତ କରି ବିଦ୍ରୋହ ଅବ୍ୟାହତ ରଖିଥିଲେ । ଏହାକୁ ଇଂରେଜମାନେ ଦମନ କରିଥିଲେ ମଧ୍ୟ ବ୍ରିଟିଶ କମିଶନର କର୍ଣ୍ଣେଲ ହାରକୋର୍ଟ ମାଧବରାଉତରାୟଙ୍କୁ ଭୂୟସୀ ପ୍ରଶଂସା କରିଥିଲେ । ତାପରେ ଦୃତିବାସ ପାଟସାହାଣି ୧୮୩୫-୩୬ ମସିହାରେ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ସେ ଦୀର୍ଘ ୩ ଦିନଧରି ବାଣପୁର ଥାନା ଦଖଲ କରି ସ୍ୱାଧୀନତା ଘୋଷଣା କରିଥିଲେ । ତାଙ୍କର ଶ୍ୱଶୁରଙ୍କ ସହାୟତାରେ ଇଂରେଜମାନେ ତାଙ୍କୁ ଧରି ନେଇ ଆଣ୍ଡାମାନ ପଠାଇ ଦେଇଥିଲେ ଓ ସେଠାରେ ସେ ମୃତ୍ୟୁବରଣ କରିଥିଲେ ।

## କନ୍ଧମେଳି (୧୮୩୬)

ଇଂରେଜମାନଙ୍କ ବିରୁଦ୍ଧରେ କନ୍ଧମାନଙ୍କ ବିଦ୍ରୋହ ଉଲ୍ଲେଖଯୋଗ୍ୟ । ଏହା ଆରମ୍ଭ ହୋଇଥିଲା ଭଞ୍ଜଭୂମି ଘୁମୁସରରୁ ୧୮୩୬ମସିହାରେ । ଘୁମୁସର ରାଜା ଶ୍ରୀକର ଭଞ୍ଜଙ୍କୁ ବିତାଡ଼ିତ କରିବାପରେ ଘୁମୁସରରେ କନ୍ଧମାନେ କମଳଲୋଚନ ଦୋରା ବିଶୋଇଙ୍କ ନେତୃତ୍ୱରେ ବିଦ୍ରୋହ ଆରମ୍ଭ କରିଦେଇଥିଲେ । କନ୍ଧମାନେ ଧନୁଶର ଧରି ଲୁଚିଛପି ବଣପାହାଡ଼ରେ ଇଂରେଜ ଫଉଜ ସହିତ ଲଢ଼େଇ କରିଥିଲେ । କମଳ ଲୋଚନ ଦୋରା ବିଶୋଇଙ୍କୁ ଇଂରେଜମାନେ ବନ୍ଦୀ କରି ମାନ୍ଦ୍ରାଜ ପଠାଇ ଦେଇଥିଲେ । ଏହାପରେ କମଳଲୋଚନ ବିଶୋଇଙ୍କ ପୁତୁରା ଚକରା ବିଶୋଇ ବିଦ୍ରୋହର ନେତୃତ୍ୱ ନେଇଥିଲେ । ଅନୁଗୁଳର ରାଜା ସୋମନାଥ ସିଂହ ଚକରାବିଶୋଇଙ୍କୁ ଆଶ୍ରୟ ଦେବା ଅଭିଯୋଗରେ ଇଂରେଜମାନେ ତାଙ୍କୁ ରାଜ୍ୟରୁ ବିତାଡ଼ିତ କରିଥିଲେ ।

## ୧୮୫୭ ବିଦ୍ରୋହରେ ଓଡ଼ିଶା

ସମ୍ବଲପୁରର ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ଇଂରେଜମାନଙ୍କ ବିରୁଦ୍ଧରେ ଅନ୍ୟ ଏକ ବିଦ୍ରୋହ ପରିଚାଳିତ ହୋଇଥିଲା । ୧୮୨୭ ମସିହାରେ ରାଜା ମହାରାଜାସାଏ ମୃତ୍ୟୁ ବରଣ କରିବା ପରେ ତାଙ୍କର ଉତ୍ତରାଧିକାରୀ ସୁରେନ୍ଦ୍ରସାଏ ରାଜଗାଦି ପାଇବା କଥା । କିନ୍ତୁ ତାଙ୍କୁ ଦିଆନଯାଇ ଅନ୍ୟ ଜଣକୁ ଦିଆଯାଇଥିଲା । ଫଳରେ ସୁରେନ୍ଦ୍ର ସାଏ ବିଦ୍ରୋହ କରିଥିଲେ । ଇଂରେଜମାନେ ବହୁ କଷ୍ଟରେ ଏହି ବିଦ୍ରୋହକୁ ଦମନ କରିଥିଲେ ଏବଂ ସୁରେନ୍ଦ୍ର ସାଏ ଓ ତାଙ୍କର କେତେଜଣ ଭାଇଙ୍କୁ ହଜାରିବାଗ୍ ଜେଲ୍‌ରେ ବନ୍ଦୀ କରି ରଖିଥିଲେ ।

ଇତି ମଧ୍ୟରେ ୧୮୫୭ ମସିହାରେ ସିପାହୀ ବିଦ୍ରୋହ ଆରମ୍ଭ ହୋଇଥିଲା । ଭାରତୀୟ ସ୍ୱାଧୀନତା ସଂଗ୍ରାମର ଏହା ପ୍ରଥମ ଅଙ୍କ । ବିଦ୍ରୋହୀ ସିପାହୀମାନେ ହଜାରୀବାଗ୍ ଜେଲ ଭାଙ୍ଗି ସୁରେନ୍ଦ୍ର ସାଏ ଏବଂ ଅନ୍ୟମାନଙ୍କୁ ମୁକ୍ତ କରିଦେଇଥିଲେ । ସୁରେନ୍ଦ୍ର ସାଏ ତାଙ୍କ ଭାଇମାନଙ୍କ ସହିତ ମିଶି ଇଂରେଜମାନଙ୍କୁ ବିତାଡ଼ିତ କରିବା ପାଇଁ ଭୀଷଣ ଯୁଦ୍ଧ ଚଳାଇଲେ । ସୁରେନ୍ଦ୍ର ସାଏଙ୍କର ଅନୁଗତମାନେ ଥିଲେ ଗଣ୍ଡ, ବିଞ୍ଝାଲ ଆଦି ଆଦିବାସୀ ଲୋକ । ଏ ବିଦ୍ରୋହ ସେ ୧୮୬୪ ମସିହା ପର୍ଯ୍ୟନ୍ତ ଚଳାଇ ରଖିଥିଲେ । ଶେଷରେ ସୁରେନ୍ଦ୍ର ସାଏଙ୍କ ସମେତ ଅନ୍ୟ କେତେଜଣ ଭାଇଙ୍କୁ ଅସୀରଗଡ଼ ଦୁର୍ଗରେ ଇଂରେଜମାନେ ବନ୍ଦୀ କରି ରଖିଥିଲେ । ସେଠାରେ ସୁରେନ୍ଦ୍ର ସାଏ ମୃତ୍ୟୁ ବରଣ କରିଥିଲେ । ୧୮୫୭ ମସିହା ବିଦ୍ରୋହ ଭାରତବର୍ଷର ଅନ୍ୟତ୍ର ପ୍ରଶମିତ ହୋଇଥିଲେ ସୁଦ୍ଧା ସୁରେନ୍ଦ୍ର ସାଏ ୧୮୬୪ ମସିହା ପର୍ଯ୍ୟନ୍ତ ଏହି ବିଦ୍ରୋହ ଅଗ୍ନିକୁ ପ୍ରଜ୍ୱଳିତ କରି ରଖିଥିଲେ ।

୧୮୫୭ ମସିହା ବିଦ୍ରୋହରେ ଚନ୍ଦନହଜୁରୀ ନାମରେ ପରିଚିତ ସୁରାଇ ବାଘ୍ରୀ ଖୁଣ୍ଟିଆ ଯୋଗଦେଇ ଓଡ଼ିଶାକୁ ଗୌରବାନ୍ୱିତ କରିଥିଲେ । ସେ ଲକ୍ଷ୍ନୌରେ ଅବସ୍ଥାପିତ ତ୍ରୟୋଦଶ ବ୍ୟାଟାଲିୟନର ସିପାହୀମାନଙ୍କ ସହ ଯୋଗସୂତ୍ର ରକ୍ଷା କରି ଇଂରେଜ ବିରୋଧୀ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ପରେ ତାଙ୍କୁ ବନ୍ଦୀ କରି ଗୟାସ୍ଥିତ କାରାଗାରରେ ରଖାଯାଇଥିଲା ।୧୮୫୮ ମସିହାରେ ଇଂରେଜମାନେ ମହାରାଣୀ ଭିକ୍ଟୋରିଆଙ୍କ ଘୋଷଣା ଅନୁଯାୟୀ ସମସ୍ତ ରାଜବନ୍ଦୀଙ୍କୁ କାରାଗାରରୁ ମୁକ୍ତ କରାଯିବା ପରେ ବାଘ୍ରୀ ଖୁଣ୍ଟିଆଙ୍କୁ ମୁକ୍ତ କରାଯାଇଥିଲା ।

୧୮୫୭ ମସିହାରେ ବାଲିଆର ଜମିଦାର ରାମକୃଷ୍ଣ ସାମନ୍ତସିଂହାର ମଧ ଖଣ୍ଡାୟତମାନଙ୍କୁ ଏକତ୍ରିତ କରି ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ ।ଶେଷରେ ଇଂରେଜମାନେ ତାଙ୍କୁ ବନ୍ଦୀ କରି କଟକ ଜେଲରେ ରଖିଥିଲେ ।ମହାରାଣୀ ଭିକ୍ଟୋରିଆ ଘୋଷଣାପତ୍ର ପ୍ରକାଶ କରିବା ପରେ ସେ ମୁକ୍ତ ହୋଇଥିଲେ ।

ସମ୍ବଲପୁରର ଘେଁସ ଜମିଦାର ମାଧବ ସିଂହ ଓ ତାଙ୍କର ପୁତ୍ର ହାତୀ ସିଂହ, ଉଜ୍ଜ୍ୱଳ ସିଂହ, ବଇରି ସିଂହ ଏବଂ ତାଙ୍କର ସହକର୍ମୀ ସାଲିଗ୍ରାମ ସିଂହ ବରିହା ବିଦ୍ରୋହ କରି ଇଂରେଜମାନଙ୍କର ବହୁ କ୍ଷତି କରିଥିଲେ । ସେମାନେ ଇଂରେଜ ପ୍ରଶାସକ କ୍ୟାପ୍‌ଟେନ୍ ଉଡ୍‌ବ୍ରିଜ୍‌ଙ୍କୁ ହତ୍ୟା କରିଥିଲେ ।ଶେଷରେ ମାଧବସିଂହ, କୁନ୍ଦଲସିଂହ ଓ ସାଲିଗ୍ରାମ ସିଂହଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା ।ହାତୀ ସିଂହଙ୍କୁ ଆଜୀବନ କଳାପାଣି ଦଣ୍ଡରେ ଆଣ୍ଡାମାନକୁ ପଠାଯାଇଥିଲା ଓ ସେଠାରେ ସେ ମୃତ୍ୟୁ ବରଣ କରିଥିଲେ ।

## ରାଜନୈତିକ ଜାଗରଣ (୧୮୫୮-୮୫)

୧୮୫୮-୮୫ ପର୍ଯ୍ୟନ୍ତ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ଯାଏ ଓଡ଼ିଶାରେ ରାଜନୈତିକ ଜାଗରଣର ସମୟ ।

ସେତେବେଳେ ଇଂରେଜମାନେ ଓଡ଼ିଶାକୁ ଖଣ୍ଡ ବିଖଣ୍ଡିତ କରି ଦକ୍ଷିଣରେ ଗଞ୍ଜାମ, କୋରାପୁଟ ସମେତ ସମସ୍ତ ଅଞ୍ଚଳକୁ ମାନ୍ଦ୍ରାଜ ପ୍ରଦେଶ ସହିତ ଅନ୍ତର୍ଭୁକ୍ତ କରିଥିଲେ । ମହାନଦୀର ଅପରପାର୍ଶ୍ୱରେ ଅବସ୍ଥିତ ସମ୍ବଲପୁର ସମେତ ଅନ୍ୟାନ୍ୟ ଅଞ୍ଚଳ ମଧ୍ୟପ୍ରଦେଶ ସହିତ ଅନ୍ତର୍ଭୁକ୍ତ କରାଯାଇଥିଲା ।ସେହିପରି ମେଦିନୀପୁର ସମେତ କେତେକ ଅଞ୍ଚଳ ବଙ୍ଗ ପ୍ରଦେଶ ଅଧୀନରେ ରହିଥିଲା । କେବଳ ପୁରୀ,କଟକ, ବାଲେଶ୍ୱର ଜିଲ୍ଲା ଓଡ଼ିଶାର କମିଶନରଙ୍କ ଅଧୀନରେ ରଖାଯାଇଥିଲା । ଫଳରେ ଓଡ଼ିଶାର ଅର୍ଥନୈତିକ ପ୍ରଗତି ହୋଇ ପାରିନଥିଲା । ଗମନାଗମନର ସୁବିଧା ନଥିଲା । ୧୮୯୯ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ରେଳପଥ ସୁବିଧା ନଥିଲା । ଫଳରେ ଓଡ଼ିଶାବାସୀ ବହୁ ଅସୁବିଧାର ସମ୍ମୁଖୀନ ହେଉଥିଲେ ।

ସେ ସମୟରେ ଆରମ୍ଭ ହୋଇଥିଲା, ଓଡ଼ିଆ ଭାଷା ଆନ୍ଦୋଳନ । ସମ୍ବଲପୁର ସମେତ କେତେକ ଶିକ୍ଷାନୁଷ୍ଠାନରେ ହିନ୍ଦୀ ଭାଷାର ପ୍ରଚଳନ ଥିଲା । ଦକ୍ଷିଣରେ ସରକାରୀ ଅଫିସ ଓ ଶିକ୍ଷାନୁଷ୍ଠାନରେ ତେଲୁଗୁ ଭାଷାର ପ୍ରଚଳନ ଥିଲା । ଓଡ଼ିଶାରେ ମଧ ଓଡ଼ିଆଭାଷାକୁ ଶିକ୍ଷାନୁଷ୍ଠାନମାନଙ୍କରେ ପଢ଼ା ନଯିବାକୁ ଶିକ୍ଷା ବିଭାଗର କେତେକ ବଙ୍ଗାଳି କର୍ମଚାରୀ ଉଦ୍ୟମ କରିଥିଲେ ।

ଫକୀର ମୋହନ ସେନାପତି, ଗଙ୍ଗାଧର ମେହେର, ରାଧାନାଥ ରାୟ ସମେତ କେତେକ କବି, ଲେଖକ ଓଡ଼ିଆ ଭାଷାକୁ ପରିପୁଷ୍ଟ କରାଇଥିଲେ ।ଶେଷରେ ୧୯୦୫ ମସିହାରେ ହିନ୍ଦିଭାଷାକୁ ସମ୍ବଲପୁର ସ୍କୁଲରୁ ଉଠାଇ ଓଡ଼ିଆଭାଷା ପ୍ରଚଳନ କରାଗଲା । ଏହି ଭାଷା ଆନ୍ଦୋଳନରେ ସମ୍ବଲପୁରର ବ୍ରଜମୋହନ ପଟ୍ଟନାୟକ, ମହନ୍ତ ବିହାରୀ ଦାସ, ଶ୍ରୀପତି ମିଶ୍ର ପ୍ରମୁଖ ନେତା ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ଓଡ଼ିଶାରେ ପ୍ରଥମେ କଟକରେ ଖ୍ରୀଷ୍ଟିଆନ୍ ପାଦ୍ରିମାନେ ଛାପାଖାନା ପ୍ରତିଷ୍ଠା କରିଥିଲେ । ପରେ ପରେ ବାଲେଶ୍ୱରରେ ଫକୀର ମୋହନ ସେନାପତି, ରାଜା ବୈକୁଣ୍ଠ ନାଥ ଦେ, ବାମଣ୍ଡାର ରାଜା ବାସୁଦେବ ସୁଡ଼ଳ ଦେବ, ବାରିପଦାର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଛାପାଖାନା ପ୍ରତିଷ୍ଠା କରିଥିଲେ । ବହୁ ପତ୍ର ପତ୍ରିକା ପ୍ରକାଶ ଲାଭ କରିଥିଲା । ତନ୍ମଧ୍ୟରୁ କର୍ମବୀର ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ ଉତ୍କଳଦୀପିକା, ବାଲେଶ୍ୱରରେ ଫକୀରମୋହନ ସେନାପତିଙ୍କ ସମ୍ପାଦନାରେ ସମ୍ବାଦ ବାହିକା, ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ସମ୍ବଲପୁର ହିତୈଷିଣୀ ଓ ଅନ୍ୟାନ୍ୟ କେତେକ ସମ୍ବାଦପତ୍ରର ନାମ ଉଲ୍ଲେଖ ଯୋଗ୍ୟ । ଏହି ପତ୍ରିକା ମାଧ୍ୟମରେ ଓଡ଼ିଶାବାସୀଙ୍କ ଦୁର୍ଦ୍ଦଶା ପ୍ରକାଶ ପାଇଥିଲା ।ଫଳରେ ଓଡ଼ିଶାରେ ଏକ ରାଜନୈତିକ ଚେତନା ସୃଷ୍ଟି ହୋଇଥିଲା ।ଓଡ଼ିଶାବାସୀ ହୃଦୟଙ୍ଗମ କରିଥିଲେ ଯେ ସେମାନଙ୍କର ଏହି ଦୁର୍ଦ୍ଦଶା ପାଇଁ ଇଂରେଜମାନଙ୍କର କୁଶାସନ ଦାୟୀ ।

୧୮୬୬ ମସିହାରେ ଓଡ଼ିଶାରେ ଏକ ଭୟାବହ ଦୁର୍ଭିକ୍ଷ ପଡ଼ିଥିଲା । ଏହା ନଅଙ୍କ ଦୁର୍ଭିକ୍ଷ ନାମରେ ପରିଚିତ । ସେତେବେଳେ ପ୍ରାୟ ୧୦ ଲକ୍ଷ ଲୋକ ମୃତ୍ୟୁ ବରଣ କରିଥିଲେ । ଏହି ଦୁର୍ଭିକ୍ଷ ପାଇଁ ଇଂରେଜ ପ୍ରଶାସକମାନେ ମୁଖ୍ୟତଃ ଦାୟୀ ବୋଲି ଅନୁଭବ କରାଯାଇଥିଲା । ଏହା ଓଡ଼ିଶାର ତତ୍‌କାଳୀନ କମିଶନର ଉପଲବ୍ଧି କରି ଜଳସେଚନ ପାଇଁ କେନାଲ ଖୋଳା ତ୍ୱରାନ୍ୱିତ କରିଥିଲେ । ଶିକ୍ଷାନୁଷ୍ଠାନମାନ ମଧ ତାଙ୍କରି ଉଦ୍ୟମରେ ସ୍ଥାପନ କରାଯାଇଥିଲା । ତନ୍ମଧ୍ୟରୁ ରେଭେନ୍‌ସା କଲେଜ, କଟକରେ ମେଡ଼ିକାଲ ସ୍କୁଲ ଆଦି ପ୍ରଧାନ ।

ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରି ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଉଦ୍ୟମ ଚାଲିଲା । ୧୮୮୨ରେ କଟକରେ ଉତ୍କଳସଭା ଆରମ୍ଭ ହୋଇଥିଲା । ପରେ ପରେ ମଧୁସୂଦନ ଦାସଙ୍କ ଦ୍ୱାରା ଉତ୍କଳ ସମ୍ମିଳନୀ ଗଠନ କରାଯାଇଥିଲା । ସେହିପରି ବାଲେଶ୍ୱରରେ ଜାତୀୟ ସଭା, ପାରଳାଖେମୁଣ୍ଡିରେ ଉତ୍କଳ ହିତୈଷିଣୀ ସମାଜ ଗଠିତ ହେଲା ।

୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ହେଲା । ପ୍ରଥମ ଅଧିବେଶନରେ ବ୍ରହ୍ମପୁରର ଆଡ୍‌ଭୋକେଟ୍ ବିଶ୍ୱେଶ୍ୱର ଆୟାର ପ୍ରତିନିଧିତ୍ୱ କରିଥିଲେ । ପରବର୍ତ୍ତୀ ଅଧିବେଶନକୁ ଉତ୍କଳସଭା, ଜାତୀୟ ସଭା ଓ ଉତ୍କଳ ହିତୈଷିଣୀ ସମାଜଦ୍ୱାରା ମନୋନୀତ ହୋଇ ଗୌରୀଶଙ୍କର ରାୟ, ଜାନକୀ ନାଥ ବୋଷ, ମଧୁସୂଦନ ଦାସ, ବୈକୁଣ୍ଠ ନାଥ ଦେ ଆଦି ନେତାମାନେ ପ୍ରତିନିଧିତ୍ୱ କରିଥିଲେ ।

ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ଆନ୍ଦୋଳନ ଚାଲିଥାଏ । ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଆରମ୍ଭ

ହୋଇଥିଲା କଟକର ଉତ୍କଳ ଦୀପିକା ପଢ଼ିଆରେ । ତାର ପୌରହିତ୍ୟ କରିଥିଲେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ।

କ୍ରମେ କ୍ରମେ ବିଭିନ୍ନ ସ୍ଥାନରେ ଉତ୍କଳ ସମ୍ମିଳନୀ ଆରମ୍ଭ ହୋଇଥିଲା । ଗୌରୀଶଙ୍କର ରାୟ, ମଧୁସୂଦନ ଦାସ, ବୈକୁଣ୍ଠନାଥ ଦେ ଚନ୍ଦ୍ର ଶେଖର ବେହେରା, ଖଲ୍ଲିକୋଟ ମହାରାଜା ଶ୍ରୀ ହରିହର ମର୍ଦ୍ଦରାଜ, ସିଂହଭୂମିର ଜାହ୍ନବୀଶୋର ପାଣି, କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ, ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ପାରଳାର ଶ୍ୟାମ ସୁନ୍ଦର ରାଜଗୁରୁ, ବାମଣ୍ଡାର ରାଜା ସାର୍ ବାସୁଦେବ ସୁଢ଼ଳଦେବ, ଫକୀରମୋହନ ସେନାପତି, ନୀଳକଣ୍ଠ ଦାସ, ଗୋପବନ୍ଧୁ ଦାସ, ବିଶ୍ୱନାଥ ଦାଶ, ନିରଞ୍ଜନ ପଟ୍ଟନାୟକ, ଭୁବନାନନ୍ଦ ଦାସ, ବ୍ରଜସୁନ୍ଦର ଦାସ ପ୍ରମୁଖ ନେତା ବିଭିନ୍ନ ସମୟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ଇଂରେଜ ପ୍ରଶାସନ ନିକଟରେ ଦାବୀ ଜଣାଇଥିଲେ । ଫଳରେ ୧୯୦୫ ମସିହାରେ ମଧ୍ୟପ୍ରଦେଶ ଶାସନାଧୀନ ଥିବା ସମ୍ବଲପୁରକୁ ଓଡ଼ିଶା ଶାସନର ଅନ୍ତର୍ଭୁକ୍ତ କରାଯାଇଥିଲା । ତାପରେ ୧୯୧୨ ମସିହାରେ ବିହାର - ଓଡ଼ିଶା ପ୍ରଦେଶ ଗଠନ କରାଯାଇଥିଲା । କିନ୍ତୁ ଏଥିରେ ଓଡ଼ିଶାବାସୀ ସନ୍ତୁଷ୍ଟ ନହୋଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ଆନ୍ଦୋଳନ ଚାଲୁ ରଖିଥିଲେ । ଏହାଫଳରେ ଫିଲିପ୍-ଡ଼ଫ୍ କମିଟି, ଓଡ଼ନେଲ କମିଟି ଗଠିତ ହୋଇଥିଲା । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଲଣ୍ଡନ ଯାଇ ଗୋଲ୍‌ଟେବୁଲ୍ ବୈଠକରେ ଯୋଗଦେଇଥିଲେ । ସେଠାରେ ନାନା ଯୁକ୍ତି ଦର୍ଶାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ଦାବି ଉପସ୍ଥାପନ କରିଥିଲେ । ଶେଷରେ ୧୯୩୬ ମସିହା ଏପ୍ରିଲ ୧ ତାରିଖ ଦିନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରାଯାଇଥିଲା ।

## ସ୍ୱଦେଶୀ ଆନ୍ଦୋଳନ-(୧୯୦୭-୮)

ଭାରତର ସ୍ୱାଧୀନତା ସଂଗ୍ରାମରେ ୧୯୦୫ ମସିହାରୁ ବିଭିନ୍ନ ପର୍ଯ୍ୟାୟରେ ଓଡ଼ିଶା ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ୧୯୦୭-୧୯୦୮ ମସିହାରେ ଆରମ୍ଭ ହୋଇଥିଲା ସ୍ୱଦେଶୀ ଆନ୍ଦୋଳନ । ଏହାର କାର୍ଯ୍ୟକ୍ରମ ଥିଲା ଇଂରେଜମାନଙ୍କ ଦ୍ୱାରା ପରିଚାଳିତ ଶିକ୍ଷାନୁଷ୍ଠାନମାନଙ୍କରେ ଯୋଗ ନଦେବା ସମେତ ସ୍ୱଦେଶରେ ପ୍ରସ୍ତୁତ ବିଭିନ୍ନ ଦ୍ରବ୍ୟ ବ୍ୟବହାର କରିବା । ମଧୁସୂଦନ ଦାସ ୧୯୦୨ରେ ତାରକସୀ ଶିଳ୍ପ କାରଖାନା ଓ ୧୯୦୫ରେ ଉତ୍କଳଟାନେରୀ ପ୍ରତିଷ୍ଠା କରିଥିଲେ । ଗୋପବନ୍ଧୁ ଦାସ ୧୯୦୯ ମସିହାରେ ସତ୍ୟବାଦୀରେ ଏକ ବନ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଏହାର ଉଦ୍ଦେଶ୍ୟ ଥିଲା ଓଡ଼ିଶାର ଯୁବକମାନଙ୍କୁ ଆତ୍ମନିର୍ଭରଶୀଳ କରି ଜାତୀୟ ସଂଗ୍ରାମରେ ଯୋଗଦେବା ପାଇଁ ପ୍ରସ୍ତୁତ କରାଇବା । ଗୋପବନ୍ଧୁ ଦାସଙ୍କ ଆହ୍ୱାନ କ୍ରମେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର, ଆଚାର୍ଯ୍ୟ ହରିହର ଦାଶ, ପଣ୍ଡିତ ବାସୁଦେବ ମିଶ୍ର ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରମୁଖ ବିଶିଷ୍ଟ ଶିକ୍ଷାବିତ୍ ଏଥିରେ ଯୋଗଦେଇଥିଲେ । ଅନ୍ୟ ଏକ ବିଦ୍ୟାଳୟ ସ୍ଥାପନ କରାଯାଇଥିଲା ସମ୍ବଲପୁରରେ । ଏହି ସ୍ୱଦେଶୀ ଆନ୍ଦୋଳନ ପ୍ରଚାର କରିବା ପାଇଁ ବଙ୍ଗଳାର ବିପିନ ଚନ୍ଦ୍ରପାଲ କଟକ ଆସି ଏକ ସଭାରେ ଉଦ୍‌ବୋଧନ ଦେଇଥିଲେ । କଲିକତାର ଶଶୀପଦ ବାନାର୍ଜି ପୁରୀ ଆସି ସ୍ୱଦେଶୀ ଆନ୍ଦୋଳନ ସପକ୍ଷରେ ବିଭିନ୍ନ ସଭାସମିତି କରିଥିଲେ ।

ଏହିପରି ଭାବେ ଓଡ଼ିଶାରେ ସ୍ୱଦେଶୀ ଆନ୍ଦୋଳନ ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇଥିଲା ।

## ଓଡ଼ିଶାରେ ଚରମପନ୍ଥୀ ଆନ୍ଦୋଳନ (୧୯୧୪)

ଚରମପନ୍ଥୀ ଆନ୍ଦୋଳନର ମୁଖ୍ୟ କର୍ମକ୍ଷେତ୍ର ଥିଲା କଲିକତା । ଏହି ଆନ୍ଦୋଳନ ବଙ୍ଗଳାରୁ ପ୍ରସାର ଲାଭ କରି ଓଡ଼ିଶାରେ ପ୍ରବେଶ କରିଥିଲା । ୧୯୧୪ ମସିହାରେ ଯାଜପୁର ସହର ନିକଟବର୍ତ୍ତୀ ଚଉନିପୁର ଗାଁରେ ବାସ କରୁଥିବା ସଦେଇ ସାହୁ ନାମକ ଜଣେ ମହାଜନଙ୍କ ଘରେ ବଙ୍ଗଳାର କେତେକ ଚରମପନ୍ଥୀ ଆସି ଡକାୟତି କରିଥିଲେ । ଏମାନଙ୍କୁ ସାହାଯ୍ୟ କରୁଥିଲେ ଓଡ଼ିଶାର ଦୁଇଜଣ ଯୁବକ ଲକ୍ଷ୍ମୀଧର ଦାସ ଓ ବାସୁଆ ଡାଗିକ ଏବଂ କଟକର ଅଟଳ ବିହାରୀ ଆଚାର୍ଯ୍ୟ, ଶଶାଙ୍କ ଶେଖର ମୁଖାର୍ଜୀ, ପଟିଆର ବୈରାଗୀ ତ୍ରିପାଠୀ ସହାୟତା ଦେଇଥିଲେ । ସେମାନେ ୬୦୦୦/- ଟଙ୍କା ମୂଲ୍ୟର ସୁନାରୁପା ଅଳଙ୍କାର ଓ ଟଙ୍କା ନେଇଯାଇଥିଲେ ।

ଏହି ଆତଙ୍କବାଦୀମାନଙ୍କ ମଧ୍ୟରୁ ବଙ୍ଗଳାର କେତେଜଣ ନେତା ଓଡ଼ିଶା ଆସିଥିଲେ । ବାଘାଯତୀନ୍ ନାମରେ ପରିଚିତ ଯତୀନ୍ ମୁଖାର୍ଜୀ, ମନୋରଞ୍ଜନ ଜ୍ୟୋତିଷ, ଚିତ୍ତପ୍ରିୟ ଏବଂ ନୀରେନ୍ ସେମାନଙ୍କର ସହକର୍ମୀଥିଲେ । ସେମାନେ ପ୍ରଥମେ ମୟୂରଭଞ୍ଜ ରାଜ୍ୟର କପ୍ତିପଦା ନିକଟରେ ଥିବା ଏକ ଗ୍ରାମରେ ରହି ତାଙ୍କର କାର୍ଯ୍ୟକ୍ରମ ଚାଲୁ ରଖିଥିଲେ । ବାଘାଯତୀନ୍ ସେତେବେଳେ ଏକ ସନ୍ୟାସୀର ବେଶ ଧାରଣ କରି ଗୋପନୀୟ ଭାବରେ କାର୍ଯ୍ୟ କରୁଥିଲେ । କଲିକତାର ପୋଲିସ କମିଶନର ଚାର୍ଲସ ଟାର୍ଗେଟ୍ ଖବର ପାଇ ଚଢ଼ାଉ କରିବା ଫଳରେ ସେମାନେ ବାଲେଶ୍ୱର ପଳାଇ ଆସିଥିଲେ । ବାଲେଶ୍ୱର ନିକଟବର୍ତ୍ତୀ ଚଷାଖଣ୍ଡ ନାମକ ସ୍ଥାନରେ ପୋଲିସ ସହ ସଂଘର୍ଷ ହୋଇଥିଲା । ପୋଲିସଙ୍କ ଆଘାତରେ ବାଘାଯତୀନ୍ କ୍ଷତ ବିକ୍ଷତ ହୋଇ ବାଲେଶ୍ୱର ଡାକ୍ତର ଖାନାରେ ମୃତ୍ୟୁ ବରଣ କରିଥିଲେ । ଚିତ୍ତପ୍ରିୟ ମଧ ମୃତ୍ୟୁ ବରଣ କରିଥିଲେ । ଅନ୍ୟ ଦୁଇଜଣ ମନୋରଞ୍ଜନ ଓ ନୀରେନ୍ ମୃତ୍ୟୁଦଣ୍ଡ ପାଇଥିଲେ । ଜ୍ୟୋତିଷ କଳାପାଣି ଦଣ୍ଡ ପାଇଥିଲେ ।

## ଅସହଯୋଗ ଆନ୍ଦୋଳନ (୧୯୨୧)

୧୯୧୯ ମସିହାରେ ମହାତ୍ମା ଗାନ୍ଧୀ ଭାରତର ରାଜନୀତି କ୍ଷେତ୍ରରେ ନେତୃତ୍ୱ ନେଇଥିଲେ । ପ୍ରଥମେ ସେ ଇଂରେଜ ସରକାର ସହ ସହଯୋଗ କରୁଥିଲେ । ପରେ ପରେ ଜାଲିଆନାୱାଲା ହତ୍ୟାକାଣ୍ଡ, ଖିଲାପତ ଆନ୍ଦୋଳନ ଆଦି ଘଟଣା ତାଙ୍କୁ ବାଧ କରିଥିଲା ଇଂରେଜମାନଙ୍କ ସହ ଅସହଯୋଗ ଆନ୍ଦୋଳନ କରିବା ପାଇଁ । ସେ ପର୍ଯ୍ୟନ୍ତ ଭାରତୀୟ ଜାତୀୟ କଂଗ୍ରେସ କେବଳ ଧନୀ, ଶିକ୍ଷାବିତ୍, ଅଭିଜାତ ବଂଶ ଲୋକମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । କିନ୍ତୁ ମହାତ୍ମାଗାନ୍ଧୀ ଚିନ୍ତା କଲେ ଯଦି ଭାରତରେ ସାଧାରଣ ଲୋକ ଏହି ଆନ୍ଦୋଳନରେ ଯୋଗ ନଦିଅନ୍ତି, ତେବେ ଭାରତବର୍ଷକୁ ଇଂରେଜ ଶାସନାଧୀନରୁ ମୁକ୍ତ କରାଇବା କଷ୍ଟସାଧ ହେବ । ତେଣୁ ସେ ଆରମ୍ଭ କଲେ ୧୯୨୦ ମସିହାରେ ଅସହଯୋଗ ଆନ୍ଦୋଳନ । ଏଥିରେ ଦୁଇ ପ୍ରକାର କାର୍ଯ୍ୟକ୍ରମ

ରହିଥିଲା । ପ୍ରଥମେ ଶିକ୍ଷାନୁଷ୍ଠାନ, ସରକାରୀ ଚାକିରୀ, ବିଦେଶୀ ଦ୍ରବ୍ୟ ଓ କୋର୍ଟ କଚେରୀ ବର୍ଜନ କରାଯିବ, ତା'ପରିବର୍ତ୍ତେ ଜାତୀୟ ବିଦ୍ୟାଳୟ, ପଞ୍ଚାୟତ କୋର୍ଟ ଓ ହାତତିଆରି ବସ୍ତ୍ର ଗ୍ରହଣ କରାଯିବ । ଓଡ଼ିଶାର ବିଭିନ୍ନ ସ୍ଥାନରେ ସରକାରୀ ଚାକିରୀ ଛାଡ଼ି ବହୁବ୍ୟକ୍ତି ଏହି ଆନ୍ଦୋଳନରେ ଯୋଗଦେଇଥିଲେ । ଗୋପବନ୍ଧୁ ଚୌଧୁରୀ ଡେପୁଟୀ କଲେକ୍ଟର ଚାକିରି ଛାଡ଼ିଥିଲେ । ପୁରୀର ନୀଳକଣ୍ଠ ଦାସ, ବାଲେଶ୍ୱରର ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ, ଭଦ୍ରକର ମହମ୍ମଦ ହନିଫ୍, ସମ୍ବଲପୁରର ଚନ୍ଦ୍ରଶେଖର ବେହେରା, ନଟବର ଗଡ଼ତିଆ, ରାମନାରାୟଣ ମିଶ୍ର ପ୍ରମୁଖ ଇସ୍ତଫା ଦେଇଥିଲେ । ରେଭେନ୍ସା କଲେଜରୁ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ଯଦୁମଣି ମଙ୍ଗରାଜ, ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରମୁଖ ଛାତ୍ରମାନେ ଶିକ୍ଷାନୁଷ୍ଠାନ ବର୍ଜନ କରିଥିଲେ । ବୀରକିଶୋର ଦାସ, ବାଞ୍ଛାନିଧି ମହାନ୍ତି ପ୍ରମୁଖ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ଗୋପବନ୍ଧୁ ଦାସ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ଗଠନ କରିଥିଲେ । ସେ ସଭାପତି ମନୋନୀତ ହୋଇଥିଲେ । ଏକରାମ ରସୁଲ ଉପସଭାପତି, ଭାଗୀରଥି ମହାପାତ୍ର ସମ୍ପାଦକ ହୋଇଥିଲେ । ୧୯୨୦ ମସିହାରେ ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରସ୍ତାବକ୍ରମେ କଂଗ୍ରେସର ନୀତି ଓ ଆଦର୍ଶ ଉତ୍କଳ ସମ୍ମିଳନୀ ଗ୍ରହଣ କରିନେଇଥିଲା । ଓଡ଼ିଶାରେ ଅସହଯୋଗ ଆନ୍ଦୋଳନକୁ ସଫଳ କରିବା ପାଇଁ ଗୋପବନ୍ଧୁ ଦାସ ପ୍ରଥମେ ସତ୍ୟବାଦୀ ଠାରେ 'ସମାଜ' ନାମରେ ଏକ ସମ୍ବାଦପତ୍ର ସାପ୍ତାହିକ ରୂପେ ପ୍ରକାଶ କରିଥିଲେ ଏବଂ ଏହା କଂଗ୍ରେସର ବାର୍ତ୍ତା ପ୍ରଚାର କରିବାରେ ବହୁତ ସାହାଯ୍ୟ କରିଥିଲା । ସେହିପରି ୧୯୨୩ ମସିହାରେ 'ପ୍ରଜାତନ୍ତ୍ର' ନାମକ ଏକ ସମ୍ବାଦପତ୍ର ପ୍ରକାଶ ପାଇଥିଲା । ୧୯୨୧ ମସିହା ମାର୍ଚ୍ଚମାସ ୨୪ ତାରିଖ ଦିନ ପ୍ରଥମଥର ପାଇଁ ମହାତ୍ମାଗାନ୍ଧୀ କଟକର କାଠଯୋଡ଼ି କୂଳରେ ଏକ ସାଧାରଣ ସଭାରେ ଭାଷଣ ଦେଇଥିଲେ । ଏହି ସଭାରେ ପ୍ରାୟ ୧୦, ୦୦୦ ଲୋକ ଉପସ୍ଥିତ ଥିଲେ । ଗୋପବନ୍ଧୁ ଦାସ ପୌରହିତ୍ୟ କରିଥିଲେ । ପ୍ରଥମଥର ପାଇଁ ଓଡ଼ିଶାର ରମାଦେବୀ, ମାଳତୀ ଦେବୀ, ସରଳା ଦେବୀ ପ୍ରମୁଖ ନାରୀମାନେ ସଭାରେ ଯୋଗ ଦେଇଥିଲେ । ନାରୀମାନଙ୍କ ମଧ୍ୟରେ ଜାଗରଣ ସଞ୍ଚାର ହୋଇଥିଲା । ଏହି ସମୟରେ ଗାନ୍ଧିଜୀ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଗସ୍ତକରି ଅରଟରେ ସୂତାକାଟି ଲୁଗା ପିନ୍ଧିବାକୁ ପ୍ରବର୍ତ୍ତାଇଥିଲେ । ବିଭିନ୍ନ ଅଞ୍ଚଳରେ କଂଗ୍ରେସ ଆଶ୍ରମମାନ ପ୍ରତିଷ୍ଠା କରାଯାଇ ଥିଲା । ତନ୍ମଧ୍ୟରୁ କଟକରେ ସ୍ୱରାଜ ଆଶ୍ରମ, ଜଗତସିଂହପୁରରେ ଅଳକା ଆଶ୍ରମ, ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଆଗର ପଡ଼ାଠାରେ ହରେକୃଷ୍ଣ ମହତାବଙ୍କ ଦ୍ୱାରା ଆଶ୍ରମ ପ୍ରତିଷ୍ଠା କରାଯାଇଥିଲା ।

୧୯୨୫ ମସିହାରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଆମନ୍ତ୍ରଣ କ୍ରମେ ଗାନ୍ଧିଜୀ ଦ୍ୱିତୀୟଥର ଓଡ଼ିଶା ଗସ୍ତରେ ଆସି ମଧୁସୂଦନଙ୍କ ଉତ୍କଳ ଟାନେରୀ ଯୋତା କାରଖାନା ପରିଦର୍ଶନ କରିଥିଲେ । ପୁନରାୟ ୧୯୨୭ ମସିହାରେ ମହାତ୍ମାଗାନ୍ଧୀ ଓଡ଼ିଶାକୁ ଆସିଥିଲେ । ତାଙ୍କ ମୁଖ୍ୟ ଉଦ୍ଦେଶ୍ୟ ଥିଲା, ଓଡ଼ିଶାରେ ଗଠନାତ୍ମକ କାର୍ଯ୍ୟଗୁଡ଼ିକର ପ୍ରସାର କାର୍ଯ୍ୟ ତ୍ୱରାନ୍ୱିତ କରିବା । ସେ ସମୟରେ ସେ ଭଦ୍ରକ, ବ୍ରହ୍ମପୁର, ବେଲଗୁଣ୍ଠା ଆଦି ସ୍ଥାନ ଯାଇ ଫେରି ଯାଇଥିଲେ ।

ଭାରତବର୍ଷର ରାଜନୈତିକ ଅବସ୍ଥାକୁ ପର୍ଯ୍ୟବେକ୍ଷଣ କରିବା ପାଇଁ ସାତଜଣ ଇଂରେଜ ସଭ୍ୟଙ୍କୁ ନେଇ ଗଠିତ ସାଇମନ କମିଶନ ୧୯୨୮ ମସିହାରେ ଭାରତବର୍ଷରେ ପଦାର୍ପଣ କରିଥିଲେ । ଭାରତୀୟ ଜାତୀୟ କଂଗ୍ରେସ ଏହି କମିଶନକୁ ଅସହଯୋଗ କରିବା ପାଇଁ ଘୋଷଣା କରିଥିଲା । ତଦନୁଯାୟୀ ଓଡ଼ିଶାର ପ୍ରାଦେଶିକ କମିଟି ସାଇମନ କମିଶନକୁ ବର୍ଜନ କରିଥିଲା । ଗୋପବନ୍ଧୁ ଦାସ ଏହାକୁ 'ସାଇମନ ସାତ ଭାଇଆ' ବୋଲି କହୁଥିଲେ ।

## ଆଇନ୍ ଅମାନ୍ୟ ଆନ୍ଦୋଳନ (୧୯୩୦)

୧୯୩୦ ମସିହାରେ ଗାନ୍ଧିଜୀଙ୍କ ନିର୍ଦ୍ଦେଶକ୍ରମେ ଆଇନ ଅମାନ୍ୟ ଆନ୍ଦୋଳନ ଘୋଷଣା କରାଯାଇଥିଲା । ଏହାର ମୁଖ୍ୟ କାର୍ଯ୍ୟକ୍ରମ ଥିଲା ଇଂରେଜମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ବିଭିନ୍ନ ଆଇନ୍ ଅମାନ୍ୟ କରିବା । ତାହାର ପ୍ରଥମ କାର୍ଯ୍ୟକ୍ରମ ଥିଲା ଲବଣ ଆଇନ୍ ଭଙ୍ଗ । ବର୍ଷ ବର୍ଷ ଧରି ଭାରତବର୍ଷର ଲୋକମାନେ ସମୁଦ୍ର ଜଳ ଫୁଟାଇ ଲୁଣ ପ୍ରସ୍ତୁତ କରୁଥିଲେ । ତାହା ବିକ୍ରୟ କରି ସେମାନେ ନିଜର ଭରଣ ପୋଷଣ କରୁଥିଲେ । ଇଂରେଜମାନେ ଲବଣ ଉପରେ କଟକଣା ଜାରି କରିଥିଲେ । ଲୋକଙ୍କୁ ଲୁଣ ମାରିବା ପାଇଁ ମନା କରିଦେଇଥିଲେ । ଏଥିରେ ଗାନ୍ଧିଜୀ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରି ପ୍ରଥମେ ଗୁଜୁରାଟରେ ଡାଣ୍ଡିଠାରେ ନିଜର ଅନୁଗାମୀମାନଙ୍କ ସହ ଏପ୍ରିଲ ୬ତାରିଖ ଦିନ ଲବଣ ଆଇନ୍ ଭଙ୍ଗ କରିଥିଲେ । ଓଡ଼ିଶାର ପ୍ରାଦେଶିକ କଂଗ୍ରେସ କମିଟି ଏହି କାର୍ଯ୍ୟକ୍ରମ ହାତକୁ ନେଇଥିଲା । କଟକରେ କାଠଯୋଡ଼ି କୂଳରେ ଅବସ୍ଥିତ ଗୋପବନ୍ଧୁ ଚୌଧୁରୀଙ୍କ ଘରେ ସ୍ଥିର ହେଲା ସେମାନେ ପଦଯାତ୍ରା କରି କଟକରୁ ବାଲେଶ୍ୱର ସହରଠାରୁ ଅନତି ଦୂରରେ ଅବସ୍ଥିତ ଇଞ୍ଚୁଡ଼ିଠାରେ ଲବଣ ଆଇନ୍ ଭଙ୍ଗ କରିବେ । ପ୍ରଥମେ ଗୋପବନ୍ଧୁ ଚୌଧୁରୀ ଏହାର ନେତୃତ୍ୱ ନେଇଥିଲେ ।

ଗୋପବନ୍ଧୁ ଚୌଧୁରୀ ଗିରଫ ହେବାପରେ ଆଚାର୍ଯ୍ୟ ହରିହର ଦାସ ଏହାର ନେତୃତ୍ୱ ନେଇଥିଲେ । ରମାଦେବୀ, ମାଳତୀଦେବୀ, ସରଳାଦେବୀ, କୋକିଳ ଦେବୀ ଇତ୍ୟାଦିଙ୍କ ଆହ୍ୱାନ କ୍ରମେ ବହୁ ମହିଳା ଏଥିରେ ଯୋଗଦେଇଥିଲେ । ବାଲେଶ୍ୱରରେ ହରେକୃଷ୍ଣ ମହତାବ୍ ଲବଣ ସତ୍ୟାଗ୍ରହକୁ ପରିଚାଳିତ କରୁଥିଲେ । ଆନ୍ଦୋଳନକୁ ସଙ୍ଗଠିତ କରୁଥିଲେ ସୁରେନ୍ଦ୍ର ନାଥ ଦାସ । ଏଥିପାଇଁ ତାଙ୍କୁ ସର୍ଦ୍ଦାର ଉପାଧିରେ ଭୂଷିତ କରାଯାଇଥିଲା ।

ପୋଲିସ୍‌ମାନଙ୍କର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ସତ୍ୟାଗ୍ରହୀମାନେ ଯାଇ ଇଞ୍ଚୁଡ଼ିରେ ଲୁଣ ମାରିଥିଲେ । ଓଡ଼ିଶାର ବହୁ ଅଞ୍ଚଳରୁ ସତ୍ୟାଗ୍ରହୀମାନେ ଏହି ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ମାଳତୀ ଦେବୀ ସେଠାରୁ କିଛି ଲୁଣ ଆଣି କଟକରେ ଗୋଟିଏ ସଭାରେ ବିକ୍ରୟ କରିଥିଲେ । ବାଲେଶ୍ୱର ଜିଲ୍ଲାର କସ୍ବା ଓ ଇରମ୍ଭଠାରେ ମଧ ଲବଣ ଆଇନ୍ ଭଙ୍ଗ କରାଯାଇଥିଲା । ଇଞ୍ଚୁଡ଼ିକୁ ଭାରତବର୍ଷର ଦ୍ୱିତୀୟ ଡାଣ୍ଡି କୁହାଯାଉଥିଲା । ପରେ ପରେ କୁଜଙ୍ଗର କାଳିଆପାଟଠାରେ ଲବଣ ଆଇନ୍‌ଭଙ୍ଗ କରାଯାଇଥିଲା । ଏଥିରେ ମାଳତୀ ଦେବୀ, ରମାଦେବୀ, ସରଳାଦେବୀ, କୁଜଙ୍ଗ ରାଣୀ ଭଗ୍ନମାଳୀ ଦେମା, ନାରାୟଣ ବୀରବର ସାମନ୍ତ ନେତୃତ୍ୱ ନେଇଥିଲେ । ପୁରୀ ଜିଲ୍ଲାର ଅସ୍ତରଙ୍ଗ, କୁହୁଡ଼ି, ଗଞ୍ଜାମର

ଗମଠାରେ ଲୁଣ ମରାଯାଉଥିଲା । ଏହାର ନେତୃତ୍ୱ ନେଇଥିଲେ ନିରଞ୍ଜନ ପଟ୍ଟନାୟକ, ସରଳାଦେବୀ ପ୍ରମୁଖ ନେତା ନେତ୍ରୀ ।

ଆଇନ୍ ଅମାନ୍ୟ ଆନ୍ଦୋଳନରେ ମଦଦୋକାନ ଆଗରେ ପିକେଟିଙ୍ଗ୍ ଥିଲା ଅନ୍ୟ ଏକ କାର୍ଯ୍ୟକ୍ରମ । ବିଦେଶୀ ବସ୍ତ୍ର ବିକ୍ରୟ କରୁଥିବା ଦୋକାନ ଆଗରେ ମଧ ସତ୍ୟାଗ୍ରହୀମାନେ ସତ୍ୟାଗ୍ରହ କରୁଥିଲେ ।

ସେ ସମୟରେ ଚୌକିଦାର ଟିକସ୍ ନଦେବା ପାଇଁ ଆନ୍ଦୋଳନ ଚାଲିଥିଲା । ତାର ପ୍ରଧାନସ୍ଥାନ ଥିଲା ବାଲେଶ୍ୱର ଜିଲ୍ଲାର ଶ୍ରୀଜଙ୍ଗ । ତାହାର ନେତୃତ୍ୱ ନେଇଥିଲେ ଗୌରମୋହନ ଦାସ । ନବକୃଷ୍ଣ ଚୌଧୁରୀ, ରମାଦେବୀ, ବାଗଲପୁରର ଗୌରାଙ୍ଗ ଚରଣ ଦାସ ଓ ରବୀନ୍ଦ୍ର ମୋହନ ଦାସ ପ୍ରମୁଖ ନେତାମାନେ ସେଠାକୁ ଯାଇ ଆନ୍ଦୋଳନକୁ ସଙ୍ଗଠିତ କରିଥିଲେ ।

## କୃଷକ ଆନ୍ଦୋଳନ (୧୯୩୪)

୧୯୩୪ ମସିହାରେ କୃଷକ ଆନ୍ଦୋଳନ କରାଯାଇଥିଲା । ଏହାର ନେତୃତ୍ୱ ନେଇଥିଲେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ । ଏଥିରେ ପ୍ରାଣନାଥ ପଟ୍ଟନାୟକ , ମୋହନ ଦାସ, ଗୌରାଙ୍ଗ ଚରଣ ଦାସ ଓ ସୁରେନ୍ଦ୍ର ଦ୍ୱିବେଦୀ ପ୍ରଧାନ ଅଂଶ ଗ୍ରହଣ କରିଥିଲେ । ଜମିଦାରମାନଙ୍କୁ ଖଜଣା ନଦେବା ଥିଲା ମୁଖ୍ୟ କାର୍ଯ୍ୟକ୍ରମ । ଏହି ଆନ୍ଦୋଳନରେ ଓଡ଼ିଶାର କୃଷକମାନେ ସଙ୍ଗଠିତ ହୋଇ ଆନ୍ଦୋଳନ କରିବା ପାଇଁ ପ୍ରେରଣା ପାଇଥିଲେ । ୧୯୩୪ ମସିହାରେ ଗାନ୍ଧିଜୀ ପୁନରାୟ ଓଡ଼ିଶାକୁ ଆସି ତାଙ୍କର ଗୁରୁତ୍ୱପୂର୍ଣ୍ଣ ପଦଯାତ୍ରା ଆରମ୍ଭ କରିଥିଲେ । ଏହାର ମୁଖ୍ୟ ଉଦ୍ଦେଶ୍ୟଥିଲା ଅସ୍ପୃଶ୍ୟତା ନିବାରଣ । ହରିଜନମାନଙ୍କୁ ମନ୍ଦିର ପ୍ରବେଶ କରିବା ପାଇଁ ଗାନ୍ଧିଜୀ ପରାମର୍ଶ ଦେଇଥିଲେ । ଏହିଥର ଗାନ୍ଧିଜୀ ପୁରୀରୁ ସାକ୍ଷୀଗୋପାଳ, ଚନ୍ଦନପୁର ଦେଇ ଭଦ୍ରକରେ ତାଙ୍କ ପଦଯାତ୍ରା ଶେଷ କରିଥିଲେ । ଗାନ୍ଧିଜୀଙ୍କ ସହ ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ମନମୋହନ ଚୌଧୁରୀ, ପ୍ରଭାବତୀ ଦେବୀ, ହରେକୃଷ୍ଣ ମହତାବ୍, ରାଜକୃଷ୍ଣ ବୋଷ, ବିନୋଦ କାନୁନ୍‌ଗୋ, ନନ୍ଦକିଶୋର ଦାସ, କରୁଣାକର ପାଣିଗ୍ରାହୀ ପ୍ରମୁଖ ନେତାମାନେ ଅଂଶ ଗ୍ରହଣ କରିଥିଲେ । ସେହି ସମୟରେ ଉତ୍କଳ ହରିଜନ ସେବକ ସଂଘ ଗଠନକରାଯାଇଥିଲା । ଗାନ୍ଧିଜୀ ଚମ୍ପାପୁର, ବହୁକୁଦ, ନିଶ୍ଚିନ୍ତକୋଇଲି ଆଦି ସ୍ଥାନକୁ ଯାଇଥିଲେ ।

ଗାନ୍ଧିଜୀ ୧୯୩୮ ମସିହାରେ ଶେଷଥର ପାଇଁ ଓଡ଼ିଶା ଆସିଥିଲେ । ଡେଲାଙ୍ଗ ଅଞ୍ଚଳର ବେରବୋଇ ଆଶ୍ରମରେ ପ୍ରତିଷ୍ଠିତ ଗାନ୍ଧିଜୀ ସେବା ସଂଘ ଆନୁକୂଲ୍ୟରେ ଚତୁର୍ଥ ଅଧିବେଶନରେ ସେ ଯୋଗ ଦେଇଥିଲେ । ଜବାହରଲାଲ ନେହେରୁ , ସର୍ଦ୍ଦାର ପଟେଲ, ମୀରାବେନ୍ ପ୍ରମୁଖ ଜାତୀୟ ସ୍ତରର ନେତାମାନେ ଏଥିରେ ଯୋଗ ଦେଇଥିଲେ । ଏହା ଫଳରେ ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ ତ୍ୱରାନ୍ୱିତ ହୋଇଥିଲା ।

୧୯୪୦ ମସିହାରେ ବ୍ୟକ୍ତିଗତ ଆଇନ୍ ଅମାନ୍ୟ ଆନ୍ଦୋଳନ ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ଆରମ୍ଭ କରାଯାଇଥିଲା । ଏହାର ପ୍ରାଦେଶିକ ନିର୍ଦ୍ଦେଶକ ଥିଲେ ପ୍ରାଣକୃଷ୍ଣ ପଢ଼ିଆରୀ । ବିଭିନ୍ନ ଅଞ୍ଚଳରୁ ସତ୍ୟାଗ୍ରହୀମାନଙ୍କୁ ମନୋନୟନ କରାଯାଇଥିଲା ।

## ପ୍ରଜାମଣ୍ଡଳ ଆନ୍ଦୋଳନ- (୧୯୩୮-୩୯)

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଯିବା ପରେ ଓଡ଼ିଶାରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରଥମ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ । ତାର ମାସ ପରେ ବିଶ୍ୱନାଥ ଦାସ ଓଡ଼ିଶାର ପ୍ରଥମ କଂଗ୍ରେସ ପ୍ରଧାନମନ୍ତ୍ରୀ ହୋଇଥିଲେ । ଏହି ସମୟରେ ଓଡ଼ିଶାର ବିଭିନ୍ନ ଗଡ଼ଜାତ ଅଞ୍ଚଳରେ ରାଜାମାନଙ୍କର ମନମୁଖୀ ଶାସନ ପ୍ରତିରୋଧ କରିବା ପାଇଁ ପ୍ରଜାମଣ୍ଡଳ ଗଠନ କରାଯାଇଥିଲା ।

ସର୍ବ ଭାରତୀୟ ପ୍ରଜା ଆନ୍ଦୋଳନର ସଭାପତି ପଟ୍ଟାଭି ସୀତାରାମାୟା ଓଡ଼ିଶା ଆସିଥିଲେ । ତାଙ୍କର ପ୍ରେରଣାରେ ବିଭିନ୍ନ ଗଡ଼ଜାତ ଅଞ୍ଚଳରେ ପ୍ରଜାମଣ୍ଡଳ ଗଠନ କରାଯାଇଥିଲା । ଏହି ଆନ୍ଦୋଳନର ପୁରୋଭାଗରେ ଥିଲେ ସାରଙ୍ଗଧର ଦାସ, ତାଳଚେରର ପବିତ୍ର ମୋହନ ପ୍ରଧାନ, ଢେଙ୍କାନାଳର ହରମୋହନ ପଟ୍ଟନାୟକ, ବୈଷ୍ଣବ ଚରଣ ପଟ୍ଟନାୟକ, ଆଠଗଡ଼ର ରାଧାନାଥ ରଥ, ବାଲୁକେଶ୍ୱର ଆଚାର୍ଯ୍ୟ ପ୍ରମୁଖ ନେତାମାନେ ।

୧୯୩୯ ମସିହାରେ ପ୍ରଜାଆନ୍ଦୋଳନ ରଣପୁର ରାଜ୍ୟରେ ଏକ ଭୟାବହ ରୂପ ନେଇଥିଲା । ଏହାର ନେତୃତ୍ୱ ନେଇଥିଲେ ରଘୁନାଥ ମହାନ୍ତି, ଦିବାକର ପରିଡ଼ା । ଏହି ସମୟରେ ଗଡ଼ଜାତ ରାଜ୍ୟର ପଲିଟିକାଲ ଏଜେଣ୍ଟ ମେଜର ବେଜେଲ୍‌ଗେଟ ନୟାଗଡ଼ ରାଜାଙ୍କ ଆହ୍ୱାନକ୍ରମେ ସେଠାରେ ଅବସ୍ଥାନ କରୁଥିଲେ । ରଣପୁର ରାଜା ତାଙ୍କୁ ଖବର ଦେଇଥିଲେ, ତାଙ୍କ ରାଜ୍ୟକୁ ଆସି ପ୍ରଜାମଣ୍ଡଳ କର୍ମୀମାନଙ୍କ କାର୍ଯ୍ୟ ବିଷୟରେ ତଦାରଖ କରିବାକୁ । ୧୯୩୯ ମସିହା ଜାନୁଆରୀ ୫ ତାରିଖ ଦିନ ରାଜବାଟୀ ଆଗରେ ସଭା ଚାଲିଥିଲା । ନୟାଗଡ଼ରୁ ମେଜର ବେଜେଲ ଗେଟ୍ ବାହାରି ରଣପୁରକୁ ଆସିଥିଲେ । ବାଟରେ ତାଙ୍କର ଗତିପଥକୁ ପ୍ରଜାମଣ୍ଡଳ କର୍ମୀମାନେ ଅବରୋଧ କରି ଦେଇଥିଲେ । ଏହା ସତ୍ତ୍ୱେ ମେଜର ବେଜେଲଗେଟ୍ ରାଜବାଟୀରେ ପହଁଚିଥିଲେ । ପ୍ରତିରୋଧର ସମ୍ମୁଖୀନ ହୋଇ ନିଜ ପିସ୍ତଲରୁ ଗୁଳି ଚଳାଇବା ଫଳରେ ମୟୂରଝାଲିଆ ଗ୍ରାମର ଅର୍ଜ୍ଜୁନ ବିଶ୍ୱାଳ ମୃତ୍ୟୁ ବରଣ କରିଥିଲେ । ଏଥିରେ ଉତ୍ତେଜିତ ହୋଇ ଲୋକେ ମେଜର ବେଜେଲଗେଟ୍‌ଙ୍କୁ ଗାଁ ଭିତରକୁ ନେଇ ପିଟି ପିଟି ହତ୍ୟା କରିଥିଲେ । ଏହା ସମଗ୍ର ଓଡ଼ିଶାରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଇଂଲଣ୍ଡର ପାର୍ଲାମେଣ୍ଟରେ ମଧ ଏ ବିଷୟରେ ଆଲୋଚନା କରାଯାଇଥିଲା । ଏହି ଘଟଣା ବିଚାର କରି ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ଫାଶୀ ଦଣ୍ଡ ହୋଇଥିଲା । ସେମାନଙ୍କୁ ରକ୍ଷାକରିବା ପାଇଁ ଏକ ଡିଫେନ୍‌ସ କମିଟି ଗଠନ କରାଯାଇଥିଲେ ମଧ ତାହା ଫଳପ୍ରଦ ହୋଇନଥିଲା । ଶେଷରେ ତାଙ୍କୁ ଭାଗଲପୁର ଜେଲରେ ଫାଶି ଦିଆଯାଇଥିଲା ।

ଏହା ପରେ ପରେ ବହୁ ରାଜ୍ୟକୁ ପ୍ରଜାଆନ୍ଦୋଳନ ବ୍ୟାପି ଯାଇଥିଲା । ବିଶେଷ ଭାବରେ ତାର ପ୍ରକମ୍ପନ ଅନୁଭୂତ ହୋଇଥିଲା ଢେଙ୍କାନାଳରେ ।

**ଢେଙ୍କାନାଳ ଓ ତାଳଚେର :** ଢେଙ୍କାନାଳରେ ଏକ ପ୍ରଜାମଣ୍ଡଳ ଗଠନ କରାଯାଇଥିଲା । ସେଠାରେ ବୈଷ୍ଣବ ପଟ୍ଟନାୟକ, ମହେଶ୍ୱର ସୁବାହୁ ସିଂହ ଆଦି ନେତାମାନେ ବିଭିନ୍ନ ସ୍ଥାନରେ ସଭା ସମିତି କରି ରାଜାଙ୍କ

ବିରୁଦ୍ଧରେ କର୍ମୀମାନଙ୍କୁ ଉତ୍ତେଜିତ କରାଉଥିଲେ । ନୀଳକଣ୍ଠପୁର ଗ୍ରାମରେ ବ୍ରାହ୍ମଣୀ ନଦୀ ପାର ହେବା ସମୟରେ ପ୍ରଜାମଣ୍ଡଳ କର୍ମୀ ଓ ପୋଲିସମାନଙ୍କ ମଧ୍ୟରେ ସଂଘର୍ଷ ହୋଇଥିଲା । ଏହି ସଂଘର୍ଷରେ ୧୨ ବର୍ଷର ପିଲା ବାଜିରାଉତ ପ୍ରାଣ ହରାଇଥିଲା । ଫଳରେ ପ୍ରଜାମଣ୍ଡଳ କର୍ମୀମାନେ ଅଧିକ ଉତ୍ତେଜିତ ହୋଇ ରାଜାଙ୍କର ଥାନା, ଶସ୍ୟାଗାର ଆଦି ଧ୍ୱଂସ କରିଦେଇଥିଲେ । ଏଥିରେ ମୁଷା ମଲ୍ଲିକ ସମେତ କେତେକ ପ୍ରଜାମଣ୍ଡଳ କର୍ମୀ ପ୍ରାଣ ହରାଇ ଥିଲେ ।

ତାଳଚେରରେ ପବିତ୍ର ମୋହନ ପ୍ରଧାନଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଆନ୍ଦୋଳନ ବଡ଼ ଭୟାବହ ଆକାର ଧାରଣ କରିଥିଲା । ଏହାକୁ ଦମନ କରିବା ପାଇଁ ଆକାଶ ମାର୍ଗରୁ ଉଡ଼ାଜାହାଜରୁ ଗୁଳିବର୍ଷଣ କରାଯାଇଥିଲା ।

**ଗାଙ୍ଗପୁର :** ଅଧୁନା ସୁନ୍ଦରଗଡ଼ ଜିଲ୍ଲାର ଗାଙ୍ଗପୁର ରାଜ୍ୟରେ ପ୍ରଜାମଣ୍ଡଳ ଆନ୍ଦୋଳନ ଗୁରୁତର ରୂପ ଧାରଣ କରିଥିଲା । ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ନିର୍ମଳ ମୁଣ୍ଡା । ଆମ୍‌କୋ-ସିମ୍‌କୋ ସ୍ଥାନରେ ନିରୀହ ଆଦିବାସୀ ମୁଣ୍ଡା ସମ୍ପ୍ରଦାୟର ଲୋକମାନେ ଏକତ୍ରିତ ହୋଇ ଏକ ସଭା କରୁଥିବା ସମୟରେ ପୋଲିସ ତାଙ୍କ ଉପରକୁ ଗୁଳିଚଳାଇବା ଫଳରେ ବହୁ ମୁଣ୍ଡାଙ୍କ ମୃତ୍ୟୁ ଘଟିଥିଲା । ଏଥିରେ ଶତାଧିକ ମୁଣ୍ଡା ମୃତ୍ୟୁବରଣ କରିଥିଲେ ।

**କେନ୍ଦୁଝର :** କେଉଁଝର ରାଜାଙ୍କ ବିରୁଦ୍ଧରେ ଭୂୟାଁମାନେ ମେଳି କରିଥିଲେ । ପ୍ରଥମ ମେଳି ଆରମ୍ଭ ହୋଇଥିଲା ରତ୍ନାନାୟକଙ୍କ ନେତୃତ୍ୱରେ । ସେ ତାଙ୍କ ସହଯୋଗୀଙ୍କ ସହ ରାଜାଙ୍କ ବିରୁଦ୍ଧରେ ମେଳିକରିବାରୁ ତାଙ୍କ ସମେତ ଅନ୍ୟ ୭ଜଣଙ୍କୁ ଫାଶୀ ଦଣ୍ଡ ଦିଆଯାଇଥିଲା । ତାର କିଛି ବର୍ଷପରେ ଆରମ୍ଭ ହୋଇଥିଲା ଧରଣୀଧର ଭୂୟାଁଙ୍କ ଅନ୍ୟ ଏକ ମେଳି । ଏହା ଧରଣୀମେଳି ନାମରେ ପରିଚିତ । ତାଙ୍କ ଆହ୍ୱାନ କ୍ରମେ କେଁଝରର ବିଭିନ୍ନ ଅଞ୍ଚଳରୁ ଜୁଆଙ୍ଗ, ହୋ ଓ ଅନ୍ୟ ସମ୍ପ୍ରଦାୟର ଆଦିବାସୀମାନେ ଏକତ୍ରିତ ହୋଇ ରାଜାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ସେତେବେଳେ ରାଜାଙ୍କର ବିଶିଷ୍ଟ କର୍ମଚାରୀ ଥିଲେ ଫକୀର ମୋହନ ସେନାପତି । ବିଭିନ୍ନ ଉପାୟ ଅବଲମ୍ବନ କରି ସେ ଏହି ମେଳିକୁ ଦମନ କରିଥିଲେ । ଶେଷରେ ଧରଣୀଧର ଭୂୟାଁ ଗିରଫ ହୋଇଥିଲେ । ତାପରେ ଆରମ୍ଭ ହୋଇଥିଲା ଧରଣୀଧର ଭୂୟାଁଙ୍କର ସନ୍ନ୍ୟାସୀ ଜୀବନ । କିଛି ଦିନ ପୁରୀରେ ବିତାଇବାପରେ ଆଙ୍ଗିରେ ଏକ ଆଶ୍ରମ ପ୍ରତିଷ୍ଠା କରି ସନ୍ନ୍ୟାସୀ ଜୀବନ ଆରମ୍ଭ କରିଥିଲେ ଓ ଶେଷରେ ସେ ମୃତ୍ୟୁବରଣ କରିଥିଲେ ।

## ଭାରତଛାଡ଼ ଆନ୍ଦୋଳନ(୧୯୪୨)

୧୯୪୨ ମସିହା ଅଗଷ୍ଟ ୮ ତାରିଖ ଦିନ ନିଖିଳ ଭାରତ କଂଗ୍ରେସ ଅଧିବେଶନରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନ କ୍ରମେ ଭାରତଛାଡ଼ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ମହାତ୍ମାଗାନ୍ଧୀ କହିଥିଲେ, ଏହା ସ୍ୱାଧୀନତା ସଂଗ୍ରାମର ଶେଷ ଆନ୍ଦୋଳନ । ଏହି କଂଗ୍ରେସ ଅଧିବେଶନରେ ଓଡ଼ିଶାରୁ ଡକ୍ଟର ହରେକୃଷ୍ଣ ମହତାବ୍, ମାଳତୀ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ,ପ୍ରହ୍ଲାଦ ରାୟଲାଠ ପ୍ରମୁଖ ନେତାମାନେ ଯୋଗ ଦେଇଥିଲେ । ଅଗଷ୍ଟ ୯ ତାରିଖ ଦିନ ଗାନ୍ଧିଜୀଙ୍କ ସମେତ ପ୍ରମୁଖ ନେତାମାନଙ୍କୁ ବନ୍ଦୀକରି ରଖାଗଲା । ହରେକୃଷ୍ଣ ମହତାବ୍ ମଧ୍ୟ ବନ୍ଦୀ ହୋଇ ରହିଲେ । କଂଗ୍ରେସ ଦ୍ୱାରା ପରିଚାଳିତ ଅନୁଷ୍ଠାନଗୁଡ଼ିକୁ ବେଆଇନ୍ ଘୋଷଣା କରାଗଲା । ବ୍ୟାପକ ଗିରଫଦାରୀ ଚାଲିଲା । ଏହି ଅଧିବେଶନରୁ ମାଳତୀ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ଫେରି ଆସିବା ପରେ ଓଡ଼ିଶାରେ ଭାରତ ଛାଡ଼ ଆନ୍ଦୋଳନର ସ୍ରୋତ ବେଗଗାମୀ ହୋଇଥିଲା । ବହୁ ନେତାଙ୍କୁ ବିଭିନ୍ନ ସ୍ଥାନରେ ଗିରଫ କରାଯାଇଥିଲା । ନେତାଶୂନ୍ୟ ହୋଇ ସତ୍ୟାଗ୍ରହୀମାନେ ଅହିଂସାତ୍ମକ କାର୍ଯ୍ୟକ୍ରମ ଗ୍ରହଣ ନକରି ହିଂସାତ୍ମକ କାର୍ଯ୍ୟର ଆଶ୍ରୟ ନେଇଥିଲେ । ପୋଲ ଭାଙ୍ଗିବା, ଥାନା ପୋଡ଼ିବା, ସରକାରୀ,କୋଠାବାଡ଼ି ଭାଙ୍ଗିବା, ଟେଲିଫୋନ ତାର କାଟିବା ଆଦି କାର୍ଯ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନକୁ ବ୍ୟାପିଥିଲା ।

ଓଡ଼ିଶାରେ ଭାରତ ଛାଡ଼ ଆନ୍ଦୋଳନ ଅବିଭକ୍ତ ବାଲେଶ୍ୱର ଜିଲ୍ଲା, କଟକ ଜିଲ୍ଲା, ପୁରୀ ଜିଲ୍ଲା, କୋରାପୁଟ ଜିଲ୍ଲା ପ୍ରଭୃତି ଅଞ୍ଚଳରେ ଭୟାବହ ଆକାର ଧାରଣ କରିଥିଲା ।

**ଅବିଭକ୍ତ ବାଲେଶ୍ୱର ଜିଲ୍ଲା :** ୧୯୪୨ ମସିହା ଅଗଷ୍ଟ ୨୧ ତାରିଖ ଦିନ ଲୁଣିଆରେ ଆନ୍ଦୋଳନର ନେତୃତ୍ୱ ନେଇଥିଲେ, ଗ୍ରାମର ସତ୍ୟାଗ୍ରହୀ ମୁରଲୀଧର ପଣ୍ଡା ଓ ଅନ୍ୟ କେତେଜଣ ନେତା । ଏହା ପୂର୍ବରୁ ସତ୍ୟାଗ୍ରହୀମାନେ ଭଣ୍ଡାରିପୋଖରୀ ଥାନା ପୋଡ଼ି ଦେଇଥିଲେ । ଏହାର ନେତୃତ୍ୱ ନେଇଥିଲେ ମୁରଲୀଧର ଜେନା, କାଶୀନାଥ ନାୟକ ପ୍ରମୁଖ । ସେମାନେ ରାଜପଥର କେତେକ ପୋଲଭାଙ୍ଗି ଦେଇଥିଲେ । ପୋଲିସମାନଙ୍କ ଉପରେ ଆକ୍ରମଣ କରିଥିଲେ । ଲୁଣିଆଠାରୁ ଅନତିଦୂରରେ ଅବସ୍ଥିତ ଚାନ୍ଦିଆପସି ପଡ଼ିଆରେ ପୋଲିସ୍ ଓ ସତ୍ୟାଗ୍ରହୀମାନଙ୍କ ମଧ୍ୟରେ ସଂଘର୍ଷ ଘଟିଥିଲା । ଫଳରେ ରାଲମଲିକ ସମେତ ୯ଜଣ ସତ୍ୟାଗ୍ରହୀ ମୃତ୍ୟୁ ବରଣ କରିଥିଲେ । ଏହି ଚାନ୍ଦିଆପସି ପଡ଼ିଆ ଏବେ ସହୀଦ୍ ନଗର ନାମରେ କଥିତ । ଏହାର କିଛି ଦିନ ପରେ ସେପ୍ଟେମ୍ବର ମାସ ୨୮ ତାରିଖ ଦିନ ତ୍ରିଡ଼ିଗଡ଼ିଆଠାରେ ବୈଦ୍ୟନାଥ ରାଉତଙ୍କ ନେତୃତ୍ୱରେ ସତ୍ୟାଗ୍ରହୀମାନେ ପୋଲିସ ଉପରେ ଆକ୍ରମଣ କରିଥିଲେ । ପୋଲିସ ଗୁଳିଚାଳନା କରିବା ଫଳରେ ଜଣଙ୍କର ମୃତ୍ୟୁ ହୋଇଥିଲା । ସେଦିନ ତାର ଅନତି ଦୂରରେ ଅବସ୍ଥିତ ଡ଼ାଲଙ୍ଗ ଗ୍ରାମରେ ପୋଲିସ ଗୁଳିରେ ଦୁଇଜଣ ମୃତ୍ୟୁବରଣ କରିଥିଲେ ।

**ଇରମ୍ ଗୁଳିକାଣ୍ଡ :** ଭଦ୍ରକ ଜିଲ୍ଲା ଅନ୍ତର୍ଗତ ବାସୁଦେବପୁର ଥାନାର ଇରମ୍ ଗୋଟିଏ ପ୍ରତିଷ୍ଠିତ ଗ୍ରାମ । ଏହା ଥିଲା ଏକ ସୁରକ୍ଷିତ ଅଞ୍ଚଳ । ଏହିଠାରେ ଗୋପବନ୍ଧୁ ଦାସ, ହରେକୃଷ୍ଣ ମହତାବ ପ୍ରମୁଖ ଅନ୍ୟାନ୍ୟ ନେତାମାନେ ସଭାସମିତି କରି ଜନ ଜାଗରଣ ସୃଷ୍ଟି କରିଥିଲେ । ୧୯୨୦ ମସିହାର ଅସହଯୋଗ ଆନ୍ଦୋଳନ ଠାରୁ ଆରମ୍ଭ ହୋଇ ୧୯୪୨ ମସିହା ପର୍ଯ୍ୟନ୍ତ ଏହି ଅଞ୍ଚଳ ମୁକ୍ତି ସଂଗ୍ରାମରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା ।

୧୯୪୨ ମସିହା ସେପ୍ଟେମ୍ବର ୨୯ ତାରିଖ ଦିନ ଇରମର ମେଳନ ପଡ଼ିଆଠାରେ ପୋଲିସ ଗୁଳିରେ ୨୯ ଜଣ ମୃତ୍ୟୁବରଣ କରିବା ସଙ୍ଗେ ସଙ୍ଗେ ୫୬ ଜଣ ଆହତ ହୋଇଥିଲେ । ଭାରତଛାଡ଼ ଆନ୍ଦୋଳନରେ ଏତେ ସଂଖ୍ୟକ ମୃତାହତ ହେବାରେ ସମଗ୍ର ଭାରତବର୍ଷରେ ଏହା ଏକମାତ୍ର ସ୍ଥାନ । ଏହାକୁ ଦ୍ୱିତୀୟ ଜାଲିଆନାୱାଲା ହତ୍ୟାକାଣ୍ଡ ସହିତ ତୁଳନା କରାଯାଇଥାଏ ।

**କାଇପଡ଼ା-କଳାମାଟିଆ ଗୁଳିକାଣ୍ଡ :** ଯାଜପୁର ଜିଲ୍ଲା ଅନ୍ତର୍ଗତ କାଇପଡ଼ା କଳାମାଟିଆଠାରେ ପୋଲିସ୍ ଗୁଳିରେ ୫ଜଣ ମୃତ୍ୟୁ ବରଣ କରିଥିଲେ । ଏଠାରେ ସତ୍ୟାଗ୍ରହୀମାନଙ୍କର ନେତୃତ୍ୱ ନେଇଥିଲେ ଅନ୍ନପୂର୍ଣ୍ଣା ମହାରଣା । ହାଡ଼ିବନ୍ଧୁ ପଣ୍ଡା, ସାଉଁଟି ମଲ୍ଲିକ, ସାନନ୍ଦ ସ୍ୱାଇଁ, ମାୟାଧର ଭୂୟାଁ ପ୍ରମୁଖ ଶହୀଦ ହୋଇଥିଲେ ।

**ନିମାପଡ଼ା ଗୁଳିକାଣ୍ଡ :** ନିମାପଡ଼ା ଅଞ୍ଚଳରେ ଭାରତଛାଡ଼ ଆନ୍ଦୋଳନ ଏକ ଭୟାବହ ରୂପ ନେଇଥିଲା । ଏହାର ନେତୃତ୍ୱ ନେଇଥିଲେ ଭବାନୀ ପଟ୍ଟନାୟକ, ପଦ୍ମଚରଣ ସାମନ୍ତସିଂହାର ପ୍ରମୁଖ ନେତା । ସତ୍ୟାଗ୍ରହୀମାନେ ଥାନା ଘେରାଉ କରିଥିଲେ । ପୋଲିସ୍ ଗୁଳିଚାଳନା ଫଳରେ ରାଘବ ମଲ୍ଲିକ ମୃତ୍ୟୁବରଣ କରିଥିଲେ ।

**ନୟାଗଡ଼ର ନୁଆଗାଁ ଗୁଳିକାଣ୍ଡ :** ୧୯୪୨ ମସିହା ପୂର୍ବରୁ ଏଠାରେ ପ୍ରଜାମଣ୍ଡଳ ଆରମ୍ଭ ହୋଇଥିଲା ଓ ଏହାପରେ ପରେ ଆରମ୍ଭ ହୋଇଥିଲା ଭାରତ ଛାଡ଼ ଆନ୍ଦୋଳନ । ଏହାର ନେତୃତ୍ୱ ନେଇଥିଲେ ମାୟାଧର ଦାସ ଓ ଅନ୍ୟାନ୍ୟ କେତେକ ପ୍ରଜାଆନ୍ଦୋଳନର ନେତା । ନୁଆଗାଁ ଥାନା ଅବରୋଧ କରିବା ସମୟରେ ପୋଲିସ୍ ଗୁଳିରେ ଜଣ୍ଟି ଡାକୁଆ ନାମରେ ଜଣେ ଆଦିବାସୀ କନ୍ଧ ଯୁବକ ମୃତ୍ୟୁବରଣ କରିଥିଲେ । ପୋଲିସମାନଙ୍କ ଦ୍ୱାରା ଅତ୍ୟାଚାରିତ ହୋଇ ନୟାଗଡ଼ ଜେଲରେ କେତେଜଣ ସତ୍ୟାଗ୍ରହୀ ମୃତ୍ୟୁ ବରଣ କରିଥିଲେ ।

**ମାତିଲି ଓ ପାପଡ଼ାହାଣ୍ଡି ଗୁଳିକାଣ୍ଡ :** ଅବିଭକ୍ତ କୋରାପୁଟ ଜିଲ୍ଲା ଓ ମାଲକାନାଗିରି ଜିଲ୍ଲା ଅନ୍ତର୍ଗତ ଟେଣ୍ଟୁଲିଗୁମାର ଜଣେ ଆଦିବାସୀ ଯୁବକ ଲକ୍ଷ୍ମଣ ନାୟକ ନେତୃତ୍ୱ ନେଇ ଶହୀଦ ହୋଇଥିଲେ ।

ତାଙ୍କୁ ପ୍ରୋତ୍ସାହନ ଦେଉଥିଲେ ସେଠାକାର ନେତା ରାଧାକୃଷ୍ଣ ରାଧାକୃଷ୍ଣ ବିଶ୍ୱାସରାୟ ଓ ଅନ୍ୟ କେତେଜଣ ନେତା ।

୧୯୪୨ ଅଗଷ୍ଟ ୯ ତାରିଖରେ ଲକ୍ଷ୍ମଣ ନାୟକ ମାତିଲି ଥାନା ଆଗରେ ସତ୍ୟାଗ୍ରହୀମାନଙ୍କୁ ଥାନା ପୋଡ଼ିବା ପାଇଁ ଏକତ୍ରିତ କରି ଧସ୍ତାଧସ୍ତି କରିବା ଫଳରେ ସେଠାରେ ଏକ ଫରେଷ୍ଟ ଗାର୍ଡ଼ର ମୃତ୍ୟୁ ହୋଇଥିଲା । ଫଳରେ ଲକ୍ଷ୍ମଣ ନାୟକଙ୍କୁ ଦୋଷୀ ସାବ୍ୟସ୍ତ କରି ବ୍ରହ୍ମପୁର ଜେଲକୁ ପଠାଇ ଦିଆଯାଇଥିଲା । ବିଚାର କରି ତାଙ୍କୁ ୧୯୪୩ ମସିହାରେ ଫାଶୀ ଦଣ୍ଡ ଦିଆଗଲା ।

ମାତିଲି ଗୁଳିକାଣ୍ଡ ପରେ ପାପଡ଼ାହାଣ୍ଡିଠାରେ ପୋଲିସ ଗୁଳିକାଣ୍ଡରେ ୬ ଜଣ ଲୋକ ମୃତ୍ୟୁବରଣ କରିଥିଲେ ।

**ଗଡ଼ଜାତ ଅଞ୍ଚଳରେ ଭାରତଛାଡ଼ ଆନ୍ଦୋଳନ :** ଢେଙ୍କାନାଳ ଗଡ଼ଜାତରେ ଭାରତଛାଡ଼ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ବୈଷ୍ଣବ ପଟ୍ଟନାୟକ । ମଦ୍ଦି ଥାନା ଅସ୍ତାଗାର ପୋଡ଼ି, ପରଜଙ୍ଗ ଅଞ୍ଚଳରେ ଭାରତଛାଡ଼ ଆନ୍ଦୋଳନ ତୀବ୍ର ଆକାର ଧାରଣ କରିଥିଲା । ପୋଲିସ ଗୁଳିରେ ଦୁଇଜଣ ସତ୍ୟାଗ୍ରହୀ ମୃତ୍ୟୁ ବରଣ କରିଥିଲେ ।

ତାଳଚେରରେ ପବିତ୍ର ମୋହନ ପ୍ରଧାନଙ୍କ ନେତୃତ୍ୱରେ ଭାରତଛାଡ଼ ଆନ୍ଦୋଳନ ସଙ୍ଗଠିତ ହୋଇଥିଲା ।

ନୀଳଗିରି ଗଡ଼ଜାତ ଅଞ୍ଚଳରେ ବନମାଳୀ ଦାସଙ୍କ ନେତୃତ୍ୱରେ ଆନ୍ଦୋଳନ ହୋଇଥିଲା । ଏଥିରେ ୬ଜଣ ସତ୍ୟାଗ୍ରହୀ ମୃତ୍ୟୁ ବରଣ କରିଥିଲେ ।

କଟକ ସହରର ରେଭେନ୍‌ସା କଲେଜ ଆଗରେ ରେଭେନ୍‌ସା କଲେଜ୍ ଛାତ୍ରମାନେ ୧୯୪୨ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତଛାଡ଼ ଆନ୍ଦୋଳନ କରିଥିଲେ । ରେଭେନ୍‌ସା କଲେଜର ପ୍ରାୟ ୨୦୦ ଜଣ ଛାତ୍ର ଏକ ସଭା କରିଥିଲେ । ଏହାର ନେତୃତ୍ୱ ନେଇଥିଲେ ବନମାଳୀ ପଟ୍ଟନାୟକ, ବିବୁଧେନ୍ଦ୍ର ମିଶ୍ର, ସୁରଜ ମଲ୍ଲ ସାହା । କଟକ ସହରର ବିଭିନ୍ନ ସ୍ଥାନରେ ତଥା ଗୌରୀଶଙ୍କର ପାର୍କଠାରେ ସଭା ସମିତିରେ ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେବାପାଇଁ ଆହ୍ୱାନ ଦିଆଯାଇଥିଲା ।

**ଗୋପନୀୟ ଆନ୍ଦୋଳନ :** ଓଡ଼ିଶାର ପ୍ରମୁଖ ନେତାମାନେ ଗିରଫ ହେବାପରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । କଟକ ସହରସ୍ଥିତ ଅଲିସା ବଜାରରେ ଥିବା ନନ୍ଦି ସାହୁଙ୍କ ଘର ଥିଲା ଆନ୍ଦୋଳନର କର୍ମ କ୍ଷେତ୍ର । ସେହିଠାରେ ସେ ରହି ଗୋପନରେ ଆନ୍ଦୋଳନକରିବା ପାଇଁ ହାତରେ ପ୍ରଚାରପତ୍ର ବାଣ୍ଟୁଥିଲେ । ତାଙ୍କ ସହିତ ଥିଲେ ବାଙ୍କ ବିହାରୀ ଦାସ, ନରସିଂହ ଚରଣ ମହାନ୍ତି, ଗୌରାଙ୍ଗ ଚରଣ ଦାସ, ଗୌରୀମୋହନ ଦାସ, ପ୍ୟାରୀମୋହନ ଦାସ, ବିଶ୍ୱନାଥ ଦାସ, ଯଦୁମଣି ମଙ୍ଗରାଜ, ସଚ୍ଚିଦାନନ୍ଦ ମିଶ୍ର । ସେମାନଙ୍କ ବିରୁଦ୍ଧରେ ଓଡ଼ିଶା ଷଡ଼ଯନ୍ତ୍ର ମୋକଦ୍ଦମା ହୋଇ କଠିନ ଦଣ୍ଡ ବିଧାନ କରାଯାଇଥିଲା ।

**ଫରୱାର୍ଡ଼ ବ୍ଲକର ଭୂମିକା :** ଓଡ଼ିଶାରେ ସୁଭାଷଚନ୍ଦ୍ର ବୋଷଙ୍କ ଦ୍ୱାରା ପ୍ରତିଷ୍ଠିତ ଫରୱାର୍ଡ଼ ବ୍ଲକର ଶାଖା ଓଡ଼ିଶାରେ ଦିବାକର ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ହୋଇଥିଲା । ସେଥିରେ ଅଶୋକ ଦାସ, ବିବୁଧେନ୍ଦ୍ର ମିଶ୍ର, ସୁରଜ ମଲ୍ଲ ସାହା, ହରିହର ପ୍ରହରାଜ ଓ ବଳରାମ ମହାନ୍ତି ପ୍ରମୁଖ ଛାତ୍ର ନେତା ସକ୍ରିୟ ଅଂଶ ଗ୍ରହଣ କରି ନେତାଜୀ ସୁଭାଷ ଚନ୍ଦ୍ର ବୋଷ ବର୍ଲିନ୍ ଓ ଟୋକିଓ ରେଡ଼ିଓ ଯୋଗେ ପ୍ରଚାର କରୁଥିବା ବାର୍ତ୍ତାମାନ ଓଡ଼ିଶାର ଛାତ୍ର ତଥା ଯୁବକମାନଙ୍କ ମଧ୍ୟରେ ବିତରଣ କରୁଥିଲେ । ଏହି ସମୟରେ ବଳରାମ ମହାନ୍ତି 'ବିପ୍ଳବୀ ସୁଭାଷ' ନାମରେ ନେତାଜୀଙ୍କର ଜୀବନୀ ପ୍ରକାଶ କରିଥିଲେ । ତାହା ବ୍ରିଟିଶ୍ ସରକାର ବାଜ୍ୟାପ୍ତ କରିଥିଲେ ଓ ସେଥିପାଇଁ ସେ ଦଣ୍ଡିତ ହୋଇଥିଲେ ।

ଏନ୍-୨/୧୦୧, ନୟାପଲ୍ଲୀ, ଭୁବନେଶ୍ୱର-୧୫

• • •

# ସ୍ୱାଧୀନତା ସଂଗ୍ରାମରେ ଆଦିବାସୀ ସମାଜର ଭୂମିକା

● ଶ୍ରୀ ସୁଭାଷ ଚନ୍ଦ୍ର ତ୍ରିପାଠୀ

ପ୍ରାକୃତିକ ଶୋଭା ସମ୍ଭାରରେ ଭରପୂର ଅବିଭକ୍ତ କୋରାପୁଟ ଜିଲ୍ଲା ଗହନର ଚାରୁଚିତ୍ରକଳା ଓ ପ୍ରକୃତିର ଗନ୍ତାଘର । ଦୁର୍ଗମ ଶ୍ୱାପଦ ସଙ୍କୁଳ ଗିରିପଥ, ଘଞ୍ଚ ଅରଣ୍ୟ, ଉତ୍ତୁଙ୍ଗ ପର୍ବତମାଳା, ଅସଂଖ୍ୟ ଗିରିଝରର କୁଳୁକୁଳୁ ନାଦ ପ୍ରକୃତିରାଣୀର ଶୋଭାବର୍ଦ୍ଧନ କରି ଦର୍ଶକ ମନରେ ଭରିଦିଏ ଅପାର ଆନନ୍ଦ । କେଉଁ ପ୍ରାଗୈତିହାସିକ ଯୁଗରୁ ଏହି ମାଟିରେ ବଢ଼ି ଆସିଛନ୍ତି ଭିନ୍ନ ଭିନ୍ନ ଶ୍ରେଣୀର ଆଦିବାସୀଗୋଷ୍ଠୀ– କନ୍ଧ, ସଉରା, ପରଜା, ଗାଦବା, ଭତ୍ରା, ଗଣ୍ଡ, ଅମାନାତ୍ୟ, ଭୂମିଆ, ମାଟିଆ, ଭମିଆ, ବଣ୍ଡା, କୋୟା ଇତ୍ୟାଦି ଓ ନିଜକୁ ହଜାଇ ଦେଇଥାନ୍ତି ପ୍ରକୃତି କୋଳରେ, ଅରଣ୍ୟର ସବୁଜିମା ବକ୍ଷରେ– ଗିରିଝରର କୁଳକୁଳୁ ନାଦ ସଙ୍ଗେ ପାଦକୁ ପାଦରେ ତାଳ ଦେଇ ପାରମ୍ପରିକ ନୃତ୍ୟଗୀତରେ ଆତ୍ମହରା ହୋଇ ଭୁଲିଯାଆନ୍ତି ସବୁ ଦୁଃଖ କଷ୍ଟ । ମନରେ ଭରିଦେଇଥାଏ ଚରମ ମାଦକତା ଓ ନିଜକୁ ଚିହ୍ନେଇ ଦିଅନ୍ତି ଏଇ ମାଟିର ସନ୍ତାନରୂପେ, ପ୍ରକୃତିର ସନ୍ତାନ ରୂପେ, ଆଦିମ ଅଧିବାସୀ ରୂପେ ।

ଅବିଭକ୍ତ କୋରାପୁଟ ଜିଲ୍ଲା ପ୍ରାକୃତିକ ବିଭବରେ ପରିପୂର୍ଣ୍ଣ, ବଣ ପାହାଡ଼ ପରିବେଷ୍ଟନୀ ଭିତରେ ଏକ ବିସ୍ତୃତ ଦୁର୍ଗମ ମାଳ ଅଞ୍ଚଳ ଓ ଆଦିବାସୀବହୁଳ ଅଞ୍ଚଳ । ଗମନାଗମନ, ଯାନବାହାନର ବିଶେଷ ସୁବିଧା ନଥିଲା । ଶିକ୍ଷାର ବିଶେଷ ପ୍ରଭାବ ଏଇ ମାଟିର ଆଦିବାସୀମାନଙ୍କ ଉପରେ ପଡ଼ି ନଥିବାରୁ ୧୯୧୯ ମସିହା ଭାରତ ଶାସନ ଆଇନ୍ ଅନୁସାରେ ଏହାକୁ ଏକ ଅନୁନ୍ନତ ପଛୁଆ ଅଞ୍ଚଳ ରୂପେ ବର୍ଣ୍ଣା ଯାଇଥିଲା । ଏଇ ଜିଲ୍ଲାର ପ୍ରାକୃତିକ ସମ୍ପଦ ତଥା ଖଣିଜ ପଦାର୍ଥ ଓ ଜଙ୍ଗଲଜାତ ଦ୍ରବ୍ୟ ନିଜ ସ୍ୱାର୍ଥରେ ଉପଯୋଗ କରିବା ପାଇଁ ପଡ଼ୋଶୀ ଆନ୍ଧ୍ର ପ୍ରଦେଶର ତେଲୁଗୁ ବାସିନ୍ଦା ଓ ତତ୍କାଳୀନ କର୍ମଚାରୀଗଣ ନାନା ପ୍ରକାର କୁଚକ୍ରାନ୍ତ କରି ନିରୀହ ସରଳମନା ନିଷ୍କପଟ ଆଦିବାସୀମାନଙ୍କୁ ଶୋଷଣ କରୁଥିଲେ । ସେମାନଙ୍କ ସାମାଜିକ, ସାଂସ୍କୃତିକ, ଅର୍ଥନୈତିକ ବିକାଶ ପାଇଁ ଦୃଷ୍ଟି ଦେଉ ନଥିଲେ । ଏହି ଅଞ୍ଚଳଟି ମାନ୍ଦ୍ରାଜ ପ୍ରେସିଡ଼େନ୍ସି ବିଶାଖାପାଟଣା ଜିଲ୍ଲାର ଏକ ଅଂଶ ବିଶେଷ ଥିଲା । ପାରଳାଖେମୁଣ୍ଡି ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରଗାଢ଼ ଉଦ୍ୟମ ଫଳରେ ଏବଂ ତତ୍କାଳୀନ ଭାରତସ୍ଥ ଶାସନାଧୀନ ଇଂରେଜ ସରକାରଙ୍କ ଶାସନ ସଚିବ ସାର୍ ସାମୁଏଲ୍ ହୋର୍‌ଙ୍କ ନ୍ୟାୟୋଚିତ ବିଚାର ଯୋଗୁଁ ଗୁଣପୁର, ରାୟଗଡ଼, କୋରାପୁଟ ଓ ଜୟପୁର ଏଜେନ୍ସି ଡ଼ିଭିଜନ୍‌ଗୁଡ଼ିକକୁ ବିଶାଖାପାଟଣା ଜିଲ୍ଲାରୁ ବିଚ୍ଛିନ୍ନ କରାଯାଇ ୧୯୩୬ ମସିହା ଏପ୍ରିଲ ପହିଲା ତାରିଖରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବାରୁ ଓଡ଼ିଶାରେ ଅନ୍ତର୍ଭୁକ୍ତ କରାଗଲା । ଉପାନ୍ତ ଆନ୍ଧ୍ରପ୍ରଦେଶର ଶ୍ରୀକାକୁଳମ ଜିଲ୍ଲା, ବିଶାଖାପାଟଣା ଜିଲ୍ଲା, ମଧ୍ୟପ୍ରଦେଶର ବସ୍ତର ଜିଲ୍ଲା, ଗଞ୍ଜାମ ଜିଲ୍ଲା ତଥା ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାରୁ ବାସିନ୍ଦା ତଥା ସରକାରୀ କର୍ମଚାରୀମାନେ ଭିନ୍ନ ଭିନ୍ନ ସମୟରେ ଏହି ଅଞ୍ଚଳକୁ ନିଜର ଜୀବିକା ନିର୍ବାହ କରିବାକୁ ଆସି କ୍ରମଶଃ ସ୍ଥାୟୀ ବାସିନ୍ଦା ରୂପେ ବସବାସ କଲେ । ସେତେବେଳେ ଜଳବାୟୁ ଦୃଷ୍ଟିରୁ ଏଇ ଜିଲ୍ଲାଟି ମେଲେରିଆ ପ୍ରଭାବିତ ଥିଲା ଓ ବ୍ଲାକ୍ ୱାଟର ଫିଭର ଯୋଗୁଁ ବହୁଲୋକ ମୃତ୍ୟୁ ମୁଖରେ ପଡୁଥିଲେ । ଆଦିବାସୀମାନେ ବଞ୍ଚିବା ପାଇଁ ପ୍ରକୃତିର ପ୍ରତି କୋଣେ କୋଣେ ଥିବା ଜଙ୍ଗଲ, ପାହାଡ଼, ନଦ, ନଦୀ ସହିତ ଭିଜ ପରିଚିତ ଥିଲେ । ସେତେବେଳେ ଶିକ୍ଷା ଓ ଅର୍ଥନୈତିକ ବିକାଶ କ୍ଷେତ୍ରରେ ଏହା ଅନ୍ୟ ଅଞ୍ଚଳ ତୁଳନାରେ ବହୁ ପଛରେ ପଡ଼ିଥିଲା । ତେଣୁ ଆଦିବାସୀମାନେ ପ୍ରକୃତି ଉପରେ ସଂପୂର୍ଣ୍ଣ ନିର୍ଭର କରୁଥିଲେ । ଚାଷ କାର୍ଯ୍ୟ ଓ ବନ୍ୟଜାତ ଜିନିଷ ସଂଗ୍ରହ କରି ନିଜ ଜୀବନ ନିର୍ବାହ କରୁଥିଲେ ।

୧୮୬୩ ମସିହାରେ ଜୟପୁର ଜମିଦାରୀ ଇଂରେଜ ସରକାରଙ୍କ ଶାସନାଧୀନ ହୋଇଥିଲା । ଶାସନ ସୁବିଧା ଦୃଷ୍ଟିରୁ ମି.ଫେନେ, ସହକାରୀ ଏଜେଣ୍ଟ ଏବଂ କ୍ୟାପଟେନ୍ ଗାଲହେସ, ସହକାରୀ ପୋଲିସ ସୁପରିଟେଣ୍ଡେଣ୍ଟ ରୂପେ ଜୟପୁରରେ ଅବସ୍ଥାପିତ ହୋଇଥିଲେ । ୧୮୬୪ ମସିହାରେ ଗୁଣୁପୁରର ପୁଟାସିଙ୍ଗି ଅଞ୍ଚଳର ଜଣେ ସଉରା ଆଦିବାସୀ ନେତା ଇଂରେଜ ସରକାରଙ୍କ ଶାସନ ବିରୁଦ୍ଧରେ ଯିବାରୁ ତାଙ୍କୁ ପୋଲିସ ଗିରଫ କରିଥିଲେ । ତେଣୁ ସ୍ଥାନୀୟ ସଉରା ଆଦିବାସୀମାନେ ଉକ୍ତ ଗିରଫର ପ୍ରତିବାଦ କରି ଉତ୍ତେଜିତ ହୋଇ ଥାନା ଉପରେ ଚଢ଼ାଉ କରି ଥାନାଦାରୁ ସମେତ ଅନ୍ୟ ଚାରିଜଣ ସିପାହୀଙ୍କୁ ହତ୍ୟା କରିଥିଲେ । ପରବର୍ତ୍ତୀ ସମୟରେ ସେମାନଙ୍କ ବିଦ୍ରୋହକୁ ଦମନ କରାଗଲା । ୧୮୭୯ ମସିହାରେ ମାଲକାନଗିରି ଅଞ୍ଚଳର କୋୟା ଆଦିବାସୀମାନେ ମଧ ଇଂରେଜ ସରକାର ବିରୁଦ୍ଧରେ ବିପ୍ଳବ କରିଥିଲେ । ୧୯୦୨ ମସିହାରେ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସିର ବିଶାଖାପାଟଣା ଜିଲ୍ଲାରେ ସ୍ଥାୟୀ ବନ୍ଦୋବସ୍ତ କାର୍ଯ୍ୟ ନିର୍ବାହ ସମୟରେ ଜୟପୁର ଜମିଦାରଙ୍କୁ ବାର୍ଷିକ ଟ୧୬୦୦୦/- ପେସ୍କିସ୍‌ରେ ରାଜା ରାମଚନ୍ଦ୍ର ଦେଓଙ୍କୁ ହସ୍ତାନ୍ତରିତ ହେଲା ।

୧୯୨୯ ମସିହା ଜୁଲାଇ ମାସରେ ଓଡ଼ିଶାର ତତ୍କାଳୀନ କଂଗ୍ରେସ ସଭାପତି ଂଗୋପବନ୍ଧୁ ଚୌଧୁରୀଙ୍କଠାରୁ ପ୍ରେରଣା ପାଇ ଂରାଧାକୃଷ୍ଣ ବିଶ୍ୱାସରାୟ ଏହି ଜିଲ୍ଲାରେ ପ୍ରଥମେ କଂଗ୍ରେସର ନେତୃତ୍ୱ ନେଲେ । ୧୯୩୦ ମସିହାରେ ଜୟପୁରର ଂ ନରସିଂହ ସାହୁ ମହାତ୍ମାଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ବିଦେଶୀ ବସ୍ତ୍ର ବର୍ଜନ ଆହ୍ୱାନ ଦେଇ ସର୍ବପ୍ରଥମେ ଖଦଡ଼ର ପ୍ରଚାର ଓ ପ୍ରସାର ପାଇଁ ଜୟପୁରରେ ଏକ ଖଦୀ ଭଣ୍ଡାର ପ୍ରତିଷ୍ଠା କଲେ । ଂ ନରସିଂହ ସାହୁ ଓ ଂ ରାଧାକୃଷ୍ଣ ବିଶ୍ୱାସରାୟ ଗଞ୍ଜାମର ତତ୍କାଳୀନ ବରିଷ୍ଠ ନେତା ଂ ନିରଞ୍ଜନ ପଟ୍ଟନାୟକଙ୍କ ସହିତ

ମିଶି ବ୍ରହ୍ମପୁରରେ ଚାଲିଥିବା ସତ୍ୟାଗ୍ରହର ନେତୃତ୍ୱ ନେଇଥିଲେ ଏବଂ ସେହି ସମୟରେ ଏହି ଅଞ୍ଚଳରୁ ପ୍ରାୟ ୫୦ ଜଣ ସ୍ୱାଧୀନତା ସଂଗ୍ରାମୀ ବ୍ରହ୍ମପୁର ଯାଇ ସତ୍ୟାଗ୍ରହରେ ଅଂଶଗ୍ରହଣ କରିଥିଲେ । ପରବର୍ତ୍ତୀ ସମୟରେ ଉପରୋକ୍ତ ତିନିଜଣ ନେତାଙ୍କୁ ପୋଲିସ୍ ଗିରଫ କରି ରାଜମାହେନ୍ଦ୍ରୀ ଜେଲରେ ବନ୍ଦୀ କରି ରଖିଥିଲେ ଓ ୧୯୩୪ ମସିହାରେ ସେମାନଙ୍କୁ ଜେଲରୁ ମୁକ୍ତ କରାଗଲା । କାରାମୁକ୍ତ ହୋଇ ସ୍ୱର୍ଗୀୟ ସାହୁ ଓ ସ୍ୱର୍ଗୀୟ ବିଶ୍ୱାସରାୟ ଏହି ଜିଲ୍ଲାକୁ ଫେରି ଆସି ସ୍ୱରାଜ୍ୟ ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ କଂଗ୍ରେସର ପ୍ରଚାର ଓ ପ୍ରସାର କାର୍ଯ୍ୟ ଚଳାଇଲେ । ପରମୁହୂର୍ତ୍ତରେ ସେମାନଙ୍କ ସହିତ ସ୍ୱର୍ଗୀୟ ସଦାଶିବ ତ୍ରିପାଠୀ, ସ୍ୱର୍ଗୀୟ ଲକ୍ଷ୍ମୀଚନ୍ଦ୍ର ଦାସ, ସ୍ୱର୍ଗୀୟ ସଦାନନ୍ଦ ମହାନ୍ତି, ମହମ୍ମଦ ବାରୀ, ସ୍ୱର୍ଗୀୟ ଆନାବି ରାଓ, ୰ରାଧାମୋହନ ସାହୁ ୰ସନ୍ନମାଝି ୰ ନୀଳକଣ୍ଠ ପାତ୍ର ୰ ଦୁର୍ଲଭ ହରାଲ ୰ ଭଗବାନ ଖେମୁଣ୍ଡୁ ୰ ମହାଦେବ ତ୍ରିପାଠୀ, ୰ କପିଳ ପାତ୍ର ୰ ବଗାପୂଜାରୀ ଓ ଅନ୍ୟ ସ୍ୱାଧୀନତା ସଂଗ୍ରାମୀମାନେ ସହଯୋଗ କରିଥିଲେ ।

୧୯୩୬ ମସିହାରେ ଉମରକୋଟସ୍ଥ ବଡ଼ ଭରଣ୍ଡୀ ଗ୍ରାମର ଆଦିବାସୀ ସ୍ୱାଧୀନତା ସଂଗ୍ରାମୀ ୰ ବଗା ପୂଜାରୀ ୫୦ ବର୍ଷ ବୟସରେ ଗାନ୍ଧିଜୀଙ୍କ ସ୍ୱରାଜ୍ୟ ଆନ୍ଦୋଳନ ଡ଼ାକରାରେ ଅନୁପ୍ରାଣିତ ହୋଇ ଜାତୀୟ କଂଗ୍ରେସରେ ଯୋଗ ଦେଲେ । ଗାଁ ଗାଁ ବୁଲି ଗାନ୍ଧିଜୀଙ୍କ ବାର୍ତ୍ତା ପ୍ରଚାର କରି ଆଦିବାସୀମାନଙ୍କୁ ଇଂରେଜ ଶାସନ ବିରୁଦ୍ଧରେ ମତାଇଥିଲେ । ସେତେବେଳେ ସ୍ୱର୍ଗୀୟ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ସମସ୍ତେ 'କୋରାପୁଟିଆ ଗାନ୍ଧୀ' ନାମରେ ନାମିତ କରିଥିଲେ । ୧୯୩୮ ମସିହାରେ ଖଇରପୁଟ ଗ୍ରାମରେ ସ୍ୱର୍ଗୀୟ ବିଶ୍ୱାସରାୟଙ୍କ ନେତୃତ୍ୱରେ ଗୋଟିଏ କର୍ମୀ ତାଲିମ ଶିବିର ପ୍ରତିଷ୍ଠା ହୋଇଥିଲା ଓ ସେଠାରେ ୰ବଗା ପୂଜାରୀ ତାଲିମ ପାଇ ଅଞ୍ଚଳରେ ସୂତା କାଟିବା, ଲୁଗା ବୁଣିବା, ନିଶା ନିବାରଣ କରିବା, ବୃକ୍ଷରୋପଣ କରିବା, ଗ୍ରାମ ସଫେଇ ସମ୍ବନ୍ଧରେ ଗାଁ ଗାଁ ବୁଲି ଗାନ୍ଧିଜୀଙ୍କ ଆଦର୍ଶ ପ୍ରଚାର କରି ସ୍ୱରାଜ ଆନ୍ଦୋଳନକୁ ଆଦିବାସୀମାନଙ୍କୁ ଆହ୍ୱାନ କରୁଥିଲେ । ୧୯୪୦ ମସିହାରେ ସେ ଠକ୍କରବାପାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । "ଠକ୍କରବାପା ଆଶ୍ରମ" ନିଜ ଗ୍ରାମରେ ପ୍ରତିଷ୍ଠା କରିବା ପାଇଁ ଜମି ଦେଇ ନିଜେ ସମସ୍ତ ଖର୍ଚ୍ଚ ବହନ କରିଥିଲେ । ବର୍ତ୍ତମାନ ଉକ୍ତ ଆଶ୍ରମସ୍ଥଳରେ ଆବାସିକ ଉଚ୍ଚବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି ଏବଂ ତାଙ୍କ ସ୍ମୃତିରକ୍ଷା ପାଇଁ ଉକ୍ତ ଗ୍ରାମରେ "ବଗାପୂଜାରୀ ସେବାସଦନ" ମଧ ପ୍ରତିଷ୍ଠିତ ହୋଇଛି । ସେ ଦଫା ୧୬(୧) ସି.ଆର.ପି. ଏଲ୍.ଏ. ୧୪୬/୪୨ରେ ବୃକ୍ଷଛେଦନ, ରାଜଦ୍ରୋହ, ଆନ୍ଦୋଳନ ଅପରାଧରେ ଗିରଫ ହୋଇ ବିଚାରାଳୟ ଦ୍ୱାରା ଦୋଷୀ ସାବ୍ୟସ୍ତ ହୋଇଥିଲେ । ତାଙ୍କୁ ଟ ୩୦/- ଜୋରିମାନା ଓ ଚାରିମାସ ଜେଲଦଣ୍ଡ ଆଦେଶ ହେଲା । କୋରାପୁଟ ଜେଲରେ ବନ୍ଦୀ ଅବସ୍ଥାରେ ଥିବା ସମୟରେ ୧୯୪୩ ମସିହା ଫେବୃଆରୀ ୧୧ ତାରିଖରେ ସେ ମୃତ୍ୟୁବରଣ କରିଥିଲେ । ତାଙ୍କ ମୃତ ଶରୀରକୁ ଜେଲ୍ ହତା ମଧ୍ୟରେ ସମାଧିସ୍ଥ କରାଗଲା ।

୧୯୩୮ ମସିହାରେ କୋରାପୁଟ ଜିଲ୍ଲା କଂଗ୍ରେସ କମିଟି ତରଫରୁ ଜୟପୁରସ୍ଥ କୁଆଁପୁଟ ଓ ନବରଙ୍ଗପୁରସ୍ଥ ତାରାଗାଁରେ କଂଗ୍ରେସ କର୍ମୀ ତାଲିମ ଶିବିର ଖୋଲାଯାଇ ନିଶା ନିବାରଣ, ସୂତା କାଟିବା, ଲୁଗା ବୁଣିବା ଓ କଂଗ୍ରେସ ସ୍ୱରାଜ୍ୟ ଆନ୍ଦୋଳନକୁ ସକ୍ରିୟ କରିବା ପାଇଁ ସଭ୍ୟ ସଂଗ୍ରହ କରି ସାଙ୍ଗଠନିକ ଶକ୍ତିକୁ ବ୍ୟାପକ କରାଗଲା । ମାତିଲି ଥାନା ଅନ୍ତର୍ଗତ ଟେଣ୍ଟୁଲିଗୁମା ଗ୍ରାମରେ ସଂଗ୍ରାମୀ ୰ ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ ବହୁ ସଂଖ୍ୟକ ଆଦିବାସୀ କଂଗ୍ରେସ କର୍ମୀ ଇଂରେଜ ସରକାରଙ୍କ ୟୁନିଅନ ଜ୍ୟାକ ପତାକାକୁ ବାହାର କରି ତ୍ରିରଙ୍ଗା ପତାକା ଉଡ଼ାଇବାକୁ ଉଦ୍ୟମ କରି ଥାନା ଚଢ଼ାଉ କଲେ । ପୁଲିସ ଗୁଳି ଚଳାଇବା ଫଳରେ ଲିଙ୍ଗା ଭୂମିଆ ସହିତ ଅନ୍ୟ ପାଞ୍ଚଜଣ ସହକର୍ମୀ ଘଟଣା ସ୍ଥଳରେ ମୃତ୍ୟୁ ବରଣ କଲେ । ମାତିଲି ଥାନା କେସ୍. ନଂ ୧୮/୧୯୪୨ରେ ମନୁଆ ନାମକ ଫରେଷ୍ଟଗାର୍ଡ଼ର ହତ୍ୟା ମକଦ୍ଦମାରେ ଲକ୍ଷ୍ମଣ ନାୟକଙ୍କ ସହିତ ଅନ୍ୟ ୫୩ ଜଣ ଆନ୍ଦୋଳନକାରୀଙ୍କୁ ଗିରଫ କରାଯାଇ ବ୍ରହ୍ମପୁର କେନ୍ଦ୍ରୀୟ ଜେଲରେ ରଖାଗଲା । ତତ୍‌କାଳୀନ ଅତିରିକ୍ତ ଜିଲ୍ଲା ଦୌରାଜଜ ଭି.ରାମନାଥନ୍‌ଙ୍କ ଦ୍ୱାରା ବିଚାର ହୋଇ ଲକ୍ଷ୍ମଣ ନାୟକଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ଫାଶୀ ଦଣ୍ଡ ଆଦେଶ ହେଲା । ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖ ପ୍ରତ୍ୟୁଷରେ ସେହି ମହାନ ସ୍ୱାଧୀନତା ସଂଗ୍ରାମୀଙ୍କୁ ବ୍ରହ୍ମପୁର କେନ୍ଦ୍ରୀୟ ଜେଲରେ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଗଲା । ସ୍ୱାଧୀନତାର ଉଦୟଭାନୁକୁ ଦେଖିବା ସୁଯୋଗ ସେ ପାଇଲେ ନି । ଦେଶ ପାଇଁ ସେ ଶହୀଦ ହୋଇଗଲେ ।

୧୯୪୨ ଠାରୁ ୧୯୪୯ ମସିହା ପର୍ଯ୍ୟନ୍ତ ଡ଼ାବୁଗାଁ ନିକଟସ୍ଥ କୁଠୁମ ବନ୍ଧା ଗ୍ରାମର ମହାନ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗୀୟ ସନ୍ନମାଝି ସ୍ୱରାଜ୍ୟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଆଦିବାସୀମାନଙ୍କୁ ଇଂରେଜ ସରକାର ବିରୁଦ୍ଧରେ ଯିବାକୁ ମତାଉ ଥିବାରୁ ତାଙ୍କ ବିରୁଦ୍ଧରେ ପୋଲିସ ଗିରଫ ପରୱାନା ଜାରି ହେଲା । ସେତେବେଳେ ସେ ନବରଙ୍ଗପୁରସ୍ଥ ବିକ୍ରମପୁର ଗ୍ରାମର ମାଣ୍ଡାଡ଼ୁଙ୍ଗରୀ ପାହାଡ଼ ଗୁମ୍ଫାରେ ଦୀର୍ଘ ଛ ମାସରୁ ଊର୍ଦ୍ଧ୍ୱକାଳ ଆତ୍ମଗୋପନ କରିଥିଲେ ।

୧୯୪୨ ମସିହା ଅଗଷ୍ଟ ୨୪ ତାରିଖରେ ଗାନ୍ଧିଜୀଙ୍କ "ଭାରତଛାଡ଼" ଆନ୍ଦୋଳନ ଚାଲିଥିବା ସମୟରେ ଡ଼ାବୁଗାଁ ହାଟରେ ଆୟୋଜିତ ହେବାକୁ ଥିବା ଏକ ସଭାରେ ଯୋଗ ଦେବା ପାଇଁ କଂଗ୍ରେସ କର୍ମୀମାନଙ୍କୁ ନବରଙ୍ଗପୁର ନିକଟସ୍ଥ ଗୁମାଗୁଡ଼ାଠାରେ ଏକତ୍ରିତ ହେବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ସେଠାରୁ କର୍ମୀମାନଙ୍କର ଏକ ବିରାଟ ଶୋଭାଯାତ୍ରା ବାହାରିଥିଲା । ସେହି ଶୋଭାଯାତ୍ରାରେ ବହୁଳ ସଂଖ୍ୟାରେ ଆଦିବାସୀମାନେ ତ୍ରିରଙ୍ଗା ପତାକା, ଟାଙ୍ଗି, ଠେଙ୍ଗା ଧରି ଯୋଗ ଦେଇଥିଲେ । ପାପଡ଼ାହାଣ୍ଡିଠାରୁ ଅନତି ଦୂରରେ ପୁରୀ ନଦୀର କାଠ ତିଆରି ପୋଲ ଉପର ଦେଇ ଶୋଭାଯାତ୍ରା ଆଗକୁ ଗଲାବେଳେ ଅପରପାର୍ଶ୍ୱରୁ ପୋଲିସ୍ ସେମାନଙ୍କୁ ବାରଣ କଲା । ସଂଗ୍ରାମୀମାନେ ଉତ୍ତ୍ୟକ୍ତ ହୋଇ ଟାଙ୍ଗିଆ ଉଠାଇ ଆକ୍ରମଣ କରିବାକୁ ଉଦ୍ୟମ କରିବାରୁ ପୋଲିସ ଗୁଳି ଚାଳନା କଲା । ପରମୁହୂର୍ତ୍ତରେ ପଶ୍ଚାତ୍ ଭାଗରୁ ଘଟଣା ସ୍ଥଳରେ ପୋଲିସ ଦଳ ପହଞ୍ଚି ଗୁଳିଚାଳନା କରିବା ଫଳରେ ସେଠାରେ ୧୨ ଜଣ ସଂଗ୍ରାମୀ ମୃତ୍ୟୁବରଣ କଲେ ଓ ଅନ୍ୟ ସାତଜଣ ସଂଗ୍ରାମୀ ନବରଙ୍ଗପୁର ଡ଼ାକ୍ତରଖାନାରେ ଚିକିତ୍ସାଧୀନ ଥିବାବେଳେ ମୃତ୍ୟୁବରଣ କଲେ । ଏତଦ୍‌ବ୍ୟତୀତ ଶତାଧିକ ବ୍ୟକ୍ତି ଆହତ ହୋଇ ଚିକିତ୍ସିତ

ହୋଇଥିଲେ । ସାମନାପଟୁ ଏବଂ ପଶ୍ଚାତ ଭାଗରୁ ପୋଲିସ୍ ଗୁଳି ଚଳାଇବାରୁ କେତେକ ସ୍ୱାଧୀନତା ସଂଗ୍ରାମୀ ଆତ୍ମରକ୍ଷା ସକାଶେ ପୂର୍ଣ୍ଣଗର୍ଭା ନଦୀବକ୍ଷକୁ ଲମ୍ଫ ପ୍ରଦାନ କରି ପ୍ରବଳ ଜଳ ସ୍ରୋତରେ ଭାସିଗଲେ । ତାର ହିସାବ କେହି ରଖିଲେ ନାହିଁ । ପୋଲିସ୍ ଗୁଳି ଚାଳନାରେ ମୃତ୍ୟୁବରଣ କରିଥିଲେ ଫମ୍ପୁଗାଁର ରାମଚନ୍ଦ୍ର ଅମାନାତ୍ୟ, ଉମୁରୀ ଗ୍ରାମର ମଙ୍ଗୁରୁ ଭତ୍ରା, ନୂଆଗାଁର ଘାସିରାମ ଓ ଦୀନବନ୍ଧୁ ଜାନି, ସୁରୁଲାବାଇ ଗ୍ରାମର ଶୁକ୍ରୁ ମୁଦୁଲି ଓ ସହଦେବ ମୁଦୁଲି, ତୁରଣ୍ଡି ଗ୍ରାମର ବୁଦ୍ରୁ ଅମାନାତ୍ୟ ଓ ରତନ ରନ୍ଧାରୀ, ଦଳେଇଗୁଡ଼ା ଗ୍ରାମର ବିକ୍ରମ ଭତରା ଓ ଖଗପତି ଅମାନାତ୍ୟ, ଧଞ୍ଜରା ଗ୍ରାମର ବଳ ସଉରା, ମନ୍ଥାଗୁଡ଼ାର ଭଗବାନ ପୂଜାରୀ, ଲଙ୍ଗରା ଗ୍ରାମର ପରମାନନ୍ଦ ଶବର, ପାତ୍ରପୁଟର ଜଗନ୍ନାଥ ଅମାନାତ୍ୟ, ମଣ୍ଡାଗାଁର ସଦାଶିବ ରଣା, ଭୁସୁରିପଦରର ରତନ ପୂଜାରୀ, ଦୁଃଖୀଗୁଡ଼ାର ଆନନ୍ଦ ଗୌଡ଼, ସରାଗୁଡ଼ା ଗ୍ରାମର ଶ୍ୟାମ ଗୌଡ଼ ଓ ନନ୍ଦାହାଣ୍ଡିର ସୁଦ୍ରୁ ଭତରା । ୧୯୮୧ ମସିହା ଜାନୁୟାରୀ ୩୦ ତାରିଖରେ ପୂରୀ ନଦୀକୂଳରେ ଉପରୋକ୍ତ ଶହୀଦମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ସ୍ମୃତିସ୍ତମ୍ଭ ନିର୍ମାଣ କରିବା ପାଇଁ ସ୍ୱର୍ଗୀୟ ରାଧାକୃଷ୍ଣ ବିଶ୍ୱାସରାୟ ଭିତ୍ତିସ୍ଥାପନ କରିଥିଲେ । ୧୯୮୪ ମସିହା ମେ ମାସ ୨୩ ତାରିଖରେ ତତ୍‌କାଳୀନ ଓଡ଼ିଶାର ରାଜ୍ୟପାଳ ଶ୍ରୀବିଶ୍ୱମ୍ଭରନାଥ ପାଣ୍ଡେ ଉକ୍ତ ସ୍ମୃତିସ୍ତମ୍ଭଟି ଉଦ୍‌ଘାଟନ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀମାନଙ୍କ ଅବଦାନ ଅତୁଳନୀୟ ।

*ଅବସରପ୍ରାପ୍ତ ଉପ ଆରକ୍ଷୀ ଅଧୀକ୍ଷକ, ଉଦଗଡା ଗଳି*

*ନବରଙ୍ଗପୁର-୭୬୪୦୫୯*

• • •

| | | |
|---|---|---|
| ୧୭୬୯ | : | ଇଂରେଜ ଶାସନ ବିରୁଦ୍ଧରେ ଖଲିକୋଟ ରାଜାଙ୍କ ବିଦ୍ରୋହ |
| ୧୭୭୨ | : | ପାରଳାଖେମୁଣ୍ଡି ରାଜା ନାରାୟଣ ଦେଓଙ୍କ ପୁତ୍ର ଗଜପତି ଦେଓଙ୍କ ବିଦ୍ରୋହ- ବିଜୟନଗର ରାଜା ଭୀମ ଦେଓ ଇଂରେଜମାନଙ୍କ ସହିତ ଯୁଦ୍ଧରେ ନିହତ । |
| ୧୭୭୮-୭୯ | : | ଘୁମୁସର ରାଜା ବିକ୍ରମ ଭଞ୍ଜଙ୍କ ବିଦ୍ରୋହ । |
| ୧୭୮୧ | : | ମୟୁରଭଞ୍ଜ ରାଜା ଦାମୋଦର ଭଞ୍ଜଙ୍କ ବିଦ୍ରୋହ । |
| ୧୭୯୮ | : | ପାରଳାଖେମୁଣ୍ଡି ରାଜବଂଶର ଜଗନ୍ନାଥ ଦେଓଙ୍କ ବିଦ୍ରୋହ । |
| ୧୭୯୯-୧୮୦୦ | : | ପାରଳାଖେମୁଣ୍ଡିରେ ବିଦ୍ରୋହ । |
| ୧୮୦୧-୩ | : | ଘୁମୁସର ରାଜା ଶ୍ରୀକର ଭଞ୍ଜ, ପାରଳାଖେମୁଣ୍ଡିର ଜଗନ୍ନାଥ ଦେଓ, ବିଜୟନଗର ରାଜା ମଣି ଦେଓ ଏବଂ ସେରଗଡ଼ ଜମିଦାରଙ୍କ ଇଂରେଜ ଶାସନ ବିରୁଦ୍ଧରେ ମିଳିତ ବିଦ୍ରୋହ -ସେରଗଡ଼ ଜମିଦାର ନିହତ । |
| ୧୮୦୩ | : | ସେପ୍ଟେମ୍ବର ୮ : ଦକ୍ଷିଣପଟୁ ଇଂରେଜମାନଙ୍କ ଓଡ଼ିଶା ଅଭିଯାନ ଆରମ୍ଭ । ଲେଫ୍‌ଟନାଣ୍ଟ କର୍ଣ୍ଣେଲ ହାରକୋର୍ଟଙ୍କ ନେତୃତ୍ୱରେ ସେପ୍ଟେମ୍ବର ୧୧ ତାରିଖରେ ଇଂରେଜ ସେନାବାହିନୀର ପୁରୀ ପ୍ରବେଶ, ଅକ୍ଟୋବର ୧୦ରେ କଟକ ଆଗମନ । ଅକ୍ଟୋବର ୧୪ରେ ବାରବାଟି ଦୁର୍ଗ ଦଖଲ । ସେପ୍ଟେମ୍ବର ୨୬ ତାରିଖରେ କାପଟେନ ମର୍ଗାନଙ୍କ ବାଲେଶ୍ୱର ସହର ଦଖଲ ।<br>ଡ଼ିସେମ୍ବର ୧୭ :ଦେଓଗାଁ ଚୁକ୍ତି ଅନୁସାରେ ମରହଟ୍ଟା ଶାସକ ରଘୁଜୀ ଭୌଁସଲା ଇଂରେଜମାନଙ୍କୁ ଓଡ଼ିଶାର ଉପକୂଳବର୍ତ୍ତୀ ପୁରୀ, କଟକ, ବାଲେଶ୍ୱର ଜିଲ୍ଲା ଉପରେ ଅଧିକାର ପ୍ରଦାନ । |
| ୧୮୦୪ | : | ଖୋର୍ଦ୍ଧାରାଜା ଦ୍ୱିତୀୟ ମୁକୁନ୍ଦଦେବ ଗାଦୀଚ୍ୟୁତ-ମନ୍ତ୍ରୀ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ଇଂରେଜ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ- ଶେଷ ସ୍ୱାଧୀନ ଗଡ଼ ବରୁଣାଇ ଦୁର୍ଗର ପତନ । ଜୟୀ ରାଜଗୁରୁଙ୍କୁ ଫାଶୀ । ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଶହୀଦ । |
| ୧୮୦୫ | : | ବ୍ରିଟିଶ ଶାସନ ବିରୁଦ୍ଧରେ ହରିଶପୁର ରାଜା ନୀଳକଣ୍ଠ ମଙ୍ଗରାଜ, କନିକା ରାଜା ବଳଭଦ୍ର ଭଞ୍ଜ, କୁଜଙ୍ଗ ରାଜା ଚନ୍ଦ୍ରଧ୍ୱଜ ଷଣ୍ଢଙ୍କ ବିଦ୍ରୋହ । ପାରାଦୀପରେ ପ୍ରଥମ ନୌ-ସଂଘର୍ଷ । |
| ୧୮୧୪ | : | ସେପ୍ଟେମ୍ବର ୨୦ : ଚୌକିଦାରୀ ଟିକସ୍ ବିରୁଦ୍ଧରେ କଟକ ସହରରେ ଇଂରେଜ ବିରୁଦ୍ଧରେ ସର୍ବପ୍ରଥମ ହରତାଳ । |

# ଖୋର୍ଦ୍ଧାରେ ଫିରିଙ୍ଗି ଶାସନ ବିରୋଧରେ ସଂଗ୍ରାମ

● ଶ୍ରୀ ଫକୀର ହରିଚନ୍ଦନ

୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ତେଲଙ୍ଗା ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଭୋଇ ବଂଶର ପ୍ରଥମ ରାଜା ରାମଚନ୍ଦ୍ର ଦେବ ଖୋର୍ଦ୍ଧାର ବରୁଣାଇ ପାହାଡ଼ ଘାଟି ତଳେ ରାଜଧାନୀ ସ୍ଥାପନ କରି ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠା କରିଥିଲେ । ଭୋଇ ବଂଶର ୧୨ ଶ ରାଜା ୨ୟ ମୁକୁନ୍ଦଦେବଙ୍କର ମନ୍ତ୍ରୀ(ଦେୱାନ୍) ହରିହର ଭ୍ରମରବର ରାୟ, ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଓ ରାଜଗୁରୁ ଜୟକୃଷ୍ଣ ମହାପାତ୍ର(ଜୟୀ ରାଜଗୁରୁ)-ତିନିଜଣଯାକ ଅସାଧାରଣ ସାହସୀ ଓ ଧୁରନ୍ଧର ଯୋଦ୍ଧା ଥିଲେ । କିନ୍ତୁ ଜୟୀ ରାଜଗୁରୁ ବିଚକ୍ଷଣ, ବୁଦ୍ଧିମାନ, ଚତୁର ଓ ବିଦ୍ୱାନ ପଣ୍ଡିତ ଥିଲେ । ସିଂହାସନ ଆରୋହଣ ବେଳକୁ ମୁକୁନ୍ଦଦେବ ନାଁ ବାଳକ ଥିବାରୁ ଜୟୀ ରାଜଗୁରୁ ତାଙ୍କ ଅଭିଭାବକ ପରି ସମସ୍ତ ରାଜକାର୍ଯ୍ୟ ବୁଝାସୁଝା କରୁଥିଲେ, ଏପରିକି ବେଳେବେଳେ ରାଜାଙ୍କ ତରଫରୁ ରାଜ୍ୟରେ ନିଜ ନାମରେ ନିର୍ଦ୍ଦେଶନାମାମାନ ଜାରି କରୁଥିଲେ । ଦେୱାନ ହରିହର ଭ୍ରମରବର ଓ ସେନାପତି ବକ୍ସି ଜଗବନ୍ଧୁ ଜୟୀ ରାଜଗୁରୁଙ୍କ ଆଦେଶକୁ ରାଜାଦେଶ ଭାବେ ମାନିବାକୁ ପ୍ରସ୍ତୁତ ନଥିଲେ । ତେଣୁ ଜୟୀ ରାଜଗୁରୁ ୧୮୦୨ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବଙ୍କ ସମେତ ରାଜପରିବାରକୁ ଖୋର୍ଦ୍ଧାରୁ ସ୍ଥାନାନ୍ତରିତ କରିନେଇ ପୁରୀ ବାଲିସାହି ପୁରୁଣା ନଅରରେ ରଖାଇଲେ ଓ ନିଜେ ସେଠାରେ ରହି ନିଜର ରାଜଗୁରୁ ଦାୟିତ୍ୱ ସହ ମନ୍ତ୍ରୀ ଓ ସେନାପତିଙ୍କ ଦାୟିତ୍ୱ ମଧ୍ୟ ତୁଲାଇଲେ । ତା'ର ବର୍ଷକ ପରେ ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ବକ୍ସି ଜଗବନ୍ଧୁଙ୍କ ବିରୋଧ ହେତୁ ବାଣପୁର ଓ ଖୋର୍ଦ୍ଧା ପରିବର୍ତ୍ତେ ମୁକୁନ୍ଦଦେବଙ୍କ ଅନୁମତି କ୍ରମେ ଗଞ୍ଜାମରୁ ସମୁଦ୍ର କୂଳେ କୂଳେ ପୁରୀବାଟ ଦେଇ କଟକ ବାରବାଟୀ ଦୁର୍ଗ ଦଖଲ କରି ଓଡ଼ିଶାରୁ ମରହଟ୍ଟାମାନଙ୍କୁ ତଡ଼ିଦେଲେ । ଇଂରେଜମାନଙ୍କୁ ସହାୟତା କରିବାକୁ ପ୍ରଥମରୁ ଜୟୀ ରାଜଗୁରୁ ଚାହିଁ ନଥିଲେ ମଧ୍ୟ ଜଗନ୍ନାଥଙ୍କ ସେବକ ଓ ପୁରୀର ବ୍ରାହ୍ମଣ ପଣ୍ଡିତମାନଙ୍କ ଚାପ ଫଳରେ ମୁକୁନ୍ଦଦେବଙ୍କ ଇଚ୍ଛାକୁ ସମ୍ମାନ ଦେଇ ଖୋର୍ଦ୍ଧା ରାଜାଙ୍କଠାରୁ ମରହଟ୍ଟାମାନେ ଛଡ଼ାଇ ନେଇଥିବା ୪ ଗୋଟି ପ୍ରଗଣା ଇଂରେଜଙ୍କ ମାର୍ଫତରେ ମରହଟ୍ଟାଙ୍କଠାରୁ ମୁକୁଳାଇ ଫେରି ପାଇବା ସର୍ତ୍ତରେ ଇଂରେଜମାନଙ୍କୁ ସହାୟତା କରିଥିଲେ । କିନ୍ତୁ ଇଂରେଜମାନେ ବାରବାଟି ଦୁର୍ଗ ଅଧିକାର କଲାପରେ ସେ ୪ଟି ପ୍ରଗଣା ଫେରାଇବା ସର୍ତ୍ତକୁ ଅସ୍ୱୀକାର କରିବାରୁ ଜୟୀରାଜଗୁରୁ ଇଂରେଜମାନଙ୍କୁ ଓଡ଼ିଶାରୁ ତଡ଼ିବାକୁ ସଶସ୍ତ୍ର ଅଭିଯାନ ଚଳାଇଲେ ।

ସେହି କାରଣରୁ ୧୮୦୪ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଖୋର୍ଦ୍ଧାଗଡ଼କୁ ଉତ୍ତର, ପୂର୍ବ ଓ ପଶ୍ଚିମ-ତିନିଦିଗରୁ ଦୀର୍ଘ ତିନି ସପ୍ତାହକାଳ ଅବରୋଧ ଓ ଆକ୍ରମଣ କରି ତୋପ, କମାଣ ଓ ବନ୍ଧୁକ ସାହାଯ୍ୟରେ ଅବିରାମ ଗୁଳିବର୍ଷଣ କଲେ । ଜୟୀରାଜଗୁରୁ ଖୋର୍ଦ୍ଧାର ଦୁର୍ଦ୍ଧର୍ଷ ପାଇକବାହିନୀକୁ ନେଇ ତିନି ସପ୍ତାହକାଳ ପରାକ୍ରମଶାଳୀ ଇଂରେଜ ବାହିନୀ ସହ ଲଢ଼ି ଦୁର୍ଗ ରକ୍ଷା କରିଥିଲେ ହେଁ ଶେଷରେ ଭୀଷଣ ତୋପ ମାଡ଼ରେ ଦୁର୍ଗପ୍ରାଚୀର ଭାଙ୍ଗି ପଡ଼ିବାରୁ ଜୟୀରାଜଗୁରୁଙ୍କ ସହିତ ମୁକୁନ୍ଦଦେବ ସପରିବାର ଦୁର୍ଗଛାଡ଼ି ଜଙ୍ଗଲକୁ ପଳାଇଗଲେ ଏବଂ ଇଂରେଜବାହିନୀ ଖୋର୍ଦ୍ଧା ଦୁର୍ଗ ଅଧିକାର କଲେ । ସୁତରାଂ ଖୋର୍ଦ୍ଧା ଦୁର୍ଗ ଥିଲା ଭାରତର ଶେଷ ସ୍ୱାଧୀନ ଦୁର୍ଗ ଏବଂ ୧୮୦୪ ଖୋର୍ଦ୍ଧା ଯୁଦ୍ଧ ଥିଲା ସାରା ଭାରତବର୍ଷରେ ଇଂରେଜ ଶାସନ ବିରୋଧରେ ସର୍ବ ପ୍ରଥମ ସ୍ୱାଧୀନତା ସଂଗ୍ରାମ ।

ଇଂରେଜମାନେ ଖୋର୍ଦ୍ଧା ଅଧିକାର କଲାପରେ ଜୟୀରାଜଗୁରୁଙ୍କୁ ଫାଶୀ ଦେଲେ ଏବଂ ମୁକୁନ୍ଦଦେବଙ୍କୁ ବନ୍ଦୀ କରି ଗାଦିଚ୍ୟୁତ କରିବା ପରେ ଜଗନ୍ନାଥ ମନ୍ଦିରର ସୁପରିଟେଣ୍ଡେଣ୍ଟ ଭାବେ ନିଯୁକ୍ତ କରିଥିଲେ । ତା' ପରେ ଇଂରେଜ ଶାସକଙ୍କ ବିଷ ଦୃଷ୍ଟି ପଡ଼ିଲା ବକ୍ସି ଜଗବନ୍ଧୁ ଓ ଦେବାନ୍ ହରିହରଙ୍କ ଉପରେ । ୧୮୦୪ରେ ଖୋର୍ଦ୍ଧାଗଡ଼ ଯୁଦ୍ଧରେ ସେ ଦୁହେଁ ମୁକୁନ୍ଦଦେବଙ୍କୁ ସହାୟତା କରିଥିଲେ ହେଁ ପ୍ରମୁଖ ଭୂମିକା ଗ୍ରହଣ କରିନଥିବାରୁ ଯୁଦ୍ଧବେଳେ ଇଂରେଜଙ୍କ ଆଖିରେ ପଡ଼ିନଥିଲେ । କିନ୍ତୁ ସେ ଦୁହିଁଙ୍କର ବୀରତ୍ୱ ଓ ଖୋର୍ଦ୍ଧା ରାଜ୍ୟରେ ପ୍ରଭୂତ ପ୍ରଭାବ ପ୍ରତି ଇଂରେଜମାନେ ସଚେତନ ହୋଇଉଠିଥିଲେ । ତେଣୁ ହାତରେ ନମାରି ଭାତରେ ମାରିବା ନୀତିରେ ସେ ଦୁହେଁ ଭୋଗୁଥିବା ସେନାପତି ଓ ଦେବାନ ଜାଗିର ମାହାଲକୁ ବଣକତା କରି ସେ ଦୁହିଁଙ୍କ ଠାରୁ ଛଡ଼ାଇ ନେବା ସଂଗେ ସଂଗେ ଖୋର୍ଦ୍ଧାର ଲକ୍ଷୁଆ ପାଇକମାନଙ୍କ ନିଷ୍କର ଜାଗିର ଛଡ଼ାଇନେଲେ । ସେମାନଙ୍କୁ ନିରସ୍ତ୍ର ଓ ନିଃସ୍ୱ କରିଦେଲେ । ମୁଖ୍ୟତଃ ଏହି କାରଣରୁ ବକ୍ସି ଜଗବନ୍ଧୁ ଓ ଦେବାନ ହରିହରଙ୍କ ପୁତ୍ର ଦେବାନ୍ କୃଷ୍ଣଚନ୍ଦ୍ର ପ୍ରମୁଖ ପାଇକ ସର୍ଦ୍ଦାର ଓ ପାଇକମାନଙ୍କ ମଧ୍ୟରେ ଇଂରେଜଶାସନ ବିରୋଧରେ ତୀବ୍ର ଅସନ୍ତୋଷର ନିଆଁ ଜୁହୁଳୁଥିଲା- ଯାହା ୧୮୧୭ ଖ୍ରୀଷ୍ଟାବ୍ଦରେ ଏକ ଭୀଷଣ ବିଦ୍ରୋହ ନିଆଁର ରୂପ ନେଇ ଜଳିଉଠିଲା ।

ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକ ଦେବାନ କୃଷ୍ଣଚନ୍ଦ୍ରଙ୍କ ସମେତ ଖୋର୍ଦ୍ଧାର ପାଇକମାନେ ମେଳି ହୋଇ ଇଂରେଜଶାସନ ବିରୋଧରେ ବିଦ୍ରୋହ କଲେ ଏବଂ ଖୋର୍ଦ୍ଧା ସହରରୁ ଇଂରେଜମାନଙ୍କୁ ତଡ଼ିଦେବା ସଂଗେ ସଂଗେ ସେମାନଙ୍କ ଆସ୍ଥାନ ଓ ଅଫିସ ସବୁ ପୋଡ଼ିଦେଲେ । ଏହି ଐତିହାସିକ ସ୍ୱାଧୀନତା ସଂଗ୍ରାମ "ଖୋର୍ଦ୍ଧା ପାଇକ ବିଦ୍ରୋହ" ଭାବେ ଖ୍ୟାତ ଏବଂ ଏହା ଥିଲା ଓଡ଼ିଶାରେ ତଥା ଭାରତବର୍ଷର ଇଂରେଜଶାସନ ବିରୋଧରେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ । ଏ ବିଦ୍ରୋହ ଇଂରେଜମାନଙ୍କୁ ଏପରି ଭୀତତ୍ରସ୍ତ ଓ ଆତଙ୍କିତ କରିଦେଇଥିଲା ଯେ ସେମାନଙ୍କ ଶାସନ ସବୁଦିନ ପାଇଁ ଖୋର୍ଦ୍ଧା ରାଜ୍ୟରୁ ଲୋପ ପାଇଯିବ ବୋଲି ସେମାନେ ଆଶଙ୍କା କରିଥିଲେ । ତେଣୁ ଏମିତି ନୃଶଂସ ଓ ନିଷ୍ଠୁରଭାବେ, ପୁରୀ ନିକଟବର୍ତ୍ତୀ ଦୋବଣ୍ଡା ଠାରେ ଏକତ୍ରିତ

ହୋଇଥିବା ହଜାର ହଜାର ପାଇକଙ୍କ ଉପରେ ୫୫୦ ବନ୍ଧୁକଧାରୀ ସୈନ୍ୟ କ୍ୟାପ୍‌ଟେନ୍ ଲିଫାଂଟେରଙ୍କ ଆଦେଶରେ ଅନ୍ଧିବୁନ୍ଧା ଗୁଳିବର୍ଷଣ କରି ଶହଶହ ପାଇକଙ୍କୁ ହତ୍ୟା କରି ବିଦ୍ରୋହ ଦମନ କଲାପରେ ମଧ ଇଂରେଜମାନେ ବହୁ ପାଇକ ନେତାଙ୍କୁ ଧରି ଜେଲ୍‌ଦଣ୍ଡ, ଦ୍ୱୀପାନ୍ତର ଦଣ୍ଡ ଓ ପ୍ରାଣଦଣ୍ଡ ଦେଇଥିଲେ । କିନ୍ତୁ ତା'ପରେ ଦୀର୍ଘ ୧୦ ବର୍ଷକାଳ ସମସ୍ତ ଶକ୍ତି ଖଟାଇ ଖୋଜି ମଧ ବକ୍ସି ଜଗବନ୍ଧୁ ଓ ଦେବାନ କୃଷ୍ଣଚନ୍ଦ୍ରଙ୍କୁ ଧରି ପାରିନଥିଲେ, ଯାହାଫଳରେ ପୁଣିଥରେ ସେ ଦୁହିଁଙ୍କ ନେତୃତ୍ୱରେ ଖୋର୍ଦ୍ଧାର ପାଇକମାନେ ମେଳିବାନ୍ଧି ବିଦ୍ରୋହ କରିବାର ଆଶଙ୍କା ସେମାନଙ୍କ ମନରୁ ଦୂର ହୋଇନଥିଲା । ସେଥିପାଇଁ ଶେଷରେ ଇଂରେଜ ସରକାର ବକ୍ସି ଜଗବନ୍ଧୁ ଓ ଦେବାନ କୃଷ୍ଣଚନ୍ଦ୍ରଙ୍କ ପ୍ରତି କୌଣସି ପ୍ରକାର ଅବମାନନା ପ୍ରଦର୍ଶନ ନକରି ସମ୍ମାନର ସହିତ ସେମାନଙ୍କ ସହ ସନ୍ଧି ସ୍ଥାପନ କରିବାରୁ ସେ ଦୁହେଁ ୧୮୨୭ ଖ୍ରୀଷ୍ଟାବ୍ଦରେ ଆତ୍ମପ୍ରକାଶ କରିଥିଲେ ଏବଂ ଇଂରେଜ ସରକାର ସେମାନଙ୍କ ଅଗଠାନ ପାଇଁ ମାସିକ ଭତ୍ତା ଖଞ୍ଜିଥିଲେ ।

ସେହିବର୍ଷ ଖୋର୍ଦ୍ଧା ସନ୍ନିକଟ ତାପଙ୍ଗଠାରେ ତାପଙ୍ଗଗଡ଼ର ଦଳବେହେରା ମାଧବଚନ୍ଦ୍ର ରାଉତରାୟଙ୍କ ନେତୃତ୍ୱରେ ଇଂରେଜ ଶାସନ ବିରୋଧରେ ଆଉ ଥରେ ପାଇଁ ଯେଉଁ ସ୍ୱାଧୀନତା ସଂଗ୍ରାମ ହୋଇଥିଲା ତାହା ତାପଙ୍ଗଗଡ଼ ଅଧୀନସ୍ଥ ଏକ କ୍ଷୁଦ୍ର ଅଞ୍ଚଳର ସ୍ୱାଧୀନତା ପାଇଁ ଉଦ୍ଦିଷ୍ଟ ଥିଲେ ହେଁ ଦଳବେହେରା ମାଧବଚନ୍ଦ୍ର ରାଉତରାୟଙ୍କ ବୀରତ୍ୱ, ସାହସ ଓ ସାମରିକ ଶକ୍ତି ଅସାଧାରଣ ଥିବାରୁ ଇଂରେଜମାନଙ୍କୁ ତାପଙ୍ଗଗଡ଼ ଅଧିକାର କରିବା ପାଇଁ ଦଳବେହେରା ବାହିନୀ ସହିତ ଦୀର୍ଘ ୭ ଦିନ କାଳ ଭୀଷଣ ଯୁଦ୍ଧ କରିବାକୁ ପଡ଼ିଥିଲା । ପ୍ରଥମ ଚାରି ଦିନର ଯୁଦ୍ଧ କବି ମଧୁସୂଦନ ବିପ୍ର ସ୍ୱଚକ୍ଷୁରେ ଦେଖିଥିବାର ଏବଂ ପରବର୍ତ୍ତୀ ତିନି ଦିନର ଯୁଦ୍ଧ ବିବରଣୀ ସ୍ୱୟଂ ଦଳବେହେରା ମାଧବଚନ୍ଦ୍ରଙ୍କ ମୁହଁରୁ ଶୁଣିଥିବାର ସେ ଲେଖିଛନ୍ତି ।

ଖୋର୍ଦ୍ଧା ରାଜ୍ୟକୁ ମୋଗଲ ସମ୍ରାଟ ଆକବରଙ୍କ ସେନାପତି ତୋଡ଼ରମଲ୍ଲ ଜମିର ବନ୍ଦୋବସ୍ତ କରାଇ ୮ଗୋଟି ଜିଲ୍ଲାରେ ବିଭକ୍ତ କରିଥିଲେ । ସେହି ୮ଗୋଟି ଜିଲ୍ଲା ମଧ୍ୟରୁ ତାପଙ୍ଗ ଅନ୍ୟତମ ଜିଲ୍ଲା ଥିଲା । ତାପଙ୍ଗ ଜିଲ୍ଲାରେ ୫୫ଗୋଟି ତଉଜି ମାହାଲ ଥିଲା । ବ୍ରିଟିଶ ରାଜତ୍ୱ କାଳରେ ଖୋର୍ଦ୍ଧା ରାଜ୍ୟକୁ 'ଖାସ୍ ମାହାଲ' ଭାବେ ବନ୍ଦୋବସ୍ତ କରାଯାଇଥିଲେ ହେଁ ତାପଙ୍ଗ ଜିଲ୍ଲାକୁ ଖାସ୍ କରାନଯାଇ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅମୃତ ମଣୋହି ଇଲାକା ଭାବେ ପୁରୀ ରାଜାଙ୍କ ନାମରେ 'ଏଖରାଜାତ' ମହାଲରୂପେ ରଖାଯାଇଥିଲା । ଏଥିରୁ ହିଁ ଖୋର୍ଦ୍ଧା ରାଜାଙ୍କର ତାପଙ୍ଗ ସହିତ ସ୍ୱତନ୍ତ୍ର ସମ୍ପର୍କର ସୂଚନା ମିଳେ । ଖୋର୍ଦ୍ଧା ରାଜ୍ୟର ୭୧ ଗଡ଼ ମଧ୍ୟରେ ତାପଙ୍ଗଗଡ଼ ଏକ ଶକ୍ତିଶାଳୀ ଓ ଦୁର୍ଭେଦ୍ୟ ଦୁର୍ଗ ରୂପେ ବିବେଚିତ ହେଉଥିଲା ଏବଂ ଏହା ରାଜଧାନୀ ଖୋର୍ଦ୍ଧା ଜିଲ୍ଲାଠାରୁ ପ୍ରାୟ ୪କୋଶ ଦକ୍ଷିଣରେ ଥିଲେ ହେଁ ପ୍ରାକୃତିକ କାରଣରୁ ଖୋର୍ଦ୍ଧା ଜିଲ୍ଲାର ଦକ୍ଷିଣଦ୍ୱାର ରୂପେ ବିବେଚିତ ହେଉଥିଲା । ସେହି କାରଣରୁ ଏ ଗଡ଼ର ପଶ୍ଚିମ ପାଖରେ ଅଗମ୍ୟ ଅରଣ୍ୟ ଘେର ଭିତରେ ଦଳବେହେରାଙ୍କ କର୍ତ୍ତୃତ୍ୱାଧୀନ ଖୋର୍ଦ୍ଧା ରାଜାଙ୍କର ଏକ ଗୁପ୍ତ ଅସ୍ତ୍ରାଗାର ଥିଲା । ସେହି ଅସ୍ତ୍ରାଗାରରେ ଦଶ ସହସ୍ର ସୈନ୍ୟଙ୍କ ପାଇଁ ଢାଲ, ତରବାରୀ ସହିତ ତୋପ, କମାଣ, ବନ୍ଧୁକ ଇତ୍ୟାଦି ପାରମ୍ପରିକ ଅସ୍ତ୍ରଶସ୍ତ୍ର, ପର୍ଯ୍ୟାପ୍ତ ଗୁଳିଗୋଳା ଏବଂ ଏକ ସୁରକ୍ଷିତ ବାରୁଦ ରଖାର ମହଜୁଦ୍ ଥିଲା । ଦୁଇଜଣ ବିଶ୍ୱସ୍ତ ଦଳବେହେରାଙ୍କ ତତ୍ତ୍ୱାବଧାନରେ ୫ଗୋଟି ହାତୀ ସହିତ ୫୦ଜଣ ପାଇକ ସୈନ୍ୟ ସଦା ସର୍ବଦା ସେ ଅସ୍ତ୍ରାଗାରକୁ ଜଗି ରହୁଥିଲେ । ତାପଙ୍ଗ ସମେତ ନିକଟବର୍ତ୍ତୀ ୧୨ଗୋଟି ଗ୍ରାମକୁ ନେଇ ତାପଙ୍ଗ ବାରପଡ଼ା କୁହାଯାଉଥିଲା ଏବଂ ସେହିସବୁ ଗ୍ରାମରେ ଦଳବେହେରାଙ୍କ ଲଡୁଆ ପାଇକ ସୈନ୍ୟମାନେ ବାସ କରୁଥିଲେ ।

ତାପଙ୍ଗଗଡ଼ର ଦଳବେହେରା ମାଧବଚନ୍ଦ୍ର ରାଉତରାୟ ବକ୍ସିଜଗବନ୍ଧୁଙ୍କ ଭଳି ଜଣେ ଶକ୍ତିଶାଳୀ ଓ ସାହସୀ ଯୋଦ୍ଧା ଥିଲେ । ରାଜଭକ୍ତ ଦଳବେହେରା ମୁକୁନ୍ଦ ଦେବଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଥିବାରୁ ରାଜଗୁରୁଙ୍କ ପ୍ରତି ମଧ ଅନୁରକ୍ତ ଥିଲେ । ସମ୍ଭବତଃ ସେହି କାରଣରୁ ବକ୍ସିଙ୍କ ସହିତ ତାଙ୍କର ଉତ୍ତମ ବୁଝାମଣା ନଥିଲା ତେଣୁ ବକ୍ସିଙ୍କ ନେତୃତ୍ୱରେ ପାଇକ ବିଦ୍ରୋହରେ ଖୋର୍ଦ୍ଧା ରାଜ୍ୟର ଅନେକ ପ୍ରଭାବଶାଳୀ ଦଳବେହେରାମାନେ ଯୋଗ ଦେଇଥିଲେ ହେଁ ତାପଙ୍ଗ ଦଳବେହେରା ଯୋଗ ଦେଇଥିବାର କୌଣସି ପ୍ରମାଣ ମିଳେନାହିଁ । 'ଫିରିଙ୍ଗି କଳି ଭାରତ'ରେ ୧୮୦୪ର ଖୋର୍ଦ୍ଧାଗଡ଼ ଯୁଦ୍ଧ ଏବଂ ୧୮୨୭ର ତାପଙ୍ଗଗଡ଼ଯୁଦ୍ଧ ସଂପର୍କରେ ବିସ୍ତୃତ ବର୍ଣ୍ଣନା କରାଯାଇଥିବାବେଳେ ୧୮୧୭ର ପାଇକ ବିଦ୍ରୋହ ସମ୍ପର୍କରେ ମାତ୍ର ଗୋଟିଏ ଧାଡ଼ି ବ୍ୟତୀତ ବିଶେଷ କିଛି ଉଲ୍ଲେଖ ନାହିଁ । ତାପଙ୍ଗ ଦଳବେହେରାଙ୍କ ବୀରତ୍ୱ ସଂପର୍କରେ କବି ମଧୁସୂଦନ ବିପ୍ର ଲେଖିଛନ୍ତି ଯେ ୧୮୦୪ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଉତ୍ତର, ପୂର୍ବ ଓ ପଶ୍ଚିମ– ତିନି ଦିଗରୁ ଖୋର୍ଦ୍ଧା ଆକ୍ରମଣ କରିଥିଲେ ହେଁ ଖୋର୍ଦ୍ଧାଗଡ଼ର ଦକ୍ଷିଣଦ୍ୱାର ସ୍ୱରୂପ ତାପଙ୍ଗଗଡ଼ର ଦଳବେହେରା ଅତି ପରାକ୍ରମଶାଳୀ ଥିବା ଜାଣି ଏ ଦିଗକୁ ଆସିବାକୁ ସାହସ କରିନଥିଲେ । ତେଣୁ ତାପଙ୍ଗ ଇଲାକାରୁ କର ଆଦାୟ କରୁନଥିଲେ । କିନ୍ତୁ ଇଂରେଜ ବାହିନୀ ଉତ୍ତର ଦିଗରୁ କଟକ ଆଡୁ ଆସିଥିବାରୁ ଏବଂ ଖୋର୍ଦ୍ଧାଗଡ଼କୁ ଲାଗି ଦକ୍ଷିଣରେ ବରୁଣେଇ ପାହାଡ଼ ପ୍ରାଚୀର ପରି ଛିଡ଼ା ହୋଇଥିବାରୁ ଗଡ଼ର ଦକ୍ଷିଣ ପାର୍ଶ୍ୱରେ ପାହାଡ଼ ତଳ ଜଙ୍ଗଲ ମଧ୍ୟରେ ଖୋର୍ଦ୍ଧା ସୈନ୍ୟମାନଙ୍କ ସମାବେଶ ଥିବା ଜାଣି ଇଂରେଜ ବାହିନୀ ଗଡ଼ର ଦକ୍ଷିଣ ଦିଗରୁ ଆକ୍ରମଣ କରିବା ସମ୍ଭବପର ନଥିଲା । ସେ ଯାହାହେଉ ପାଇକ ବିଦ୍ରୋହ ପରେ ଦୀର୍ଘ ୧୦ବର୍ଷ ପର୍ଯ୍ୟନ୍ତ କୌଣସି କାରଣରୁ ଖୋର୍ଦ୍ଧାର ଇଂରେଜ ଶାସକ ତାପଙ୍ଗ ଇଲାକାରୁ କର ଆଦାୟ କରିନଥିଲେ କି ଆଦାୟ କରିବା ପାଇଁ ସେ ୧୦ ବର୍ଷ ମଧ୍ୟରେ ଉଦ୍ୟମ କରି ନଥିଲେ । କିନ୍ତୁ ୧୮୨୭ ଖ୍ରୀଷ୍ଟାବ୍ଦରେ ବକ୍ସି ଜଗବନ୍ଧୁ ଇଂରେଜ ସରକାରଙ୍କ ସନ୍ଧି ସର୍ତ୍ତରେ ରାଜି ହୋଇ ଆତ୍ମପ୍ରକାଶ କଲାପରେ ହିଁ ଖୋର୍ଦ୍ଧାର ଫିରିଙ୍ଗି ଶାସକ ତାପଙ୍ଗଗଡ଼ରୁ କର ଆଦାୟ କରିବା ପାଇଁ ୧୨୩୪ ସାଲ (ଖ୍ରୀ.୧୮୨୭) ବୃଷମାସ ୨ ଦିନ ୫୦ ଜଣ ସୈନ୍ୟଙ୍କ ସହିତ ଜଣେ ମୁନ୍‌ସିଙ୍କୁ ପଠାଇଥିଲେ । ସେମାନେ ପ୍ରଥମେ ତାପଙ୍ଗଗଡ଼ର ଚିନ୍ତାମଣି ରଣସିଂହଙ୍କ ଦ୍ୱାର ସମ୍ମୁଖରେ ପହଞ୍ଚି କର ଦେବାପାଇଁ ଡାକ ଛାଡ଼ିଲେ । ଚିନ୍ତାମଣିଙ୍କ ଅନୁପସ୍ଥିତିରେ ତାଙ୍କ ସ୍ତ୍ରୀ ହୀରାମଣି କର ଦେବାକୁ ମନା କରିବାରୁ ସୈନ୍ୟମାନେ ତାଙ୍କୁ ଧମକାଇଲେ । ତେଣୁ ବୀରାଙ୍ଗନା ହୀରାମଣି ଘର ଭିତରକୁ ଦୌଡ଼ିଯାଇ ଏକ ଶାଣିତ ତରବାରୀ ଧରିଆସି ତାଙ୍କ ଦୁଆର ଓଗାଳି ଛିଡ଼ା ହୋଇ ଡାକଦେଲେ– କିଏ ଆସୁଛ ଆସ । କ୍ରମେ କ୍ରମେ ଚହଳଚହଳ ଶୁଣି ହେଉଥିବା ଦଳବେହେରା ପ୍ରମୁଖ ଗଡ଼ର

ଆଉ କେତେ ଲୋକ ଆସି ପହଞ୍ଚିଯିବାରୁ ସଂଘର୍ଷର ସୂତ୍ରପାତ ହେଲା ଏବଂ ସଂଘର୍ଷରେ ୨ଜଣ ସରକାରୀ ସୈନ୍ୟ ଗୁଳିବିଦ୍ଧ ହୋଇ ପ୍ରାଣ ହରାଇବାରୁ ଅନ୍ୟମାନେ ପଳାଇଯାଇ ଖୋର୍ଦ୍ଧାରେ ଗୋରା ସାହେବଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇଲେ । ଖୋର୍ଦ୍ଧାରୁ ଏ ଖବର ସ୍ୱତନ୍ତ୍ର ବାର୍ତ୍ତାବହ ମାଧ୍ୟମରେ କଟକ କମିଶନରଙ୍କୁ ଜଣାଇ ଦିଆଗଲା । କଟକରୁ କର୍ଣ୍ଣେଲ ହାରକୋର୍ଟ ଅଳ୍ପ କିଛି ସୈନ୍ୟ ସାଙ୍ଗରେ ଧରି ଆସି ୧୨୩୪ ସାଲ ବୃଷ ୨୦ ଦିନ ତାପଙ୍ଗ ଦଳବେହେରାଙ୍କ ପାଖକୁ ଏକ ଧମକପୂର୍ଣ୍ଣ ନିର୍ଦ୍ଦେଶନାମାରେ ଲେଖିଲେ ଯେ ୨ଜଣ ସୈନ୍ୟଙ୍କ ହତ୍ୟାପାଇଁ ତୁରନ୍ତ କ୍ଷମାପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ଦଳବେହେରା ଇଂରେଜ ସରକାରଙ୍କ କର ପୈଠ କରନ୍ତୁ । ୧୫ ଦିନ ମଧ୍ୟରେ ଏ ଆଦେଶ ପାଳନ ନକଲେ ମିଥୁନ ୫ ଦିନ ତାପଙ୍ଗଗଡ଼ ଉପରେ ଆକ୍ରମଣ କରାଯିବ । ଦଳବେହେରା ଏ ନିର୍ଦ୍ଦେଶନାମାକୁ ଟିକ୍‌ଟିକ୍ କରି ଚିରି ଫିଙ୍ଗି ଦେଲେ । ହାରକୋର୍ଟ ଏ ଖବର ପାଇ କଟକରୁ ଅଧିକ ସୈନ୍ୟ ମଗାଇ ମିଥୁନ ପାଞ୍ଚ ଦିନ ତାପଙ୍ଗଗଡ଼ ଆକ୍ରମଣ ପାଇଁ ପ୍ରସ୍ତୁତ ହେଲେ । ଦଳବେହେରା ମଧ୍ୟ ଇଂରେଜଙ୍କ ଆକ୍ରମଣକୁ ପ୍ରତିହତ କରିବା ପାଇଁ ନିଜ ଇଲାକାର ସମସ୍ତ ଦଳେଇ, ଦଳବେହେରା ଓ ମୁଖ୍ୟବ୍ୟକ୍ତି ମାନଙ୍କର ଏକ ବୈଠକ ଡକାଇ ଯୁଦ୍ଧପାଇଁ ଖସଡ଼ା ପ୍ରସ୍ତୁତ କଲେ ।

ଯୁଦ୍ଧ ଲାଗିବାର ଦୁଇ ଦିନ ଆଗରୁ ଅର୍ଥାତ୍ ମିଥୁନ ୩ ଦିନ ମଲିପଡ଼ାଗଡ଼, ନାରାୟଣଗଡ଼, ରାମଚଣ୍ଡିଗଡ଼, ଷଦେଇଗଡ଼, ଛତ୍ରମାଗଡ଼, ରଥିପୁରଗଡ଼ ଓ ଜାଗପଡ଼ାଗଡ଼ରୁ ଦଳେଇ ଓ ଦଳବେହେରାମାନେ ନିଜ ନିଜ ପାଇକ ସୈନ୍ୟମାନଙ୍କ ସହ ଆସି ତାପଙ୍ଗରେ ପହଞ୍ଚିଲେ । ତାପଙ୍ଗ ବାରପଡ଼ାର ପାଇକ ସୈନ୍ୟମାନେ ମଧ୍ୟ ଡକରା ହୋଇଆସିଲେ । ଦଧିମାଛ ଗାଡ଼ିଆ, ବଙ୍କୀଦା, କହୁଲ ଓ ଛିଙ୍କିଝାରିର କରଣ ସାମନ୍ତମାନେ ଏବଂ ଅଣ୍ଡାର କୋଠକରଣ ମଧ୍ୟ ନିମନ୍ତ୍ରିତ ହୋଇଆସିଲେ । ଅଣ୍ଡା କୋଠକରଣ ସୈନ୍ୟମାନଙ୍କ 'ଚର୍ଚ୍ଚା' ଦାୟିତ୍ୱରେ, କହୁଲ କରଣ ଭଣ୍ଡାର ଦାୟିତ୍ୱରେ, ଛିଙ୍କିଝାରି କରଣ ଧନୁର୍ଜୟ ଶ୍ରୀଚନ୍ଦନ ସୈନ୍ୟ ସଜ୍ଜା ଦାୟିତ୍ୱରେ ଏବଂ ସର୍ବୋପରି ଦଧିମାଛ ଗାଡ଼ିଆର ମୌସମ କରଣ (ମଧୁସୂଦନ) ଯୁଦ୍ଧ ପରିଚାଳନାର ମୁଖ୍ୟ ବ୍ୟବସ୍ଥାପକ ଭାବେ ନିଯୁକ୍ତ ହେଲେ ।

ମିଥୁନ ୫ ଦିନ ଶୁକ୍ରବାର ସକାଳୁ ସୈନ୍ୟସାମନ୍ତମାନେ ବୀରବେଶରେ ସଜ୍ଜିତ ହୋଇ ଗଡ଼ ଅଧିଷ୍ଠାତ୍ରୀ ହରେଶ୍ୱରୀ ଠାକୁରାଣୀଙ୍କୁ ମୁଣ୍ଡିଆ ମାରି ଗୁପ୍ତ ଅସ୍ତ୍ରାଗାର ପାଖକୁ ଗଲେ ଏବଂ ନିଜ ନିଜ ଆବଶ୍ୟକତା ଅନୁଯାୟୀ ଅସ୍ତ୍ରଶସ୍ତ୍ର ସଂଗ୍ରହ କଲେ । ୩ଗୋଟି ହାତୀଙ୍କ ପିଠିରେ ୬ଗୋଟି ତୋପ ଲଦା ହେଲା । ଦୁଇଶହ ବନ୍ଧୁକଧାରୀ ସୈନ୍ୟଙ୍କ ସହ ସେହିଦିନର ସେନାପତି ଧନୁର୍ଜୟ ଶ୍ରୀଚନ୍ଦନଙ୍କ ସମେତ ଦଳବେହେରା ମାଧବଚନ୍ଦ୍ର ଓ ଅନ୍ୟ ବୀରମାନେ ଘୋଡ଼ାରେ ବସିଯାଇ ତାପଙ୍ଗର ପୂର୍ବ ଦିଗରେ ଥିବା ''କାଣ୍ଡଗୋଡ଼ାପଦା' ପଡ଼ିଆରେ ପହଞ୍ଚିଲେ । ଫିରିଙ୍ଗି ସୈନ୍ୟମାନେ ମଧ୍ୟ ପଡ଼ିଆର ଅପରପାର୍ଶ୍ୱରେ ଆସି ଜମା ହୋଇଥିଲେ । ସେଦିନ ବେଳ ୭ ଘଡ଼ିରେ ଯୁଦ୍ଧ ଆରମ୍ଭ ହୋଇ ୧୪ ଘଡ଼ି ପର୍ଯ୍ୟନ୍ତ ଚାଲିଲା । ଦ୍ୱିତୀୟ ଦିନ ଯୁଦ୍ଧ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଚାଲିଲା । ଏହିପରିଭାବେ ଶୁକ୍ରବାର ଠାରୁ ବୁଧବାର ପର୍ଯ୍ୟନ୍ତ ୬ଦିନ କାଳ ଘମାଘୋଟ ଯୁଦ୍ଧ ଲାଗିଲା ଏବଂ ଉଭୟ ପକ୍ଷରୁ ବହୁ ସୈନ୍ୟ ମୃତାହତ ହେଲେ । ତୃତୀୟ ଦିନ ଯୁଦ୍ଧରେ ସେନାପତି ଧନୁର୍ଜୟ ଶ୍ରୀଚନ୍ଦନ ନିହତ ହେବାରୁ ଦଳବେହେରା ମାଧବଚନ୍ଦ୍ର ନିଜେ ସେନାପତିଭାବେ ଶେଷ ପର୍ଯ୍ୟନ୍ତ ଯୁଦ୍ଧ ଚଳାଇଥିଲେ । କିନ୍ତୁ ୬ଷ୍ଠ ଦିନ ରାତିରେ ଦଳବେହେରାଙ୍କ ମୁଖ୍ୟ ବ୍ୟବସ୍ଥାପକ ମୌସମ କରଣ ବିଶ୍ୱାସଘାତକତା କରି ଖୋର୍ଦ୍ଧାକୁ ଯାଇ ଗୋରା ଶାସକଙ୍କୁ ତାପଙ୍ଗଗଡ଼ର ଗୁପ୍ତ ଅସ୍ତ୍ରାଗାର ଏବଂ ଯୁଦ୍ଧରେ ହରେଶ୍ୱରୀ ଠାକୁରାଣୀଙ୍କର ପ୍ରତ୍ୟକ୍ଷ ସହାୟତା ସମ୍ପର୍କରେ ଭେଦ କହିଦେବାରୁ ଇଂରେଜମାନେ ୭ମ ଦିନ ଯୁଦ୍ଧ ପୂର୍ବରୁ ତାଙ୍କ ଉପରେ ଗୋରକ୍ତ ବୋଳିଦେଲେ । ତେଣୁ ସେଦିନ ଯୁଦ୍ଧରେ ହରେଶ୍ୱରୀ ଠାକୁରାଣୀ ସହାୟତା ନକରି ଆଡ଼ ହୋଇଗଲେ । ତେଣେ ପୂର୍ବପାଖେ ଭୀଷଣ ଯୁଦ୍ଧ ଚାଲିଥିବାବେଳେ ଗଡ଼ର ପଶ୍ଚିମ ପାଖେ ଥିବା ଅସ୍ତ୍ରାଗାରକୁ ୩୦୦ ବନ୍ଧୁକଧାରୀ ଫିରିଙ୍ଗି ସୈନ୍ୟ ଅଚାନକ ଘେରାଉ କରି ତହିଁରେ ନିଆଁ ଲଗାଇଦେଲେ । ତା'ଫଳରେ ଶକ୍ତିଶାଳୀ ତାପଙ୍ଗଗଡ଼ର ପତନ ଘଟିଲା ଏବଂ ଦଳବେହେରା ମାଧବଚନ୍ଦ୍ର ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କଲେ । ବହୁ ଉଦ୍ୟମସତ୍ତ୍ୱେ ଦଳବେହେରାଙ୍କୁ ଇଂରେଜମାନେ ଧରିପାରିଲେ ନାହିଁ ।

ଶେଷରେ ଇଂରେଜ ସରକାରଙ୍କ ତରଫରୁ ଘୋଷଣା କରାଗଲା ଯେ ଯେଉଁ ବ୍ୟକ୍ତି ଦଳବେହେରା ମାଧବଚନ୍ଦ୍ର ରାଉତରାୟଙ୍କୁ ଧରାଇଦେବେ, ତାଙ୍କୁ ଏକହଜାର ଟଙ୍କା ପୁରସ୍କାର ଦିଆଯିବ । ଦଳବେହେରା ଛଦ୍ମବେଶ ଧରି ଜଙ୍ଗଲ ମଧ୍ୟରେ ବୁଲୁଥିଲେ । ଦିନେ ଜଣେ ଅଚିହ୍ନା ବ୍ୟକ୍ତି ଜଙ୍ଗଲରେ ବାଟବଣା ହୋଇ ଦୈବାତ୍ ଛଦ୍ମବେଶୀ ଦଳବେହେରାଙ୍କୁ ଦେଖି ତାପଙ୍ଗଗଡ଼କୁ ବାଟ କିଏ ବୋଲି ପଚାରିବାରୁ ଦଳବେହେରା ତାର ପରିଚୟ ଓ ତାପଙ୍ଗଗଡ଼କୁ ଯିବାର ଉଦ୍ଦେଶ୍ୟ ଜାଣିବାକୁ ଚାହିଁଲେ । ସେ କହିଲା ଯେ ଚିଲିକା କୂଳବର୍ତ୍ତୀ ସୋରଣ ଗ୍ରାମର ଜଣେ ଗରିବ କେଉଟ । ଝଡ଼ ତୋଫାନ୍‌ରେ ତାର ଘରଖଣ୍ଡିକ ଭାଙ୍ଗି ଯାଇଛି ଏବଂ ଜାଲ ସହିତ ନାଆ ଖଣ୍ଡିକ ମଧ୍ୟ ଚିଲିକାରେ କେଉଁଆଡ଼େ ଭାସିଯାଇଛି । ଏପରି ବିପଦରେ ତାକୁ ତାପଙ୍ଗଗଡ଼ର ଦୟାଳୁ ଦଳବେହେରା ସାହାଯ୍ୟ କରି ପାରିବେ ବୋଲି ଲୋକଙ୍କ ମୁହଁରୁ ଶୁଣି ସେ ତାପଙ୍ଗଗଡ଼ ଦଳବେହେରାଙ୍କ ପାଖକୁ ଯାଉଛି । ଦଳବେହେରା ନିଜର ପରିଚୟ ନଦେଇ ଲୋକଟିକୁ ସାହାଯ୍ୟ କରାଇଦେବେ ବୋଲି କହି ସାଙ୍ଗରେ ନେଇ ଯାଇ ଖୋର୍ଦ୍ଧା କଚେରୀରେ ଗୋରା ହାକିମଙ୍କ ପାଖେ ପହଞ୍ଚିଲେ ଏବଂ ହାକିମଙ୍କୁ କହିଲେ, ''ତାପଙ୍ଗ ଦଳବେହେରାଙ୍କୁ ଧରାଇଦେଲେ ଫିରିଙ୍ଗି ସରକାର ଯେଉଁ ଏକହଜାର ଟଙ୍କା ପୁରସ୍କାର ଦେବେବୋଲି ଘୋଷଣା କରିଥିଲେ, ସେ ପୁରସ୍କାର ଟଙ୍କା ଏଇ ଲୋକଟିକୁ ଦିଆଯାଉ । ମୁଁ ତାପଙ୍ଗଗଡ଼ର ଦଳବେହେରା ମାଧବଚନ୍ଦ୍ର ରାଉତରା ଏବଂ ଏଇ ଲୋକଟି ମୋତେ ଆପଣଙ୍କ ପାଖକୁ ଧରିଆଣିଛି । ହାକିମ ସମସ୍ତ ବୃତ୍ତାନ୍ତ ଅବଗତ ହୋଇ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ ଏବଂ ଦଳବେହେରାଙ୍କୁ ତାଙ୍କର ମହାନତା ଓ ଉଦାରତା ପାଇଁ ସମ୍ମାନ ଜଣାଇ ଛାଡ଼ିଦେବା ସଙ୍ଗେ ସଙ୍ଗେ ଦୁଃସ୍ଥ କେଉଟଟିକୁ ଆର୍ଥିକ ସହାୟତା କଲେ । ତାପଙ୍ଗଗଡ଼ର ଦଳବେହେରାଙ୍କ ସେ ସ୍ୱାଭିମାନ, ସେ ବୀରତ୍ୱ, ସେ ବ୍ୟକ୍ତିତ୍ୱ ଓ ସେ ଉଦାରତାର ପଟାନ୍ତର ନାହିଁ ।

*ଜଣାଣ, ଜିଲ୍ଲା-ପୁରୀ*

# ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଅବଦାନ

● ଶ୍ରୀ ଦାମୋଦର ସାହୁ

ଓଡ଼ିଶା ଇତିହାସ ଅନୁଧ୍ୟାନରୁ ଜଣାପଡ଼େ ୧୫୬୮ ଖ୍ରୀଷ୍ଟାବ୍ଦରେ ଘଟିଥିବା ଗୋହିରାଟିକିରା ଯୁଦ୍ଧ ତତ୍‌କାଳୀନ ଓଡ଼ିଶାର ଗଜପତି ମୁକୁନ୍ଦଦେବଙ୍କ ପାଇଁ ଶେଷ ଯୁଦ୍ଧ ଥିଲା ଓ ଏହି ଯୁଦ୍ଧର ଅବସାନ ପରେ ଓଡ଼ିଶାର ରାଜନୈତିକ ଇତିହାସରେ ମୁସଲମାନ ଶାସନର ଅଭ୍ୟାଗମ ଘଟିଥିଲା । ମୁସଲମାନଙ୍କଠାରୁ ମୋଗଲ ସମ୍ରାଟ ଆକବରଙ୍କ ମନ୍ତ୍ରୀ ତୋଡ଼ରମଲ୍ଲ ଓଡ଼ିଶା ଦଖଲ କରିଥିଲେ । ୧୭୫୧ ଖ୍ରୀଷ୍ଟାବ୍ଦରେ ଘଟିଥିବା ତୃତୀୟ ପାନିପଥ ଯୁଦ୍ଧ ମୋଗଲ ଯୁଗର ଅବସାନ ଘଟାଇବା ପରେ ପରେ ଓଡ଼ିଶାର ଭାଗ୍ୟରବି ମରହଟ୍ଟାମାନଙ୍କ ହାତକୁ ଚାଲିଯାଇଥିଲା । ସେତେବେଳକୁ ଭାରତବର୍ଷରେ ଇଂରେଜମାନେ ବାଣିଜ୍ୟ କରିବା ପାଇଁ ବିଭିନ୍ନ ପ୍ରାଦେଶିକ ରାଜାମାନଙ୍କୁ ଅନୁରୋଧ କରୁଥାନ୍ତି । ୧୭୬୫ ଖ୍ରୀଷ୍ଟାବ୍ଦରେ ରବର୍ଟ କ୍ଲାଇବ ମୋଗଲମାନଙ୍କଠାରୁ ବଙ୍ଗ-ବିହାର ଓଡ଼ିଶାର ଦିୱାନି ଗ୍ରହଣ କରିଥିଲେ । ଅବଶ୍ୟ ସେତେବେଳେ କେବଳ ଓଡ଼ିଶାର ମେଦିନାପୁର ଜିଲ୍ଲାର ରାଜସ୍ୱ ବ୍ରିଟିଶମାନଙ୍କ ରାଜକୋଷକୁ ଯାଉଥିଲା ଓ ଅବଶିଷ୍ଟ ଓଡ଼ିଶା ମରହଟ୍ଟାମାନଙ୍କ ଅଧୀନରେ ଥିଲା । ତାପରେ ଲର୍ଡ଼ ୱେଲସେଲିଙ୍କ ସାମନ୍ତ ସନ୍ଧିର ଶିକାର ହୋଇ ମରହଟ୍ଟାମାନେ ୧୮୦୩ ମସିହା ଡ଼ିସେମ୍ବର ୧୭ ତାରିଖରେ ଦେଓଗାଁଠାରେ ସନ୍ଧି ସ୍ଥାପନ କରି ଓଡ଼ିଶାର ଭାଗ୍ୟ ଡ଼ୋରିକୁ ବ୍ରିଟିଶମାନଙ୍କ ହାତକୁ ପ୍ରତ୍ୟର୍ପଣ କରିଥିଲେ । ଇଂରେଜମାନେ ଓଡ଼ିଶା ଦଖଲ କରିବା ଫଳରେ କଟକ, ପୁରୀ, ବାଲେଶ୍ୱରକୁ ନେଇ ଗଠିତ ମୋଗଲବନ୍ଦୀ ଅଞ୍ଚଳ ବ୍ରିଟିଶ ଶାସନାଧୀନ ହେଲା । ଅବଶ୍ୟ ୧୮୦୩ ମସିହା ପୂର୍ବରୁ ଦକ୍ଷିଣ ଓଡ଼ିଶା ୧୭୬୬ ମସିହାରେ ଇଂରେଜ ଶାସନାଧୀନ ହୋଇ ସାରିଥିଲା । ତତ୍‌କାଳୀନ ମୋଗଲ ସମ୍ରାଟଙ୍କ ଏକ ସନନ୍ଦ ଅନୁସାରେ ଇଂରେଜମାନେ ଏହି ଅଞ୍ଚଳର ରାଜାମାନଙ୍କଠାରୁ ଏକ ନିର୍ଦ୍ଧାରିତ ସଲାମୀ ଆଦାୟ କରିବାର ଉଦ୍ୟମ କରିଥିଲେ । ଇଂରେଜମାନେ ତତ୍‌କାଳୀନ ପାରଳାଖେମୁଣ୍ଡି ମହାରାଜାଙ୍କ ଉପରେ ୮୨ ହଜାର ୨ ଶହ ୩ ଟଙ୍କା ଓ ତା ଉପରେ ପିଟୁଣୀ ବୋଝିମାନା ମିଶାଇ ୧ ଲକ୍ଷ ୪୪ ହଜାର ଟଙ୍କା ଦାବୀ କରିଥିଲେ । ଗଜପତି ମହାରାଜା ତାହା ଦେବାକୁ ଅରାଜି ହେବାରୁ ପାରଳା ମହାରାଜା ଗଜପତି ଦେଓ, ପୁତ୍ର ପୁରୁଷୋତ୍ତମ ଦେବ ଓ ଭ୍ରାତା ଦୁର୍ଗାରାଜଙ୍କୁ ବନ୍ଦୀ କରି ପରେ ତାଙ୍କୁ ୧୭୯୯ ମସିହା ଫେବୃୟାରୀ ମାସରେ ମସଲିପଟ୍ଟମ କାରାଗାରକୁ ସ୍ଥାନାନ୍ତରିତ କରାଯାଇଥିଲା । ତାପରେ ପାରଳା ମହାରାଣୀ ବ୍ରିଟିଶ ରାଜତ୍ୱର ଏହି ଅନ୍ୟାୟ ଆଦେଶ ପାଇଁ ଜୀରାଙ୍ଗ, ଗୁମା, ସୋରାଙ୍ଗ, ରାୟଗଡ଼ ଓ ନଳଣପୁର ଇତ୍ୟାଦି ଅଞ୍ଚଳର ଶବର ପ୍ରଜାମାନଙ୍କୁ ଏକତ୍ର କରି ବ୍ରିଟିଶ ରାଜଶକ୍ତି ବିରୁଦ୍ଧରେ ଆନ୍ଦୋଳନ କରି ଜୟଯୁକ୍ତ ହୋଇଥିଲେ । ଫଳରେ ବ୍ରିଟିଶ ରାଜଶକ୍ତି ମହାରାଜା ଓ ତାଙ୍କ ପରିବାରବର୍ଗଙ୍କୁ କାରାଗାରରୁ ମୁକ୍ତ କରିବାକୁ ବାଧ ହୋଇଥିଲେ । ଭାରତବର୍ଷର ସବୁ ପ୍ରଦେଶ ଦଖଲ ହୋଇ ସାରିଲା ପରେ ଓଡ଼ିଶା ଦଖଲ ହୋଇଥିଲା । ଇଂରେଜମାନଙ୍କୁ ଚେତାବନୀ ଦେବାରେ ଓଡ଼ିଶା ହେଉଛି ପ୍ରଥମ ପ୍ରଦେଶ । ଏହା ନହୋଇଥିଲେ ଓଡ଼ିଶା ସର୍ବଶେଷରେ ବ୍ରିଟିଶମାନଙ୍କ ଦ୍ୱାରା ଅଧିକୃତ ହୋଇନଥାନ୍ତା ।

୧୮୧୭ ମସିହାରେ ଘଟିଯାଇଥିବା ପାଇକମେଳି ପୂର୍ବରୁ ବ୍ରିଟିଶ ରାଜଶକ୍ତିକୁ ଠିକଣା ଜବାବ ଦେବା ପାଇଁ ଉତ୍କଳୀୟ ଅଧିବାସୀମାନେ କ୍ଷେତ୍ର ପ୍ରସ୍ତୁତ କରି ସାରିଥିଲେ । ତାପରେ ଆରମ୍ଭ ହେଲା ୧୮୧୭ ମସିହାର ଯୁଗାନ୍ତକାରୀ ପାଇକମେଳି, ଯାହା ଇତିହାସରେ ଏକ ରୋମାଞ୍ଚକାରୀ ଅଧ୍ୟାୟ । ଇଂରେଜମାନେ ଓଡ଼ିଶା ଦଖଲ କରି ସାରିବା ପରେ ପାଇକମାନଙ୍କୁ ଦିଆଯାଇଥିବା ଜାଗିର ଜମିଜମା କାଢ଼ି ଆଣିଥିଲେ । ଫଳରେ ବ୍ରିଟିଶ ରାଜଶକ୍ତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ପାଇକମାନେ ବାଧ ହୋଇଥିଲେ । ଏହି ସମୟରେ ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ, ଯେକି ବକ୍‌ସି ଜଗବନ୍ଧୁ ନାମରେ ପରିଚିତ ଓ ଯାହାଙ୍କ ପୂର୍ବପୁରୁଷ ଖୋର୍ଦ୍ଧା ରାଜାଙ୍କ ସେନାପତିଭାବେ କାର୍ଯ୍ୟ କରି ରୋଡ଼ଙ୍ଗ ଅଞ୍ଚଳକୁ ଜାଗିରଭାବେ ଭୋଗ କରୁଥିଲେ, ବ୍ରିଟିଶ ଅଧିକାର କରିବାପରେ ତାଙ୍କୁ ସେଥିରୁ ବଞ୍ଚିତ କରାଯାଇଥିଲା । ତେଣୁ ସେ ବ୍ରିଟିଶମାନଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ବାଟ ଖୋଜି ବୁଲୁଥିଲେ । ପାଇକମାନଙ୍କ ନେତାଭାବେ ବକ୍‌ସି ଜଗବନ୍ଧୁ ବିଦ୍ରୋହ ଚଳାଇଥିଲେ । ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଘୁମୁସର ଅଞ୍ଚଳର କନ୍ଧମାନେ ମଧ ବଦ୍ଧପରିକର ହୋଇଥିଲେ । ଏହି ବିଦ୍ରୋହ ଓଡ଼ିଶାର ଅନ୍ୟାନ୍ୟ ଗଡ଼ଜାତ ଅଞ୍ଚଳକୁ ବ୍ୟାପି ଯାଇଥିଲା । କୁଜଙ୍ଗ ଓ କନିକାଗଡ଼ ରାଜାମାନେ ମଧ ବ୍ରିଟିଶ ବିରୁଦ୍ଧରେ ସଂଗ୍ରାମର ସ୍ୱର ଉତ୍ତୋଳନ କରିଥିଲେ । ଆନ୍ଦୋଳନ ଅସୁରେଶ୍ୱର, ତିରଣ, ହରିହରପୁର ଓ ଗୋପ ପ୍ରଭୃତି ଅଞ୍ଚଳକୁ ଅଳ୍ପ ସମୟ ମଧ୍ୟରେ ବ୍ୟାପିଯାଇଥିଲା । ଅବଶ୍ୟ ପ୍ରବଳ ପ୍ରତାପୀ ବ୍ରିଟିଶ ରାଜଶକ୍ତି ପାଖରେ ଏମାନେ ପରାସ୍ତ ହୋଇଥିଲେ । ମାତ୍ର ଏମାନଙ୍କ ସଂଗ୍ରାମୀ ମନୋବୃତ୍ତିର ପରାଭବ ନାହିଁ । ପରିଶେଷରେ ବକ୍‌ସି ଜଗବନ୍ଧୁଙ୍କୁ ଆତ୍ମସମର୍ପଣ କରିବାକୁ ପଡ଼ିଲା । ୧୮୨୯ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ଘଟିଲା । ପୁରୀର ଗଜପତି ମହାରାଜାଙ୍କୁ ୧୮୧୭ ମସିହା ମଇ ମାସରେ ଜେଲରେ କାଳାତିପାତ କରିବାକୁ ପଡ଼ିଥିଲା ଓ ସେହି ଜେଲ ପରିସର ମଧ୍ୟରେ ସେ ମୃତ୍ୟୁ ବରଣ କରିଥିଲେ । ଅବଶେଷରେ କୁଜଙ୍ଗ ଓ କନିକା ରାଜାଙ୍କୁ ବ୍ରିଟିଶ ରାଜଶକ୍ତି ପାଖରେ ମୁଣ୍ଡ ନୁଆଇଁବାକୁ ପଡ଼ିଥିଲା । ଏହିପରି ଭାବରେ ଓଡ଼ିଆ ଜାତି ଓ ସମଗ୍ର ଭାରତବର୍ଷକୁ ଆଗାମୀ ଦିନ ପାଇଁ ଉତ୍ସାହ ଓ ପ୍ରେରଣା ଦେଇ ଗୋଟିଏ ବିଦ୍ରୋହର ଦୀପଶିଖା ଲିଭିଗଲା ।

୧୮୧୭ ମସିହା ପାଇକମେଳିକୁ ଦମନ କରି ବ୍ରିଟିଶ ରାଜଶକ୍ତି ଶାନ୍ତିରେ ନିଃଶ୍ୱାସ ମାରିପାରିନଥିଲା । ତାପରେ କ୍ରମାଗତ ଭାବରେ

ସ୍ୱାଧୀନତା ସଂଗ୍ରାମୀ ବୀର ଚକରା ବିଶୋୟୀଙ୍କ ଅଧିନାୟକତ୍ୱରେ ବ୍ରିଟିଶ ଶାସକଙ୍କ ବିରୁଦ୍ଧରେ ସ୍ୱାତନ୍ତ୍ର୍ୟବାଦୀ ସଂଗ୍ରାମ ଚଳାଇଥିଲେ । ପିତା ଶ୍ୟାମ ବିଶୋୟୀଙ୍କୁ ଇଂରେଜମାନେ ଏକ ସଂଘର୍ଷରେ ନିର୍ମମଭାବେ ହତ୍ୟା କରିଥିବାରୁ ଚକରା ବିଶୋୟୀ ପ୍ରତିଶୋଧପରାୟଣ ହୋଇ ଇଂରେଜମାନଙ୍କ ବିରୁଦ୍ଧରେ ୧୮୪୬ରୁ ୧୮୫୭ ପର୍ଯ୍ୟନ୍ତ ଦୀର୍ଘ ଦଶବର୍ଷ ଧରି ପ୍ରମୁଖ ସଂଗ୍ରାମ ଚଳାଇଥିଲେ । ସେ ଗରିଲା କୌଶଳରେ ପାରଙ୍ଗମ ଥିବାରୁ ବ୍ରିଟିଶ ରାଜଶକ୍ତିକୁ ବେଶ୍ ହଲାଇ ଦେଇ ପାରିଥିଲେ । ତାଙ୍କର ସଂଗ୍ରାମ କ୍ଷେତ୍ର ମଧ୍ୟରେ ଘୁମୁସର, ବୌଦ୍ଧ, ଅନୁଗୁଳ, ସୋନପୁର, ମଦନପୁର, କାଳାହାଣ୍ଡି, ଜୟପୁର, ଉଦୟପୁର, ତେଲନଦୀ ଉପତ୍ୟକା, କଳାହାଣ୍ଡି, ଜୟପୁର, ବଡ଼ଖେମୁଣ୍ଡି ଓ ସାନଖେମୁଣ୍ଡି ରାଜ୍ୟମାନ ଅନ୍ତର୍ଭୁକ୍ତ ଥିଲା । ଇଂରେଜମାନଙ୍କ ମଧ୍ୟରେ ଘୋର ଆତଙ୍କ ସୃଷ୍ଟି ହୋଇଥିଲା । ଚକରା ବିଶୋୟୀଙ୍କ ଆନ୍ଦୋଳନ ଲର୍ଡ଼ ଡେଲହାଉସିଙ୍କୁ ବିସ୍ମିତ କରି ଦେଇଥିଲା । ଭାରତର ଜଣେ ଅସାଧାରଣ, ଅସାମାନ୍ୟ ବିଦ୍ରୋହୀଭାବେ ସ୍ୱୀକୃତ ହୋଇ ସେ ସମଗ୍ର ଉତ୍କଳ ପାଇଁ ଏକ ଗର୍ବ ହୋଇଥିଲେ । ୧୮୫୭ ମସିହା ବେଳକୁ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା ।

ତାପରେ ଆରମ୍ଭ ହେଲା ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ୧୮୫୭ ମସିହାରେ । ଏଥିରେ ସମ୍ବଲପୁରର ବୀର ସୁରେନ୍ଦ୍ର ସାଏ ଓ ପୁରୀର ଚନ୍ଦନ ହଜୁରୀଙ୍କ ଅବଦାନ ଅତୁଳନୀୟ । ଲର୍ଡ଼ ଡେଲହାଉସିଙ୍କ ରାଜ୍ୟସ୍ୱତ୍ୱଲୋପ ନୀତିର ଶିକାର ହୋଇ ବୀର ସୁରେନ୍ଦ୍ରସାଏ ବ୍ରିଟିଶ ରାଜଶକ୍ତି ବିରୁଦ୍ଧରେ ସଂଗ୍ରାମ ଚଳାଇ ଥିଲେ । ସମ୍ବଲପୁରବାସୀଙ୍କ ବ୍ରିଟିଶ ବିରୋଧୀ ଅଭିଯାନ ବାସ୍ତବିକ ଓଡ଼ିଶା ପାଇଁ ଏକ ଗର୍ବର ବିଷୟ । ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସରେ, ବିଶେଷ କରି ଯୁଗାନ୍ତକାରୀ ସିପାହୀ ବିଦ୍ରୋହରେ ସୁରେନ୍ଦ୍ର ସାଏ ଓଡ଼ିଶାକୁ ବିଚ୍ଛୁଟ କରି ଏହାର ସ୍ଥାନ ନିରୂପଣ କରିବାରେ ସମର୍ଥ ହୋଇଛନ୍ତି ।

ଓଡ଼ିଶା ମାଟିରେ ଏକ କରାଳ ଦୃଶ୍ୟ ଦେଖାଗଲା ୧୮୬୬ ମସିହାରେ, ଯାହା ନ'ଅଙ୍କ ଦୁର୍ଭିକ୍ଷ ନାମରେ ପରିଚିତ । ଏହି ଦୁର୍ଭିକ୍ଷ ଓଡ଼ିଶା ପାଇଁ ଯେତିକି ଦୁର୍ଦ୍ଦିନ, ସେତିକି ସୁଦିନ କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ନ'ଅଙ୍କ ଦୁର୍ଭିକ୍ଷରେ ବହୁଲୋକ ଅନାହାରରେ ମୃତ୍ୟୁ ବରଣ କରିଥିଲେ ଏହା ସତ୍ୟ, ମାତ୍ର ସେତେବେଳର ସେକ୍ରେଟାରୀ ଅଫ୍-ଷ୍ଟେଟ-ଫର ଇଣ୍ଡିଆ ସାର ଷ୍ଟାଫୋର୍ଡ଼ ନର୍ଥ ଏହି କରାଳ ଦୁର୍ଭିକ୍ଷ ସମ୍ପର୍କରେ ୧୮୬୮ ମସିହାରେ ବ୍ରିଟିଶ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ଶାସନର ଦୋଷ ତ୍ରୁଟି ଏଥିନିମନ୍ତେ ମୁଖ୍ୟତଃ ଦାୟୀ ବୋଲି ଜଣାଇଥିଲେ ଓ ଏହାର ପ୍ରତିକାର ପାଇଁ ଓଡ଼ିଶାକୁ ବଙ୍ଗଳାରୁ ଅଲଗା କରି ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ପ୍ରାଦେଶିକ ଶାସନାଧୀନ କରିବା ପାଇଁ ସୁପାରିଶ କରିଥିଲେ । ଓଡ଼ିଶାକୁ ଏକ ପ୍ରଦେଶଭାବେ ଗଠନ କରିବା ପାଇଁ ଏହା ଥିଲା ଏକ ବଳିଷ୍ଠ ପଦକ୍ଷେପ । କିନ୍ତୁ ଅଣଓଡ଼ିଆ ସୁବିଧାବାଦୀ ଗୋଷ୍ଠୀମାନେ ନର୍ଥକୋଟ୍‌ଙ୍କ ସୁପାରିଶ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଓଡ଼ିଆଭାଷା ବଙ୍ଗଳାଭାଷାଠାରୁ ଆଦୌ ଭିନ୍ନ ନୁହେଁ ବୋଲି ଅପପ୍ରଚାର ଚଳାଇଥିଲେ । ବଙ୍ଗଳା ସରକାରଙ୍କ ଶିକ୍ଷା ଦପ୍ତର ଓଡ଼ିଶା ଡ଼ିଭିଜନର ସବୁ ସ୍କୁଲରୁ ଓଡ଼ିଆ ଭାଷା ଶିକ୍ଷା ଉଠାଇ ଦେବାକୁ ଉଦ୍ୟମ କଲେ । ସେମାନଙ୍କ ଚେଷ୍ଟା ବିଫଳ ହୋଇ ଥିଲା, ଯେତେବେଳେ ବିଖ୍ୟାତ ଭାଷାତତ୍ତ୍ୱବିତ୍ ଗ୍ରିଅରସନ ଓ ବିମସ୍ ସାହେବ ପ୍ରମୁଖ ପ୍ରକାଶ କରିଥିଲେ ଯେ ଅନ୍ୟାନ୍ୟ ଭାରତୀୟ ଭାଷାଠାରୁ ଓଡ଼ିଆ ଭାଷା ଅଧିକ ପୁରାତନ । ୧୮୬୬ ମସିହାରେ ପ୍ରତିଷ୍ଠିତ ଉତ୍କଳ ଦୀପିକା ପତ୍ରିକାରେ ଗୌରୀଶଙ୍କର ରାୟ ଭାଷା ଆନ୍ଦୋଳନ ସୁଚାରୁ ଭାବେ ଚଳାଇ ଥିଲେ ଏବଂ ରାଧାନାଥ, ଫକୀରମୋହନ ଓ ମଧୁସୂଦନଙ୍କ ଭଳି ସାହିତ୍ୟିକମାନଙ୍କ ସାହିତ୍ୟ ସୃଷ୍ଟି ଏଥିନିମନ୍ତେ ବହୁ ସାହାଯ୍ୟ କରିଥିଲା ।

ଡ଼ିସେମ୍ବର ୨୮ ତାରିଖ ୧୮୮୫ ଖ୍ରୀଷ୍ଟାବ୍ଦରେ ଜଣେ ବିଦେଶୀ ଆଲାନ ଭିକ୍ଟୋରିଆନ ହ୍ୟୁମଙ୍କ ଉଦ୍ୟମରେ ବମ୍ବେଠାରେ ଜନ୍ମ ନେଲା ଭାରତୀୟ ଜାତୀୟ କଂଗ୍ରେସ । ଏହି ଖବର ଓଡ଼ିଶାବାସୀଙ୍କ ମଧ୍ୟରେ ଅସୀମ ଉଦ୍ଦୀପନା ସୃଷ୍ଟି କରିଥିଲା । ୧୮୮୬ ମସିହା ମାର୍ଚ୍ଚ ୩ ତାରିଖ ଦିନ କଟକସ୍ଥିତ ପ୍ରିଣ୍ଟିଂ କମ୍ପାନୀର ଗୃହରେ ଏକ ବୈଠକ ଆହ୍ୱାନ କରାଯାଇ ଭାରତୀୟ ଜାତୀୟ କଂଗ୍ରେସର ପ୍ରତ୍ୟେକ ଅଧିବେଶନକୁ ଓଡ଼ିଶାରୁ ପ୍ରତିନିଧି ପଠାଇବା ପାଇଁ ପ୍ରସ୍ତାବ ନିଆଯାଇଥିଲା । ୧୮୮୫ରୁ ୧୯୦୭ ଥିଲା ଭାରତୀୟ ଜାତୀୟ କଂଗ୍ରେସରେ ଉଦାରପନ୍ଥୀ ଯୁଗ । ସେତେବେଳେ ନେତାମାନଙ୍କର ସ୍ୱରାଜଲାଭ କରିବା ଉଦ୍ଦେଶ୍ୟ ନଥିଲା । ତଥାପି ଦାଦାଭାଇ ନାଓରୋଜୀ ୧୯୦୬ ଖ୍ରୀଷ୍ଟାବ୍ଦରେ ସ୍ୱରାଜର ସଙ୍କେତ ଭାରତୀୟମାନଙ୍କୁ ଦେଇଥିଲେ । ବିଶିଷ୍ଟ କଠୋରପନ୍ଥୀ ନେତା ବାଳଗଙ୍ଗାଧର ତିଳକ "ସ୍ୱରାଜ ଆମର ଜନ୍ମଗତ ଅଧିକାର" ବୋଲି ଦାବୀ କରିଥିଲେ । ଉଦାରପନ୍ଥୀମାନେ ପ୍ରଥମାବସ୍ଥାରେ ସରକାରଙ୍କ ନିକଟରେ ଦାବୀପତ୍ର ଦାଖଲ କରି ପ୍ରଶାସନିକ ଓ ସାମ୍ବିଧାନିକ ଅଧିକାର ହାସଲ କରିବା ଲକ୍ଷ୍ୟ ରଖିଥିଲେ । ଓଡ଼ିଶାରେ ମଧ୍ୟ ୧୯୦୧ ମସିହା ଜୁଲାଇ ମାସରେ ସମ୍ବଲପୁର ଅଧିବାସୀମାନେ ଓ ୧୯୦୨ ମସିହାରେ ଗଞ୍ଜାମ ଅଧିବାସୀମାନେ ଓଡ଼ିଶା ସହିତ ମିଶିବା ପାଇଁ ଲର୍ଡ଼ କର୍ଜନଙ୍କ ନିକଟକୁ ପତ୍ର ପ୍ରେରଣ କରିଥିଲେ । ଏହି ସମୟରେ ଉତ୍କଳର ବରପୁତ୍ର ମଧୁସୂଦନ ଦାସ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ବ୍ରତୀ ଥିଲେ ଓ ଏହି ଦାବୀଗୁଡ଼ିକୁ ଭାଇସ୍‌ରାୟଙ୍କ ନିକଟରେ ଉପସ୍ଥାପନ କରି ଆସୁଥିଲେ । ୧୮୮୭ ମସିହାରେ ବଙ୍ଗଳାର ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ଦ୍ୱାରା ଗଠିତ ବେଙ୍ଗଲ ନେସ୍‌ନାଲ କନଫରେନ୍‌ସ ଅନୁରୂପ ଏକ ଅନୁଷ୍ଠାନ ଗଢ଼ି ମଧୁସୂଦନ ଦାସ ଓଡ଼ିଶାର ସମସ୍ୟାଗୁଡ଼ିକୁ ସମାଧାନ କରିବା ପାଇଁ ଉଦ୍ୟମ କରିଥିଲେ । ତାହାର ଫଳସ୍ୱରୂପ ୧୯୦୩ ମସିହା ଡ଼ିସେମ୍ବର ୩୦, ୩୧ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକରେ ଅନୁଷ୍ଠିତ ହୋଇଥିଲା । ଏଥିରେ ସଭାପତିତ୍ୱ କରିଥିଲେ ମୟୁରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଓ ଭାଗ ନେଇଥିବା ରାଜାମାନେ ହେଲେ ଢେଙ୍କାନାଳର ରାଜା ସୁରପ୍ରତାପ ମହେନ୍ଦ୍ର ବାହାଦୁର, କେନ୍ଦୁଝରର ରାଜା ଧନଞ୍ଜୟ ନାରାୟଣ ଭଞ୍ଜଦେଓ, ଆଠଗଡ଼ ରାଜା ବିଶ୍ୱନାଥ ବେବର୍ତ୍ତା ଓ ତାଳଚେର ରାଜା କିଶୋର ଚନ୍ଦ୍ର ହରିଚନ୍ଦନ । ଏହି ସମ୍ମିଳନୀ ଆହୁରି ଅଧିକ ସକ୍ରିୟ ହୋଇଥିଲା ୧୯୧୧ ମସିହାରେ ବ୍ରିଟେନର ରାଜା ପଞ୍ଚମ ଜର୍ଜଙ୍କ ଦିଲ୍ଲୀ ଦରବାର ସମୟରେ । ସେହି ଦରବାରରେ ଓଡ଼ିଶା ବଙ୍ଗପ୍ରଦେଶରୁ ପୃଥକ ହୋଇ ବିହାର ସହିତ ମିଶି ରହିଲା । ସେତେବେଳେ ଓଡ଼ିଶା ଅଧୀନରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଅନୁଗୁଳ ଜିଲ୍ଲାମାନ ରହିଥିଲା ।

ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ବେଗବାନ କରିଥିଲା ୧୯୧୯ ମସିହାରେ ପ୍ରବର୍ତ୍ତିତ ରାଉଲଟ ଆକ୍ଟ ଓ ଜାଲିଆନାୱାଲାବାଗ

ହତ୍ୟାକାଣ୍ଡ । ୧୯୧୯ ମସିହା ଏପ୍ରିଲ ୧୩ ତାରିଖରେ ଘଟିଥିବା ଅମାନୁଷିକ ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ଭାରତୀୟମାନଙ୍କ ମଧ୍ୟରେ ବ୍ରିଟିଶ ବିରୋଧୀ ଭାବନାକୁ ଅଧିକ ତୀବ୍ର କରିଥିଲା । ୧୯୨୦ ମସିହାରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ଘଟିଥିଲା । ତାହାର ପ୍ରବଳ ପ୍ରତିକ୍ରିୟା ଓଡ଼ିଶାରେ ପଡ଼ିଥିଲା । ସତ୍ୟବାଦୀ ହାଇସ୍କୁଲ ଏକ ଜାତୀୟ ସ୍କୁଲରେ ପରିଣତ ହେଲା । ଗୋପବନ୍ଧୁ ଦାସ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାରୁ ସରକାରଙ୍କ ବିଷଦୃଷ୍ଟି ଏହି ହାଇସ୍କୁଲ ଉପରେ ପଡ଼ିଥିଲା । ଏହି ହାଇସ୍କୁଲ ସମଗ୍ର ଉତ୍କଳକୁ ଜାତୀୟତା ମନ୍ତ୍ରରେ ଉଦ୍‌ବୁଦ୍ଧ କରୁଥିଲା । ଇଂରେଜମାନଙ୍କ କୋପ ଦୃଷ୍ଟିରେ ତାହା ବନ୍ଦ ହୋଇଗଲା । ୧୯୨୦ ମସିହାରେ ନାଗପୁର କଂଗ୍ରେସ ଅଧିବେଶନରୁ ଫେରି ଗୋପବନ୍ଧୁ ଦାସ ସ୍ୱରାଜ ଉପରେ ଅଧିକ ଧ୍ୟାନ ଦେବା ପାଇଁ ଉତ୍କଳ ସମ୍ମିଳନୀର ନେତୃତ୍ୱ ନେଇ ଥିଲେ । ବିଭିନ୍ନ ଜିଲ୍ଲାରେ କଂଗ୍ରେସ ଅଫିସମାନ ଖୋଲା ଯିବା ସଙ୍ଗେ ସଙ୍ଗେ କଟକରେ ସ୍ୱରାଜ ଆଶ୍ରମ ଓ ନରସିଂହପୁରଠାରେ ଅଳକାଶ୍ରମ ଗଠନ କରାଯାଇ କଂଗ୍ରେସ କର୍ମୀମାନଙ୍କୁ ପ୍ରେରଣା ଦିଆଯାଇଥିଲା । ଗୋପବନ୍ଧୁ ଦାସଙ୍କ ନିମନ୍ତ୍ରଣକ୍ରମେ ମହାତ୍ମାଗାନ୍ଧୀ ମାର୍ଚ୍ଚ ୨୩ ତାରିଖ ୧୯୨୧ ମସିହାରେ ଓଡ଼ିଶା ଯାତ୍ରା କରି ଓଡ଼ିଶାବାସୀଙ୍କ ମନରେ ଜାତୀୟତା ଭାବକୁ ଆହୁରି ତୀବ୍ରତର କରିଥିଲେ । ମହାତ୍ମାଗାନ୍ଧୀ ଓଡ଼ିଶାର ଦାରିଦ୍ର୍ୟକୁ ଅନୁଧ୍ୟାନ କରି କହିଥିଲେ, "Orissa Is the epitome of India Poverty." ଦେଶରୁ ଦାରିଦ୍ର୍ୟ ଦୂର ନହେଲା ପର୍ଯ୍ୟନ୍ତ ଆଣ୍ଠୁ ଲୁଚିବା ଯାଏ ବସ୍ତ୍ର ବ୍ୟବହାର କରିବାକୁ ସେ ପଣ କରିଥିଲେ । ୧୯୨୧ ମସିହା ଜୁନମାସରେ ମହାତ୍ମାଗାନ୍ଧୀଙ୍କ ପ୍ରେରଣାରେ ୪୦ ହଜାର କଂଗ୍ରେସ କର୍ମୀ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରିଥିଲେ । ସେତେବେଳେ କନିକା ପ୍ରଜା ଆନ୍ଦୋଳନ ଇତିହାସରେ ଉଲ୍ଲେଖଯୋଗ୍ୟ ଘଟଣା । କନିକାଗଡ଼ ପ୍ରଜାମାନେ ଜମିଦାରଙ୍କୁ ଅଧିକ ଟିକସ ଦେବାକୁ ରାଜି ହେଲେ ନାହିଁ । ସେମାନେ ବ୍ରିଟିଶ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ଇଂରେଜମାନଙ୍କ ଗୁଳିରେ ଦୁଇଜଣ ମୃତ୍ୟୁବରଣ କରିଥିଲେ । ଏହି ପ୍ରଜାଆନ୍ଦୋଳନକୁ ଶାନ୍ତ କରିବା ପାଇଁ ଗୋପବନ୍ଧୁ ଦାସ ପ୍ରମୁଖ ସେଠାକୁ ଯାଇ ୧୯୨୨ ମସିହା ମଇମାସ ୩୧ ତାରିଖରେ କାରାବରଣ କରିଥିଲେ । ଏହି ଘଟଣାରେ ଗୋପବନ୍ଧୁ ଦାସଙ୍କ ଭୂମିକାକୁ ବର୍ଣ୍ଣନା କରି ସୁଭାଷଚନ୍ଦ୍ର ତାଙ୍କ ମୃତ୍ୟୁ ପରେ ୧୯୨୮ ମସିହାରେ କହିଥିଲେ," This was something new in orissa and the result of Gopabandhu's courage and sacrifice was to install into the heart of young Oriyas a spirit of Sacrifice and fearlessness" ଅସହଯୋଗ ଆନ୍ଦୋଳନର ପ୍ରଭାବ ସୁଦୂର କୋରାପୁଟ ଜିଲ୍ଲାରେ ମଧ୍ୟ ପଡ଼ି ଥିଲା । ୧୯୨୨-୨୪ ମସିହାରେ ଆଲ୍ଲୁରି ସୀତାରାମଙ୍କ ନେତୃତ୍ୱରେ ହୋଇଥିବା ବିଦ୍ରୋହ କୋରାପୁଟ ଜିଲ୍ଲା ପାଇଁ ଏକ ଉଲ୍ଲେଖଯୋଗ୍ୟ ଘଟଣା । ୧୯୨୪ ମସିହାରେ ବ୍ରିଟିଶ ସରକାର ଗଞ୍ଜାମ ଜିଲ୍ଲାକୁ ଓଡ଼ିଶାରେ ମିଶାଇଦେବାପାଇଁ ଆଦେଶ ଦେଇଥିଲେ ।

୧୯୨୮ ମସିହା ଥିଲା ପ୍ରତିବାଦର ବର୍ଷ । ଜାତୀୟ କଂଗ୍ରେସ ନେତାମାନେ ସାଇମନ କମିସନକୁ କଳାପତାକା ପ୍ରଦର୍ଶନ କରି ଫେରିଯିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । କଂଗ୍ରେସ ଓ ଅନ୍ୟାନ୍ୟ ରାଜନୈତିକ ଦଳଗୁଡ଼ିକ ସାଇମନ କମିସନକୁ ବର୍ଜନ କରୁଥିବା ବେଳେ ପାରଳାଖେମୁଣ୍ଡି ମହାରାଜା ଏହି କମିଶନ ଆଗରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ଦାବୀ ଉପସ୍ଥାପନ କରିଥିଲେ ।

ସାଇମନ କମିସନକୁ କଳାପତାକା ପ୍ରଦର୍ଶନ କରିବା ପରେ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ଅଧିନାୟକତ୍ୱରେ ଲାହୋର ଅଧିବେଶନ କାଳରେ 'ପୂର୍ଣ୍ଣ ସ୍ୱରାଜ' ଦାବୀ କରାଯାଇଥିଲା । ୧୯୩୦ ମସିହା ଜାନୁଆରୀ ମାସ ୨୬ ତାରିଖ ଦିନକୁ ସ୍ୱାଧୀନତା ଦିବସ ଭାବେ ଘୋଷଣା କରାଯାଇଥିଲା । ତାପରେ ଆଉଏକ ଅମାନ୍ୟ ଆନ୍ଦୋଳନ ପାଇଁ ମହାତ୍ମାଗାନ୍ଧୀଙ୍କ ଡ଼ାକରା ଆସିଲା । ୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ୭୮ ଜଣ ସହକର୍ମୀଙ୍କୁ ଧରି ମହାତ୍ମାଗାନ୍ଧୀ ସାବରମତୀ ଆଶ୍ରମରୁ ଡାଣ୍ଡି ପର୍ଯ୍ୟନ୍ତ ଐତିହାସିକ ଯାତ୍ରା ଆରମ୍ଭ କରିଥିଲେ । ତାହା ଲବଣ ସତ୍ୟାଗ୍ରହ ନାମରେ ଖ୍ୟାତ । ସମୁଦ୍ରରୁ ଲୁଣ ମାରିବା ସାଧାରଣତଃ ସମୁଦ୍ର କୂଳିଆ ଲୋକମାନଙ୍କ ପେଶା । ବ୍ରିଟିଶମାନେ ଏହି ଲୁଣ ମାରିବା ପେଶା ଉପରେ ନିଷେଧାଜ୍ଞା ଜାରି କରିବାରୁ ଓଡ଼ିଶା ଓ ଭାରତବର୍ଷର ବିଭିନ୍ନ ସ୍ଥାନରେ ପ୍ରତିକ୍ରିୟାମାନ ଦେଖା ଯାଇଥିଲା । ତନ୍ମଧ୍ୟରେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ପ୍ରଧାନ । ଗୁଜୁରାଟକୁ ଛାଡ଼ିଦେଲେ ଇଞ୍ଚୁଡ଼ିର ଥିଲା ସମଗ୍ର ଭାରତବର୍ଷରେ ଦ୍ୱିତୀୟ ସ୍ଥାନ । ସେଥିପାଇଁ ଇଞ୍ଚୁଡ଼ିକୁ ଦ୍ୱିତୀୟ ଡାଣ୍ଡି କୁହାଯାଏ ।

ବ୍ରିଟିଶ ସରକାର ଭାରତୀୟମାନଙ୍କ ବୈପ୍ଳବିକ ଚିନ୍ତାଧାରାକୁ ଲକ୍ଷ୍ୟ କରି ଗୋଲଟେବୁଲ ବୈଠକ ଡ଼ାକି ସମସ୍ୟାମାନ ସମାଧାନ କରିବାକୁ ବାଧ୍ୟ ହୋଇଥିଲେ ।

ଗୋଲଟେବୁଲ ବୈଠକକୁ ଓଡ଼ିଶାର ପ୍ରତିନିଧିଭାବେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଯାଇଥିଲେ ଏବଂ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶଭାବେ ଗଠନ କରିବା ପାଇଁ ଦୃଢ଼ ଯୁକ୍ତି ବାଢ଼ିଥିଲେ । ତାଙ୍କର ଯୁକ୍ତିଥିଲା The Formation of a separate Province for the Oriyas is a life and death Problem to them. They feel tortured with all the disabilities and disadvantages of one being a distant adjunct, lying at the tailend of every Province whenever they are.... without a separate Province for ten millions of Oriyas, let me tell you, Sir, that all our labours at this conference to develop Parliamentary Institution in Provinces with autonomous powers will prove, on the Country seriously injurious to Orissa." ତାଙ୍କର ଯୁକ୍ତି ତତ୍କାଳୀନ ବ୍ରିଟିଶ ସରକାରଙ୍କୁ ମୁଗ୍ଧ କରିଥିଲା । ଫଳରେ ୧୯୩୬ ମସିହା ମାର୍ଚ୍ଚ ୩ ତାରିଖ ଦିନ ଉଭୟ ଗୃହରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶଭାବେ ଗ୍ରହଣ କରାଯିବା ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ ତାହା ୧୯୩୬ ମସିହା ଏପ୍ରିଲ ୧ ତାରିଖରେ କାର୍ଯ୍ୟକାରୀ ହେଲା, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ରୂପରେଖ ନେଲା । କଂଗ୍ରେସ ଗୋଲଟେବୁଲ ବୈଠକ ବର୍ଜନ କରିଥିବା ସ୍ଥଳେ ମହାରାଜା କୃଷ୍ଣଚନ୍ଦ୍ର ବୈଠକରେ ଯୋଗ ଦେଇ ଥିବାରୁ ସେ ଓଡ଼ିଶା କଂଗ୍ରେସ ନେତାମାନଙ୍କ ସମାଲୋଚନାର ଶିକାର ହୋଇଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥିବା ସମୟରେ ବମ୍ବେ ଅଧିବେଶନ ରେ ୧୯୪୨ ମସିହା ଅଗଷ୍ଟ ୮ ତାରିଖ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ

ହୋଇଗଲା । ବ୍ରିଟିଶ ସରକାର କଂଗ୍ରେସକୁ ଅବୈଧ ଘୋଷଣା କଲେ ।। ଦେଶର ସବୁଆଡ଼େ ବ୍ରିଟିଶ ବିରୋଧୀ ଆନ୍ଦୋଳନ ତେଜି ଉଠିଥିଲା । ଓଡ଼ିଶାରେ ତାର ପ୍ରତିକ୍ରିୟା ଦେଖା ଦେଇଥିଲା । କୋରାପୁଟର ମାତିଲି ଓ ପାପଡ଼ାହାଣ୍ଡିରେ ଆନ୍ଦୋଳନ ପ୍ରବଳ ହୋଇଥିଲା । ମାତିଲିଠାରେ ୬ଜଣ ପ୍ରାଣ ହରାଇ ଥିଲେ ଓ ୨୦୦ରୁ ଊର୍ଦ୍ଧ୍ୱ ଗୁଳିରେ ଆହତ ହୋଇଥିଲେ । ମାତିଲି ଘଟଣାରେ ଲକ୍ଷ୍ମଣ ନାଏକ ଫାଶୀ ପାଇଲେ ।

ମଧ୍ୟପ୍ରଦେଶରୁ ଆସୁଥିବା ବ୍ରିଟିଶ ଫଉଜକୁ ପାପଡ଼ାହାଣ୍ଡି ଅଧିବାସୀମାନେ ବାଧା ଦେବାରୁ, ସେମାନଙ୍କ ବନ୍ଧୁକ ମୁନରେ ୧୯ ଜଣ ଅଧିବାସୀ ଶହୀଦ ହୋଇଥିଲେ । ସେମାନଙ୍କ ସ୍ମୃତି ପାଇଁ ନିକଟସ୍ଥ ତ୍ରିଲୋନଦୀ କୂଳରେ ଏକ ଶହୀଦ ସ୍ମୃତିସ୍ତମ୍ଭ ନିର୍ମିତ ହୋଇଛି । ବାଲେଶ୍ୱର ଜିଲ୍ଲା ବାସୁଦେବପୁର ନିକଟବର୍ତ୍ତୀ ଇରମଠାରେ ୧୯୪୨ ମସିହା ସେପ୍ଟେମ୍ବର ମାସ ୨୮ ତାରିଖରେ ଇଂରେଜ ଗୁଳିରେ ୨୯ ଜଣ ସତ୍ୟାଗ୍ରହୀଙ୍କୁ ଶହୀଦ ହେବାକୁ ପଡ଼ିଥିଲା । ଏହା ଦ୍ୱିତୀୟ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ନାମରେ ପ୍ରସିଦ୍ଧ । ଓଡ଼ିଶାର କାଇପଦା, ତୁଡ଼ିଗାଡ଼ିଆ, ଲୁଣିଆ ଇତ୍ୟାଦି ସ୍ଥାନମାନଙ୍କରେ ଭାରତଛାଡ଼ ଆନ୍ଦୋଳନର କରୁଣ ସ୍ମୃତି ଦେଖିବାକୁ ମିଳେ । ଭାରତବର୍ଷର ବିଭିନ୍ନ ପ୍ରଦେଶରେ ଭାରତ ଛାଡ଼ ଆନ୍ଦୋଳନର ଶହୀଦମାନଙ୍କ ତୁଳନାରେ ଓଡ଼ିଶାରେ ଅଧିକ ମୃତ୍ୟୁ ବରଣ କରିଥିଲେ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସରେ ଓଡ଼ିଶାର ଦାନ ଅତୁଳନୀୟ । ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ୧୮୫୭ ମସିହାରେ ଅଙ୍କୁରିତ ହୋଇ ୧୮୫୮ ମସିହାରେ ନିର୍ବାପିତ ହୋଇଥିବାବେଳେ ଓଡ଼ିଶାରେ ଏହା ୧୮୬୪ ମସିହା ପର୍ଯ୍ୟନ୍ତ ଅବ୍ୟାହତ ରହି ବ୍ରିଟିଶ ରାଜଶକ୍ତିକୁ ହଇରାଣ କରାଇ ଦେଇଥିଲା । ଏ କ୍ଷେତ୍ରରେ ବୀର ସୁରେନ୍ଦ୍ରସାଏ ପ୍ରମୁଖ ବୀରପୁରୁଷମାନଙ୍କ ଅବଦାନ ଅବିସ୍ମରଣୀୟ । ବ୍ରିଟିଶ ଜାତି ବାଧ ହୋଇ ସ୍ୱୀକାର କରିଥିଲା, "The Sambalpur district was Perhaps the very last district in India in which the ember of the distrubances of 1857 were finally stamped out."

• ଡେଣ୍ଟାଲ କଲୋନୀ, ଇ୩୨/୩, ଭୁବନେଶ୍ୱର

• • •

୧୮୧୭-୨୫ : ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ବାଣପୁରରୁ ପାଇକ ବିଦ୍ରୋହ ଆରମ୍ଭ-କନ୍ଧନେତା କମଳଲୋଚନ ବିଶୋଇଙ୍କ ସେନା ସହାୟତା । କୁଜଙ୍ଗରେ ନାରାୟଣ ପରମଗୁରୁ, କନିକାରେ ବାମଦେବ ପଟ୍ଟଯୋଷୀଙ୍କ ନେତୃତ୍ୱରେ ବିଦ୍ରୋହ । ଏହି ବିଦ୍ରୋହରେ ଗୋପାଳ ଛୋଟରାୟ, ପର୍ଶୁରାମ ରାଉତରାୟ, ପୀତବାସ ମଙ୍ଗରାଜ, ପଦ୍ମନାଭ ଛୋଟରାୟ, କରୁଣାକର ପରମଗୁରୁ, ବିଷ୍ଣୁ ପାଇକରାୟ, ରାମସିଂହ, ନାଥୁପଧାନ, ସଚ୍ଚିଦାନନ୍ଦ ପଟ୍ଟନାୟକ ପ୍ରମୁଖ ବିପ୍ଳବୀମାନଙ୍କୁ ଫାଶୀ ।

ବକ୍ସି ଜଗବନ୍ଧୁଙ୍କ ସହଯୋଗୀ ଦେବାନ କୃଷ୍ଣ ଭ୍ରମରବର ରାୟ, ପିଣ୍ଡିକୀ ବାହୁବଳେନ୍ଦ୍ରଙ୍କ ସଂଗ୍ରାମ ।

୧୮୨୦ : ବିପ୍ଳବୀ ସୁରସିଂହ ମାର୍ଥା ଓ ବୀରବର ମାର୍ଥାଙ୍କ ନେତୃତ୍ୱରେ ମହୁରୀ ରାଜ୍ୟରେ ବିଦ୍ରୋହ-ଉଭୟଙ୍କୁ ଫାଶୀ ।

୧୮୨୭ : ମଇ-ତାପଙ୍ଗ ଦଳବେହେରା ମାଧବଚନ୍ଦ୍ର ରାଉତରାୟଙ୍କ ନେତୃତ୍ୱରେ ପାଇକ ବିଦ୍ରୋହ ।

୧୮୨୯ : ଜାନୁଆରୀ ୨୪ ତାରିଖରେ ବାରବାଟୀ ଦୁର୍ଗରେ ବନ୍ଦୀଥିବା ଅବସ୍ଥାରେ ବକ୍ସି ଜଗବନ୍ଧୁଙ୍କ ମୃତ୍ୟୁ ।

୧୮୩୧ : ପାରଳାଖେମୁଣ୍ଡିରେ ନରସିଂହ ରାଜୁ, ମୋତିଆ ପାଣ୍ଡୁ, ଡେରିଙ୍ଗି ବିଶୋଇ ପ୍ରକୃତିଙ୍କ ନେତୃତ୍ୱରେ ବିଶୋଇ ବିଦ୍ରୋହ । ଐତିହାସିକ ଗୁମା ଦୁର୍ଗର ରକ୍ଷକ କୃଷ୍ଣଚନ୍ଦ୍ର ଓ ତାଙ୍କ ପତ୍ନୀ ହାରାମଣି ବ୍ରିଟିଶ ଫଉଜ ଗୁଳିରେ ଶହୀଦ ।

୧୮୩୨ : କାଳଗିରିରେ ମେଳି ।

୧୮୩୫ : ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କ ଫୁଲବିବାହୀ ଭାଇ ଦୋରା ବିଶୋଇ ଓ କନ୍ଧନେତା ବିନଇ କନ୍ଧଙ୍କ ନେତୃତ୍ୱରେ ଘୁମୁସର ବିଦ୍ରୋହ ।

-ସିଂହଭୂମିରେ ହୋରକା କୋହ୍ଲ ବିଦ୍ରୋହ ।

୧୮୩୬ : ଲୁନ୍-ବାଣପୁରରେ ପଞ୍ଚାନନ ନାୟକ, କୃତ୍ତିବାସ ପାଟଶାଣୀ, ଲୋଚନ ବିଶୋଇଙ୍କ ନେତୃତ୍ୱରେ ପଣ୍ଡୁଆ ସିନ୍ଧୁରୀ ବା କନ୍ଧପାଣ ମେଳି । ପଞ୍ଚାନନଙ୍କୁ ଫାଶୀ । ଆଣ୍ଡାମାନ ସେଲୁଲାର ଜେଲରେ କୃତ୍ତିବାସ ଓ ଲୋଚନ ଶହୀଦ ।

-ଘୁମୁସରରେ କମଳଲୋଚନ ଦୋରା ବିଶୋଇଙ୍କ ନେତୃତ୍ୱରେ କନ୍ଧ ବିଦ୍ରୋହ-ବିପ୍ଳବୀ ମଧ୍ୟ ଭଞ୍ଜଙ୍କୁ ଫାଶୀ ।

# ମୁକ୍ତି-ସଂଗ୍ରାମର ସଂଗୀତ

● ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି

ମୁକ୍ତି ସଂଗ୍ରାମ-ସ୍ୱାଧୀନତା ସଂଗ୍ରାମ । ପରାଧୀନତାର ବନ୍ଧନରୁ ମୁକ୍ତି । ଏ ବନ୍ଧନ ମଣିଷର ଜନ୍ମକାଳରୁ । ଜନ୍ମ ହେଲାବେଳେ ମଣିଷ ଯେତିକି ମୁକ୍ତ ଥାଏ, ତେଣିକି ସବୁଠି ବାଧା । ସବୁ କ୍ଷେତ୍ରରେ ବନ୍ଧନ । ଏ ଦେଶକୁ ବ୍ରିଟିଶ ଶାସନରୁ ମୁକ୍ତ କରିବାକୁ ଯେପରି ସଂଗ୍ରାମର ଆବଶ୍ୟକତା ଥିଲା, ଏ ରାଜ୍ୟରୁ ବେଠି, ଭେଟି, ବେଗାରି, ବେକାରୀ, ଗୋତି, ଅନୀତି ଦୂରକରି ମଣିଷ ସମାଜକୁ ମୁକ୍ତ କରିବାର ପଥ ନିର୍ଦ୍ଦେଶର ଆବଶ୍ୟକତା ଥିଲା ତତୋଧିକ । ଗଡ଼ଜାତର ଅନ୍ଧାରୀ ଶାସନରେ ପିଷ୍ଟ ହେଉଥିବା ଲୋକଙ୍କ ପିଠିରେ ପଥର ଲଦି ଯତନ ନଗର ଗଢ଼ିବା ପରି ଦୌରାତ୍ମ୍ୟ ମଧ୍ୟ ଏଇ ମଣିଷର ଅପକୀର୍ତ୍ତିର ଫଳ । ଅସଂଖ୍ୟ ଜନ ଜୀବନ ପୋକ ମାଛି ପରି ଲୋଟିଯାଉଛି ଏ ଧରାଧାମରେ ।

ଓଡ଼ିଶା ଭୂଇଁକୁ ୧୮୦୩ ସାଲରେ ବ୍ରିଟିଶମାନେ ଦଖଲ କଲା ଉତ୍ତାରେ ଖୋର୍ଦ୍ଧାର ବୀର ପାଇକେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ରଣ ହୁଙ୍କାର ଦେଲେ । ଖୋର୍ଦ୍ଧା ସାଙ୍ଗକୁ ମାତି ଉଠିଲେ ବାଙ୍କୀ, କୁଜଙ୍ଗ, କଟକ ଓ ଅନୁଗୁଳର ଅଧିବାସୀ । ମେଳିଆମୂଳ ବୋଲି ଜୟୀ ରାଜଗୁରୁଙ୍କୁ ବୁଢ଼ାଟି ଗଛ ଡାଳରେ ବାନ୍ଧି ଦିଆଗଲା ଫାଶି ।

ସମ୍ବଲପୁରରୁ ସୁରେନ୍ଦ୍ର ସାଏ ଯୁଦ୍ଧ ଡ଼ାକରା ଦେଲେ । ମାତ୍ର ବହୁକାଳ ଲଢ଼ି ଲଢ଼ି ଶେଷକୁ କାରାଗାରର ଅନ୍ଧକାର ଭିତରେ ସଢ଼ି ସଢ଼ି ଦେଲେ ପ୍ରାଣବଳି । ମୂର୍ମୁଙ୍କ ନେତୃତ୍ୱରେ ମୟୂରଭଞ୍ଜର ସାନ୍ତାଳ, ଧରଣୀଧରଙ୍କ ନେତୃତ୍ୱରେ କେନ୍ଦୁଝରର ଭୂୟାଁ, ବିର୍ସା ମୁଣ୍ଡାଙ୍କ ଅଧିନାୟକତ୍ୱରେ ସୁନ୍ଦରଗଡ଼ର ମୁଣ୍ଡାମାନେ ମାତି ଉଠିଥିଲେ । ଘୁମୁସରର ଦୋରା ବିଶୋୟୀ ଓ ଚକରା ବିଶୋୟୀ ଜାଳିଥିଲେ ବିଦ୍ରୋହର ବହ୍ନି । ଘୁମୁସର ସାଙ୍ଗକୁ ସଂଗ୍ରାମରେ ଯୋଗଦେଲେ ବଉଦ, ଅନୁଗୁଳ, ସୋନପୁର, କଳାହାଣ୍ଡି, ମଦନପୁର, ଭରତପୁର, ଜୟପୁର, ବଡ଼ଖେମୁଣ୍ଡି ଓ ସାନଖେମୁଣ୍ଡି ଆଦି ରାଜ୍ୟବାସୀ ।

ବ୍ରିଟିଶ ଶାସକର ଔଦ୍ଧତ୍ୟକୁ ପ୍ରତିହତ କରିବା ପାଇଁ ଉନବିଂଶ ଶତାବ୍ଦୀର ଏ ଜାଗରଣ ସାଧାରଣ ଜନତା ମନରେ ଗଭୀରଭାବେ ରେଖାପାତ କରିଥିଲା । ବ୍ରିଟିଶ ଉତ୍କଳ ଭୂଇଁକୁ ଖଣ୍ଡ ବିଖଣ୍ଡିତ କରି ଏହାର ଐତିହ୍ୟ ଓ ପରମ୍ପରା, ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଛିନ୍ନ ଭିନ୍ନ କରିବା ପ୍ରୟାସରେ ବିଭିନ୍ନ ଅଞ୍ଚଳକୁ ବଙ୍ଗଳା, ବିହାର , ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ପ୍ରେସିଡେନ୍ସି ମଧ୍ୟରେ ମିଶାଇ ଦେଇ ଏ ଜାତିର ଜାତୀୟତାକୁ ତିଳ ତିଳ କରି ଧ୍ୱଂସ କରିବାରେ ତତ୍ପର ହେଲା । ରାଜା ଓ ଜମିଦାରମାନଙ୍କୁ ଆୟୁଧ କରି ଶୋଷଣ ଓ କଷଣର ପରାକାଷ୍ଠା ଦେଖାଇବାରେ ଲାଗିଲା ।

ବିଂଶ ଶତାବ୍ଦୀର ପ୍ରାକ୍କାଳରେ 'ଉତ୍କଳ ସମ୍ମିଳନୀ'ର ଭିତ୍ତିପତନ ହୋଇ ଭାଷାଭିତ୍ତିକ ପ୍ରଦେଶ ଗଠନର ପ୍ରୟାସ କଲେ କୁଳବୃଦ୍ଧ ଦେଶପ୍ରାଣ ମଧୁସୂଦନ । ତାଙ୍କ କଣ୍ଠରୁ ନିନାଦିତ ହେଲା, "ଉଠରେ ଉଠରେ ଉତ୍କଳ ସନ୍ତାନ ଉଠିବୁ ତୁ କେତେ ଦିନେ"। ସେ ମଧ୍ୟ କହିଲେ, ଉତ୍କଳ ଜନନୀ ଓ ଭାରତମାତା ଉଭୟେ ଉଭୟର ପରିପୂରକ । ତେଣୁ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ଫଳରେ ଉତ୍କଳୀୟତାର ପୁନରାଗମନ ସଙ୍ଗେ ସଙ୍ଗେ ଭାରତର ମୁକ୍ତି ସଂଗ୍ରାମ ପାଇଁ ପଥ ଉନ୍ମୋଚିତ ହେବ ।

ଭାରତୀୟ ଜାତୀୟ କଂଗ୍ରେସର ସୂତ୍ରଧର ରୂପେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ ପାଇଁ ପଥ ପ୍ରସ୍ତୁତ କରି ଗାଇ ଉଠିଲେ ,

"ମିଶୁ ମୋର ଦେହ ଏ ଦେଶ ମାଟିରେ  
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ  
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼,  
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

ସେହି ସ୍ୱାଧୀନତାର ସୂର୍ଯ୍ୟୋଦୟକୁ ବନ୍ଦିତ କଲେ କାନ୍ତକବି ଲକ୍ଷ୍ମୀକାନ୍ତ–

"ଗର୍ଜି ଉଠୁଛି ତୂର୍ଯ୍ୟନାଦ, ଉଡୁଛି ବିଜୟ କେତୁ  
ଆର୍ଯ୍ୟ ବାହିନୀ ଆସୁଛି ଗର୍ଜି ଆଜି ସମର କ୍ଷେତ୍ର ।  
ବଜାଅ ବଜାଅ ବିଜୟ ଶଙ୍ଖ, ଗାଅ ଭାରତର ଜୟ  
ଚନ୍ଦ୍ର ସୂର୍ଯ୍ୟ କମ୍ପିତ ହେଉ, ଗର୍ଜୁ ଅବନୀମୟ ।  
କ୍ଷିପ୍ର ଅରାତି ଶସ୍ତ୍ର ପ୍ରହାର ସହିଛି ମୁକ୍ତ ବକ୍ଷେ  
ରହିଛି ଅଟଳ ଆପଣା ଧର୍ମେ ଅଚଳ ରହିଛି ଲକ୍ଷ୍ୟେ ।  
ବହିଛି ଝଞ୍ଜା ମସ୍ତକେ ତାର ହୋଇଛି ଅଗ୍ନି ବୃଷ୍ଟି  
ସତ୍ୟପଥରୁ ନିମେଷକ ପାଇଁ ଫେରାଇ ନାହିଁ ସେ ଦୃଷ୍ଟି ।  
ଜନ୍ମ ଭୂମି ମୁକତି ଯଜ୍ଞେ ଅର୍ପି ହୃଦୟ ରକ୍ତ  
ଗୌରବଟୀକା ପେନିଛି ଭାଲେ ସ୍ୱଦେଶ କରିଣ ମୁକ୍ତ ।

ଜନ୍ମ ମାଟିର ଯାତନା ଭୁଲିବାର ନୁହେଁ । ଜନ୍ମମାଟିର ଆହ୍ୱାନକୁ ଶୁଣି ତାର ଦୁଃଖ ଦୂର କରିବା ସନ୍ତାନର କର୍ତ୍ତବ୍ୟ । ବିପ୍ଳବୀ କବି ମନମୋହନ ମିଶ୍ର ଗାଇଲେ,

"ଜନ୍ମମାଟି ଡ଼ାକେରେ ଡ଼ାକେ ଦୁନିଆ ମାଟି  
ଉଠ ଚନ୍ଦ୍ରାକାନ୍ତି ଜନ୍ମ ମାଟି ଡ଼ାକେ ରେ ।  
ଡ଼ାକେ କାରା ତଳେ ତୋର ଦେଶ ଭାଇ  
ମିଳ ସକଳ ଭାଇ, ଜୀବନ ପାଇଁ (ମୁକ୍ତିପାଇଁ)  
ଜନ୍ମମାଟି ଡ଼ାକେରେ ।  
କୋଟି ମଡ଼ା ପଡ଼ି ପଚେ ରାଜପଥେ,  
କୋଟି ଭିକ୍ଷୁ ତଳେ ଆଜି ମୃତ୍ୟୁରଥେ  
ଚାଲ ଜୀବନ ପଥେ ବିଜୟ ରଥେ  
ଜନ୍ମମାଟି ଡାକେରେ ।

(ଜୀବନର ଜୟଗାନ)

ବିପ୍ଳବର ବାର୍ତ୍ତାବହ ଭାବରେ ଜାତୀୟ କବି ବୀରକିଶୋର ଦାସଙ୍କର ପ୍ରେରଣାଦାୟୀ ସଙ୍ଗୀତମାନ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଉତ୍ତେଜିତ କରୁଥିଲା ।

୧୯୩୦ରେ ଆଇନ ଅମାନ୍ୟ କରି ଲବଣ ସତ୍ୟାଗ୍ରହ କରିବା ନିମନ୍ତେ ତାଙ୍କର ଆହ୍ୱାନ ଥିଲା–

''ଆସରେ ଆଜି ଆସ, ଆଜି ଆସ
ଦରିଆ ଦଖଲ କରି ଯିବା ଆସ ।''

ସ୍ୱାଧୀନତା ସଂଗ୍ରାମକୁ ଦବାଇବା ପାଇଁ ଜାରି କରୁଥିବା ଅଧ୍ୟାଦେଶ ବା ଅର୍ଡ଼ିନାନ୍ସକୁ ଲକ୍ଷ୍ୟ କରି ସତ୍ୟାଗ୍ରହୀଙ୍କୁ ପ୍ରେରଣା ଦେଇ ଲେଖିଥିଲେ,

''ଆଇନ ଜାରି ସେ କଲେ ନିତି
ମରଣକୁ ଆଉ ନାହିଁ ଭୀତି ।
ଲକ୍ଷ ଲକ୍ଷ ଲୋକ ଜାଗି ଉଠିଲେଣି
ଗୁଳିକୁ ପତାଇ ନିଜ ମଥା
ବନ୍ଧୁ ସେହି ଚିନ୍ତା ।
ମାରିବ ସେ କେତେ ମାରୁ ଥିଲେ
ବାହାରିବୁ ଆମେ ଦଳେ ଦଳେ,
ଜୀବନକୁ ଆମେ ପାଣି ଛଡ଼ାଇଛୁ
ନଛାଡ଼ିବୁ କେବେ ଆମ ପନ୍ଥା
ବନ୍ଧୁ ସେହି ଚିନ୍ତା ।''

ବିଦେଶୀ ଦ୍ରବ୍ୟ ବର୍ଜନ ପ୍ରେରି ମହାତ୍ମାଜୀଙ୍କ ଆଦର୍ଶର ପ୍ରଚାର ପାଇଁ ଶୋଭାଯାତ୍ରାରେ ଯାଉଥିବା କର୍ମୀମାନଙ୍କ କଣ୍ଠରେ ସଙ୍ଗୀତ ଦେଇଥିଲେ–

'' ସାରା ବିଲାତରେ ହାହାକାର ଆମେ
ପକାଇଦେବୁ ପକାଇଦେବୁ
ଗୋରା ବେପାରୀଙ୍କୁ ଏପାରି ସେପାରି
ନଚାଇ ଦେବୁ, ନଚାଇ ଦେବୁ ।
ଆମେ ନ କିଣିବୁ ବିଲାତି ଚିଜ
ଆଉ ନ ଆସିବ ତାଙ୍କ ଜାହାଜ
ତାଙ୍କ ଠକ ପଣ ଛଡ଼ାଇ ଦେବୁ, ଛଡ଼ାଇ ଦେବୁ ।''

ବିଦେଶୀ ଶାସକ ପ୍ରତିଷ୍ଠିତ ସ୍କୁଲ କଲେଜ ତ୍ୟାଗ କରି ସ୍ୱାଧୀନତା ଯଜ୍ଞରେ ଆପଣାକୁ ଆହୂତି ଦେବାର ପଣନେଇ ଆଗେଇ ଆସିବାକୁ ଦେଲେ ଆହ୍ୱାନ–

''ରଣ ସମୟରେ ବହି ଘୋଷିବାକୁ ମୋତେ ଆଉ ତୁମେ କହନା
ଛାତିର ରକତ ତାତିଉଠେ ମୋର ବାଜିବାକୁ ଯୁଦ୍ଧ ବାଜଣା ।
\+ + +
ଯୁଦ୍ଧ ଇତିହାସ ହୋଇଲେ ଗଠିତ
ସୁଣି ବଂଶଧରେ ହୋଇବେ ଲଜ୍ଜିତ
ନରହତ୍ୟାର କଂସେଇ ଶାଳେ ମୁଁ
ଲେଖିଥିଲି ବସି ରଚନା ।''

ଅହିଂସାର ଯୁଦ୍ଧ ଚାଲିଥିବା ବେଳେ ସତ୍ୟାଗ୍ରହୀମାନେ ବିଲାତି ଲୁଗା ପୋଡ଼ିବା ଏହାର ଅଙ୍ଗ ହୋଇଥିଲା । ସେହି ଲୁଗା ପୋଡ଼ାକୁ ବ୍ରିଟିଶ ସରକାରର ଚିତା ଅଗ୍ନି ବୋଲି ବର୍ଣ୍ଣନା କରିଛନ୍ତି କବି ବୀରକିଶୋର–

''ଦିନରାତି ମୋର ସେହି ଚିନ୍ତା, ବନ୍ଧୁ ସେହି ଚିନ୍ତା...
ଏ ସରକାର ଶବ ଦାହ ହେବ କେବେ
ଦେଖୁବି ମୁଁ ତାର ଶେଷ ଚିତା,
ବନ୍ଧୁ ସେହି ଚିନ୍ତା ।''

ଦେଶର ସ୍ୱାଧୀନତା ସହିତ ଦେଶବାସୀଙ୍କ କଲ୍ୟାଣ ଥିଲା ଜାତିର ପିତା ମହାତ୍ମାଜୀଙ୍କ ଉଦ୍ଦେଶ୍ୟ । ତେଣୁ ସେ ନିଶା ରାକ୍ଷସ କବଳରୁ ଦେଶବାସୀଙ୍କୁ ରକ୍ଷା କରିବା ପାଇଁ ରଚନାତ୍ମକ କାର୍ଯ୍ୟକ୍ରମ ମଧ୍ୟରେ ଅଗ୍ରାଧିକାର ଦେଇଥିଲେ । ମଦ, ଭାଙ୍ଗ, ଗଞ୍ଜା ଓ ଅଫିମ ଆଦି ବିକ୍ରି କରିବା ପାଇଁ ପଟ୍ଟାଦାରମାନେ ଖୋଲିଥିବା ଦୋକାନ ଆଗରେ କର୍ମୀମାନେ ସତ୍ୟାଗ୍ରହ କରନ୍ତି । ସେ ସବୁ ଜିନିଷ ନଖାଇବାକୁ ଗରାଖମାନଙ୍କୁ ବୁଝାନ୍ତି । ଛୋଟ ଛୋଟ ପିଲା, ବୟସ ଏଗାର ବାର କିମ୍ବା ତେର ପନ୍ଦର ମଧ୍ୟରେ । ସେମାନେ ବି ଯାଇ ନିଶା ଦୋକାନ ଆଗରେ ପିକେଟିଂ କରନ୍ତି ଶୋଭ ଉଚ୍ଚି । ସେମାନଙ୍କୁ ଜେଲ୍‌ରେ ପୂରାଇବା ବୟସ ହୋଇ ନଥିବାରୁ ସେହି ବାନରସେନାମାନଙ୍କୁ ରାଜଦଣ୍ଡ ମାଜିଷ୍ଟ୍ରେଟ୍ ବେତମାଡ଼ ଦେବାଲାଗି ଆଦେଶ ଦିଅନ୍ତି । ଜଣେ କୋର୍ଟ ଚପରାଶୀର ଏ ନିରୀହ ନିର୍ଦ୍ଦୋଷ ପିଲାଙ୍କୁ ବେତମାଡ଼ ଦେବାକୁ ହାତ ଚଳିଲା ନାହିଁ । ସେଥିପାଇଁ ଆଉ ଜଣେ ନୂଆ ଚପରାଶୀ ନିଯୁକ୍ତ ହୋଇ ନିଷ୍ଠୁରଭାବେ ପିଟିଲା । ସେଇ ନିର୍ଘାତିଆ ବେତମାଡ଼ରେ ପିଲାମାନଙ୍କ ହାତ ପାପୁଲି ଫାଟି ରକ୍ତ ବାହାରି ଯାଉଥାଏ । କିନ୍ତୁ ସେ କୋମଳମତି କିଶୋର ବାନରଗୁଡ଼ିକ ଯନ୍ତ୍ରଣାରେ କାତର ନହୋଇ ବା ବେତମାଡ଼ ଭୟରେ ନ କାନ୍ଦି ନିର୍ଭୀକ ଭାବରେ ଜାତୀୟକବି ବୀରକିଶୋରଙ୍କ ରଚିତ ସଙ୍ଗୀତ ଉଚ୍ଚ ସ୍ୱରରେ ଗାଉଥାନ୍ତି–

'' ଭାଇ ହେ, ମାର କେତେ ବେତ ମାରିବ
ଦେଶ ଲାଗି ଆମେ ଜୀବନ ଦେଉଛୁ
ତୁମେ କି ଆମକୁ ପାରିବ ?
ତମେ ମାର କେତେ ଲାଠି ମାରିବ
ତମ ଲାଗି ଆମେ ଜୀବନ ଦେଉଛୁ
(ତମେ) ତମରି ମହତ ସାରିବ ।''

ଜଣକ ପରେ ଜଣେ ମାଡ଼ ଖାଉଥିଲେ ବି ଏ ବେତମାଡ଼କୁ ଖାତିର କରନ୍ତି ନାହିଁ କି ଡରି ଯାନ୍ତି ନାହିଁ ବରଂ ଆହୁରି ଉତ୍ସାହରେ ଗାଆନ୍ତି–

''ତୁମେ ଶୁଣିଥିବ କର୍ଣ୍ଣେ କୋରାନ୍
ଅବା ବେଦ ବାଇବେଲ ପୁରାଣ
ମଦରେ ମୁକତି ଲେଖାଅଛି କାହିଁ
ବୁଝାଇ ଆମକୁ କହିବ ।
ଆମେ ଡ଼ରୁନାହୁଁ କେବେ ମରଣେ
ମନ ରଖିଅଛୁ ବିଭୁ ଚରଣେ
ତୁମ ଆମ କଥା ତାଙ୍କ ମିଶିଲରେ
ଦିନେ ତ' ବିଚାର ହୋଇବ ।''

ବୀରକିଶୋରଙ୍କ ବୀରତ୍ୱବ୍ୟଞ୍ଜକ କବିତା ଭରି ଦେଉଥିଲା ସତ୍ୟାଗ୍ରହୀ ମନରେ ନବୀନ ବଳ, ଉତ୍ସାହ । ତା'ରି ପ୍ରଭାବରେ ହସି ହସି ଆଗେଇ ଆସୁଥିଲେ ସତ୍ୟାଗ୍ରହ କରିବାକୁ । ବିଦେଶୀ ବସ୍ତ୍ରବର୍ଜନ, ସ୍କୁଲ କଲେଜ ତ୍ୟାଗ, ସ୍ୱାଧୀନତା ସଂଗ୍ରାମରେ ଝାସ ପ୍ରଦାନ, ଲୁଣମରା,

ଅବକାରୀ ଦୋକାନ ଆଗରେ ପିକେଟିଂ କରି ବେତ, ଲାଠି, ଗୁଳାଗୁଳିର ଶିକାର ହେଉଥିଲେ ସହାସ୍ୟ ବଦନରେ । ବୀରକିଶୋରଙ୍କ କବିତା ଥିଲା ପ୍ରଳୟର ପ୍ରେରଣା, ଉତ୍ସାହର ଉତ୍ସ । ଦେଶବାସୀଙ୍କୁ କରୁଥିଲା ଦେଶପ୍ରେମରେ ଉଦ୍‌ବୁଦ୍ଧ ।

୧୯୩୧ ମାର୍ଚ୍ଚ ୫ ତାରିଖରେ ଗାନ୍ଧିଜୀଙ୍କ ସହ ବଡ଼ଲାଟ ଲର୍ଡ଼ ଇରଉଇନ୍‌ଙ୍କ ଚୁକ୍ତି ହେଲା । ଦେଶର ଭବିଷ୍ୟତ ସମ୍ପର୍କରେ କଥାବାର୍ତ୍ତା କରିବା ପାଇଁ ବିନା ସର୍ତ୍ତରେ କଂଗ୍ରେସ୍ କାର୍ଯ୍ୟକାରୀ କମିଟି ସଭ୍ୟମାନଙ୍କୁ ଖଲାସ କରାଗଲା । କଂଗ୍ରେସ୍ ଗୋଲ୍‌ଟେବୁଲ୍ ବୈଠକରେ ଯୋଗ ଦେବାକୁ ରାଜି ହେଲା । ଲୋକଙ୍କ ଆନ୍ଦୋଳନକୁ ସରକାର ଦବାଇ ଦେବାକୁ ଚେଷ୍ଟା କରିବାରୁ ପୁଣି ଆନ୍ଦୋଳନ ମୁଣ୍ଡ ଟେକୁଥିବା ବିଷୟରେ କଂଗ୍ରେସ କର୍ମୀଙ୍କ ମଧ୍ୟରେ ଅସନ୍ତୋଷ ଓ ବିରୋଧ ଭାବ ଦେଖାଗଲା । ଏହି ସନ୍ଧିକ୍ଷଣରେ ଦେଶବାସୀଙ୍କୁ ଚେତାଇ ଦେଇ କବି ବୀରକିଶୋର ଗାଇଲେ-

"ଭଲା ସନ୍ଧିବେଳ ଗୀତ ନ ଗାଇଲେ
ଭାଇଏ ଲଦିବେ ଦୋଷ
ସତ ଗାଇଲେ ତ ବନ୍ଧୁ ସରକାର
ମନରେ ବହିବେ ରୋଷ ।
ଥରେ ସତ କଥା ଲେଖି
ମୁକ୍ତି ମଣ୍ଡପ ଆସିଛି ଦେଖି ।

ସୁରାଟ ଜିଲ୍ଲାରେ ଛାତିଫଟା ଦୁଃଖ ଦେଖି ଗାନ୍ଧିଜୀ ବଡ଼ଲାଟଙ୍କ ପାଖେ ଜଣାଇ ଥିଲେ । ବର୍ଦ୍ଦୋଲୀରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ନେତୃତ୍ୱରେ ଚାଲିଲା ଆନ୍ଦୋଳନ । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ କୁରୁସଭା ତଳେ ପାଣ୍ଡବଙ୍କ ପାଇଁ ପାଞ୍ଚଖଣ୍ଡି ପଡ଼ା ଗାଁ ମାଗିଲା ପରି ଗାନ୍ଧିଜୀ ବିଲାତ ଗଲେ 'ରାଜପୁତାନା' ଜାହାଜରେ ବମ୍ବେ ନଗରରୁ, ଗୋଲ୍‌ଟେବୁଲ୍ ବୈଠକରେ ଯୋଗ ଦେଇ ଭାରତର ସ୍ୱରାଜ୍ୟ ପାଇଁ । ସେଇ ଦୃଶ୍ୟର ବର୍ଣ୍ଣନା " ମହାସିନ୍ଧୁ ପ୍ରାଣ ଉଚ୍ଛୁଳି ଉଠିଲା ପଡ଼ିଗଲା ତାର ମନେ
ନୀଳାଚଳ କୋଳେ ଭେଟିଥିଲା ପରା
ଏପରି ସନ୍ନ୍ୟାସୀ ଜଣେ ।
ଯେ ପ୍ରେମର ହୋଇ
ପ୍ରେମ ବିଳୁଥିଲା ମାଡ଼ ଖାଇ ।

୧୯୩୧ର ଗୋଲ୍‌ଟେବୁଲ୍ ବୈଠକରେ ଅଚଳ ଅବସ୍ଥା ସୃଷ୍ଟି ହେଲା । ମନେ ହେଲା ସନ୍ଧି ଭାଙ୍ଗିଯିବ । ଗାନ୍ଧିଜୀ ପୁଣି ବିଲାତ ଯାଇ ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକରେ ଯୋଗ ଦେବେ ନାହିଁ । ସରକାର ବିରୁଦ୍ଧରେ କଂଗ୍ରେସ୍ କର୍ମୀଙ୍କ ମନରେ ତିକ୍ତତା ସୃଷ୍ଟି ହେଲା । ଆଶଙ୍କା ହେଲା ଆତ୍ମ ସମ୍ମାନ ପ୍ରଶ୍ନ ନେଇ ସଂଘର୍ଷ ଘଟିପାରେ । ସେହି ସମୟରେ କଂଗ୍ରେସ୍ କର୍ମୀମାନଙ୍କୁ ଅଧୀର ନ ହେବାକୁ ପରାମର୍ଶ ଦେଲେ କବି-

"ଧୀରେ ଧୀରେ ତରୀ ବାହାରେ ନାଉରୀ
ଧୀରେ ଧୀରେ ବାହା ତରୀ
ଆଗକୁ ପଛକୁ କେହି ନାହିଁ ତୋର
ତୁହି ଏକା ସାହା ତୋ'ରି ।

ଚୌଦିଗରେ ଘୋଟି ଆସୁଥିବା ମେଘ, ପବନର ଅଧିକ ବେଗ, ବିଜୁଳିର ଚମକ, ଘଡ଼ ଘଡ଼ି ଡ଼ାକ-ପ୍ରାଣରେ ସୃଷ୍ଟି କରୁଚି ଆତଙ୍କ । ନଦୀ ଓ ପର୍ବତ ଏକାକାର ଦିଶୁଛି । ଲହଡ଼ି ପରେ ଲହଡ଼ି ଆସୁଛି ମାଡ଼ି । ବତୀଘରର ସୀମା ମୋଟେ ଦେଖାଯାଉନି । ତେଣୁ ନିଜକୁ ନିଜେ ରକ୍ଷିବା ପାଇଁ ପରାମର୍ଶ-

"ଛାତି ଦମ୍‌କରି ଚଳା ତୋର ହାତ
ମୁଠା ଟାଣକରି ଧରା ତୋର କାତ
ଅଛି ଯେତେ ଘାଟୀ ଯିବ ସବୁ କଟି
ବାଟ ଛାଡ଼ି ଦେବ କାଳ ରଟିଗା ।

ସବୁ କର୍ମୀଙ୍କ ମନ ସମାନ ନଥିଲା । ଜେଲ୍ ଭିତରକୁ ଯିବା ପରେ ମନ ପରିବର୍ତ୍ତନ କରି ଆନ୍ଦୋଳନରେ ଆଉ ଯୋଗ ନ ଦେଇ କ୍ଷମା ମାଗି ଚାଲିଯିବା ପାଇଁ ରାଜବନ୍ଦୀମାନଙ୍କୁ ସରକାର ପ୍ରବର୍ତ୍ତାଉଥାନ୍ତି । ମାତ୍ର ସେଥିରେ ଭଳି ନଯିବାକୁ କବି ବନ୍ଦୀମାନଙ୍କ ମଧ୍ୟରେ ଭରି ଦେଉଥିଲେ ଅପୂର୍ବ ଉତ୍ସାହ ଓ ଉନ୍ମାଦନା-

"ସ୍ୱାଧୀନତା ଯୁଦ୍ଧ ଆରମ୍ଭିଲେ ଥରେ
ଶକତି କାହାର କିଏ ରୋଧିପାରେ
ପୂର୍ଣ୍ଣ ସ୍ୱାଧୀନତା ଲାଗି ଯୁଦ୍ଧ କରି
ଯୁଗେ ଯୁଗେ ତୁମେ ଅମର ହୁଅ ।
ଦମ୍ଭଧରି କେତେ ରହିବ ରହ,
ସ୍ୱାଧୀନ ଭାରତ ଚିତ୍ରପଟ ଆଙ୍କି
(ଭାଇ) ମରିବ କିଏ ସେ ପିଟାର କହ ।"

(ମରିବ କିଏ ସେ)

ଜାତି ମହାସଭାରେ ଜାତୀୟ ମଣ୍ଡପ ତୋଳିବା ପାଇଁ ମୁକ୍ତି ଯଜ୍ଞର ଉପବୀତ ପିନ୍ଧି ରକ୍ତି ଚନ୍ଦନ ଗୋଳି ହୁଅ । ଭାରତର ଭାଗ୍ୟ ପରୀକ୍ଷା ସମରର ନିଆଁ ଜଳୁ ବା ଲିଭୁ ,ଏ ମହାସନ୍ଧି ବେଳାରେ ଉତ୍କଳରେ ଖୋଲିବ ପ୍ରତାପ ଦରବାର ।

"ଶୁଣିବ ଚୀନବା ଶୁଣିବ ଜାପାନ
ଶୁଣିବ ରୁଷିଆ ଆନ ଦେଶମାନ
ଓଡ଼ିଆର ନାମ ଓଡ଼ିଆର ଧାମ
ଜଗତେ ମହକି ଉଠିବ ।
ଆସିବେ ପଞ୍ଜାବୀ ବଜାଇ କାହାଳୀ
ଆସିବେ ତେଲେଙ୍ଗା ଆସିବେ ବଙ୍ଗାଳୀ
ଆସିବେ ତୋ ବାଣୀ ବୀର ବରଦୋଲୀ
କେତେ ଅରଦୋଳି ଲାଗିବ ।"

ସ୍ୱାଧୀନତା ସଂଗ୍ରାମ ସହ ଶାନ୍ତି, ମୁକ୍ତି ଓ ପ୍ରଗତିର ବାର୍ତ୍ତା ଖେଳାଇ ଦେଉଥିଲେ କବି । ଯୁଗାବତାର ମହାତ୍ମା ଗାନ୍ଧୀ ରାଜ ପୁରୋଧା ଭାବରେ ଦେଶବାସୀଙ୍କ ହୃଦୟ ପୀଠରେ ବସି ଶାନ୍ତି ନନ୍ଦନ କାନନରେ ଚନ୍ଦନ ଘୋରିବା ଯୋଗୁଁ ମହକି ଉଠୁଛି ଗଗନ ପବନ । ଭାରତର ଅନ୍ୟ ପ୍ରିୟ ସନ୍ତାନଗଣ ଜନନୀ ସେବାରେ ତତ୍ପର । ତା'ର ଏକ ଚିତ୍ର-

"ଅରବିନ୍ଦ ତାର ଯୋଗରେ ମଗନ
ଗୁରୁ ଜଗଦୀଶ ପ୍ରଚାରେ ବିଜ୍ଞାନ
ରବି କବିବର ମେଲି ଦିବ୍ୟତାନ
କୋଟି ନରନାରୀ ମୋହୁଛି
ଆସୁଛି ସେ ଦିନ ଆସୁଛି ।
ଭାରତ ଜନନୀ ଅଭିଷେକ ଲାଗି
(ସାରା) ବିଶ୍ୱ ଜଗତ ସାଜୁଛି ।"

ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାକୁ କବି ବୀରକିଶୋରଙ୍କ ଆହ୍ୱାନ–

"ଆମେ ନବ ଯୁଗ ନବ ତରୁଣ
ଆମେ ନବୋଦିତ ଦେବ ଅରୁଣ
ଏ ବିଶ୍ୱ ଅନ୍ଧାର ବିନାଶିବା ଲାଗି
ଆମ ଜନ୍ମ ଆମ ମରଣ ।"

କବି ବୀରକିଶୋରଙ୍କ ସହିତ ସ୍ୱର ମିଳାଇ ଗାଉଥିଲେ ଆଉ ଜଣେ ଜାତୀୟବାଦୀ କବି ବାଞ୍ଛାନିଧି ମହାନ୍ତି । ବ୍ରିଟିଶ ରାଜା ଓ ବିଦେଶୀ ବେପାରୀ ଉତ୍ପୀଡ଼ନ ଓ ଲୁଣ୍ଠନ ଯୋଗୁଁ ଦେଶବାସୀଙ୍କ ପକ୍ଷେ ଘୃଣ୍ୟ ।

"କାହିଁ ଅଇଲେ ବିଦେଶରୁ ବେପାରୀ
ସବୁ ସାଇଲେ ହେଲୁ ଆମେ ଭିକାରୀ ।
ଇଂରାଜୀ-ଇରାନୀ ଜର୍ମାନୀ-ଜାପାନୀ
ଚୀନା କାବୁଲି ଏ ଦେଶ ବେପାରୀ ।
ଚକ ଚକ୍ କାଉନା ମାଟିର ବାସନ
ସାରିଦେଲା ବୁଢ଼ି ଦେଶ କଂସାରି ।"

କବି କୃଷ୍ଣମୋହନ ପଟ୍ଟନାୟକଙ୍କ ଆହ୍ୱାନ ମଧ ଦେଶବାସୀଙ୍କୁ ବୀରତ୍ୱ ପ୍ରଦର୍ଶନ କରି ସ୍ୱାଧୀନତା ଯଜ୍ଞରେ ଯୋଗ ଦେବାକୁ ଦେଉଥିଲା ପ୍ରେରଣା–

"କହ କହ କେଉଁ ଜାତି ପାଉଛି ମୁକତି
କରି ଝୁରି ହାରି ଗୁହାରି
କହ ପାଉଛି ଏକେ ସୁଖ ଲିଭାଉଛି ଦୁଃଖ
ମାଗି ମାଗି ପଥ ଭିକାରୀ ।"

ସ୍ୱାଧୀନତାକୁ ଭିକ୍ଷା କରି ମାଗିଲେ ମିଳିବ ନାହିଁ । ହାରି ଗୁହାରିରେ କି ସ୍ୱାଧୀନତା ହାସଲ ହୋଇପାରେ । ସେଥିପାଇଁ ଲୋଡ଼ା ଅମିତ ବଳ, ଅସୀମ ଧୈର୍ଯ୍ୟ ଓ ବୀରତ୍ୱ । ବିନା ଯୁଦ୍ଧେ ନ ମିଳଇ ସୁଚ୍ୟଗ୍ର ମେଦିନୀ । ସେ ଯୁଦ୍ଧ ହେଉ ପଛେ ହିଂସାର କିମ୍ବା ମହାତ୍ମାଜୀଙ୍କ ନିର୍ଦ୍ଦେଶିତ ଅହିଂସାର । ପ୍ରାଥମିକ ଅବସ୍ଥାରେ ଆଧୁନିକ ଓଡ଼ିଆ ସାହିତ୍ୟରେ ଜାତୀୟ ଚେତନାର ସ୍ୱରୂପ ପ୍ରକାଶ ବିଭିନ୍ନ କବିଙ୍କ ରଚନାରେ ଦେଖାଯାଏ ଜନନୀ ଜନ୍ମଭୂମିର ବନ୍ଦନାରେ କିମ୍ବା ଅତୀତ ଗୌରବ ସ୍ମରଣରେ । କବି ରାଧାନାଥଙ୍କ 'ଦରବାର'ରେ–

"ପୂର୍ବ ନରପତି ପ୍ରେତ ଆତ୍ମାମାନ
ବ୍ୟୋମେ ବ୍ୟୋମଯାନେ ହୋଇ ଅଧିଷ୍ଠାନ
ଦେଖନ୍ତି ସଖେଦେ ତାଙ୍କରି ଦୁର୍ଜୟ,
ଉତ୍କଳର ଏହି ଦଶା ବିପର୍ଯ୍ୟୟ ।"

ମଧୁସୂଦନଙ୍କ 'ଭାରତ ଭାବନା'ରେ

"ଏହି କି ସେ ପୁଣ୍ୟଭୂମି ଭୁବନ ବିଦିତ
ସୁବିସ୍ତୀର୍ଣ୍ଣ ରଙ୍ଗଭୂମି ଆର୍ଯ୍ୟ-ଗୌରବର ।"

ଫକୀର ମୋହନ -'ଉତ୍କଳର ବିଗତ ଗୌରବ'ରେ–

"ଅଛି ତ ଉତ୍କଳ ଦେଶ କାହାନ୍ତି ସେ ବୀରେ
ବୁଡ଼ିଛି ବୀରତ୍ୱ କୀର୍ତ୍ତି ଅତୀତ ତିମିରେ ।"

ମଧୁସୂଦନ ରାଓ-

" ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବି ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।
ଏ ମାନବ ଜନ୍ମ ହେଉ ସଫଳ ମୋହର
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର ।"

ଗଙ୍ଗାଧର–

"ମାତୃଭୂମି ମାତୃଭାଷାରେ ମମତା
ଯା' ହୃଦେ ଜନମି ନାହିଁ
ତାକୁ ଯଦି ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ ?"

ସ୍ୱଦେଶୀ ବସ୍ତ୍ର ବୟନ, ବିଦେଶୀ ଦ୍ରବ୍ୟ ବର୍ଜନ, ଲବଣ ସତ୍ୟାଗ୍ରହ ଓ ଅସହଯୋଗ ଆନ୍ଦୋଳନର ସମର୍ଥନ କରି ଆଗେଇ ଆସିଥିଲେ ବ୍ୟାସକବି ଫକୀରମୋହନ–

"ଓଳିତଳେ ଲୁଣ କୋଟିଏ ମହଣ ଥାଉ ମୋହ କଥା ଶୁଣ
ବୋଇଲେ କି ହେବ ଖାଇବାକୁ ହେବ 'ଲିଭରପୁଲ'ର ଲୁଣ ।
ମାଞ୍ଚେଷ୍ଟର ତନ୍ତୀ ଲୁଗା ବୁଣୁଛନ୍ତି ତୁମମାନଙ୍କ ସକାଶେ
ବୁଝୁ ତନ୍ତୀବଂଶ ହେଉ ସର୍ବନାଶ, ଯାଆନ୍ତୁ ସେ ବନବାସେ ।"

ଏଇ ବ୍ୟଙ୍ଗାତ୍ମକ ଭାବ ଭିତରେ ବିଦ୍ରୋହର ବୀଜ ବପନ କରିଛନ୍ତି କବି । ଭାରତର ତିନିପାର୍ଶ୍ୱ ପରିବେଷ୍ଟିତ ସମୁଦ୍ରରୁ ଲୁଣ ମାରି ଖାଇବାର ଅଧିକାର ଛଡ଼ାଇ ନିଆଗଲା । କାରଣ ବିଲାତରୁ ଭାରତକୁ ଆସୁଥିବା ଜାହାଜମାନ ଖାଲି ନ ଆସି ଲିଭର୍ପୁଲ୍(ବିଲାତର ଏକ ବନ୍ଦର)ରୁ ଲୁଣ ବୋଝାଇ କରି ଆଣିବେ ଓ ଏଠାରେ ତାକୁ କିଣି ଭାରତୀୟମାନେ ଖାଇବେ । ସେହିପରି ମାଞ୍ଚେଷ୍ଟର (ବିଲାତର ଏକ ସହର)ରେ ବୁଣା ଲୁଗା ଭାରତରେ ବିକ୍ରି ହେବ ଓ ଭାରତର ତନ୍ତୀମାନେ ଲୁଗା ବୁଣି ବିକିବା ଉପରେ ନିଷେଧାଜ୍ଞା ଥିଲା । ଏହାର ବିରୁଦ୍ଧରେ ବାପୁଜୀ ସ୍ୱର ଉତ୍ତୋଳନ କରି ଚରଖାର ପ୍ରସାର, ଖଦଡ଼ ଲୁଗା ତିଆରି ଏବଂ ଲୁଣମରା ଆଦି କାର୍ଯ୍ୟମାନ କରାଇଲେ । ଏହା ବ୍ରିଟିଶ ରାଜଶକ୍ତି ବିରୋଧରେ ଆନ୍ଦୋଳନ ଥିଲା ।

କବି ଗଙ୍ଗାଧର'ଭାରତୀ ଭାବନା'ରେ ଏହିପରି ସ୍ୱର ଉତ୍ତୋଳନ କରିଛନ୍ତି–

"ଡାକି ତ ନ ଥିଲୁଁ ତୁମ୍ଭ ଘର ଯାଇ
ଆସିଥିଲ ନିଜ ଲାଭରେ
ସରଳ-ହୃଦୟ ମଣି ସିନା ଘରେ
ରଖିଲୁ ଅତି ସ୍ନେହାଦରେ
(ଗୋପେନ୍ଦ୍ର) କହିବ କଲ ଉପକାର
ଯାହା କରିଅଛ ନିଜ ସ୍ୱାର୍ଥ ପାଇଁ ନଥିଲା ଆମ୍ଭ ଦରକାର ।"

ଗୋପେନ୍ଦ୍ର(କୃଷ୍ଣ)ଙ୍କୁ ଗୋପୀଙ୍କ କହିବା ଛଳରେ ଇଂରେଜଙ୍କ ପ୍ରତି କବିଙ୍କର ଶ୍ଳେଷୋକ୍ତି ଏଥିରେ ସ୍ପଷ୍ଟ ।

ସ୍ୱାଧୀନତାର ଗୁରୁତ୍ୱ ଉପଲବ୍ଧି କରିବା ପାଇଁ ଉତ୍କଳମଣି ଗୋପବନ୍ଧୁ ଲେଖିଥିଲେ–

"ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସଂସ୍କୃତି
ଚାରି ଅଙ୍ଗେ ମାନବର ଜୀବନ ସଂସ୍ଥିତି ।"

ଉତ୍କଳଭାରତୀ କୁନ୍ତଳାକୁମାରୀ ଏହି ଭାବର ପ୍ରକାଶ କରିଥିଲେ,
"ସ୍ୱରାଜ୍ୟ ଆମ୍ଭର ଜନ୍ମ ଅଧିକାର
ଜାତୀୟ ସ୍ୱାଧୀନତା ଧେୟ ଶ୍ରେଷ୍ଠ ସାର ।"

କବି ସଚ୍ଚିଦାନନ୍ଦ ରାଉତରାୟ 'ସର୍ବହରା' କବିତାରେ ଜନତାକୁ ନିର୍ଭୀକ ହେବାକୁ ଆହ୍ୱାନ ଦେଇ କହିଛନ୍ତି–

"ଯେତେକ ଜୀବନ ଶୋଷଣ ପେଷଣ
ପୀଡ଼ନେ ଲଭିଲେ ଲୟ ।
ଆଜି ହେଉ ଶତ ଯୁଗ ପରେ ତାଙ୍କରି ସବୁ ଜୟ ।
ସୁପ୍ତ ମଣିଷ ଜାଗ,
ଅନ୍ତର ତଳେ ଖେଳୁ ଚଞ୍ଚଳେ ମୁକ୍ତିର ଅନୁରାଗ ।
କାହାକୁ ତୋର ଡ଼ର
ଉପରେ ତୋହର ଉଦାର ଆକାଶ ନିମ୍ନେ ଧରଣୀ ତଳ ।"

ଗୋଦାବରୀଶଙ୍କ 'ରକ୍ତିତ ଅସାଧାରେ', କାଳିନ୍ଦୀଚରଣଙ୍କ 'ଆଗାମୀ', 'ଯାଦୁଘର' ଓ 'ପୁରୀ ମନ୍ଦିର' ଆଦିରେ ପ୍ରଗତିବାଦୀ ଚେତନା ସ୍ପଷ୍ଟ । କୁନ୍ତଳାକୁମାରୀଙ୍କର 'ଆହ୍ୱାନ' ଓ 'ସ୍ଫୁଲିଙ୍ଗ' ଆଦି କବିତାରେ ନର ଓ ନାରୀମାନଙ୍କ ପ୍ରତି ରହିଛି ଜ୍ୱାଳାମୁଖୀ ଆହ୍ୱାନ–

"ହେ ପୁରୁଷେ ଯଦି ନ ଉଠ ଏଥର
ଆମେ ରଣ ବେଶେ ହେବୁ ଅଗ୍ରସର ।
ଶାନ୍ତି ସତ୍ୟାଗ୍ରହ ମହାରଣ ସ୍ଥଳେ
ଶୋଭାଯାତ୍ରା କରି ଯିବୁ ଦଳେ ଦଳେ ।
ଟାଙ୍ଗୁଆର ଫାଶୀ ଖୁଣ୍ଟେ ଆମ ମୁଣ୍ଡ
ଆମେ ଯେ ନ ଡରୁ ଚିତା ଅଗ୍ନି କୁଣ୍ଡ ।"

ଜଗବନ୍ଧୁ ସିଂହ ମାତୃ ଜାତିକୁ ଉଦ୍‌ବୋଧନ ଦେଇ ଲେଖିଥିଲେ –

ନ ଜାଗିଲେ ସବୁ ଭାରତ ରମଣୀ
ଜାଗିବ ନାହିଁଟି ଏ ଭାରତ ଭୂମି ।
ଜାଗ ଜାଗ ମାତା କନ୍ୟା ବା ଭଗିନୀ
ହୁଅ ବୀରଜାୟା ବୀର ପ୍ରସବିନୀ ।"

ବୀରକିଶୋରଙ୍କ ଉଦାତ୍ତ କଣ୍ଠରୁ ସ୍ୱରିତ ହୋଇଥିଲା–

"ଆମେ କେତେ ଜଣ ଜୀବନକୁ ପାଣି •
ଛଡ଼ାଇ ନ ଦେଲେ ଚଳିବ କି ?
ଚାଷୀ ମୂଲିଆର ଖପୁରିକୁ ଚିରି
ଦିଲ୍ଲୀ ଦରବାର ଗଢ଼ିବ କି ?"

ସାମନ୍ତବାଦର ବିରୁଦ୍ଧରେ କବି ଘନଶ୍ୟାମ ମହାନ୍ତିଙ୍କ ବିଦ୍ରୋହ ବାଣୀ–

"ତୁମର ଯେ ଅତ୍ୟାଚାର,
କାଳବଶେ ହେଲା ଅଳିଭାଗାର ହେ,
ଝରେ ଲୁହ ନୁହେଁ ଲହୁଧାର, ମଣିମା ହେ ।
ବଣ କର, ଛଣ କର, ନିଆଁ କର ପୁଣି ମୁନିଆଁ କର ହେ
ଖାଇପୋଡ଼ା,ପାଠ ପଢ଼ାକର, ମଣିମା ହେ ।
ମହୁ ମହମରେ କର, ରୋଗ ଭୋଗି ଦେଉ ଔଷଧ କର ହେ
ତୁମକୁ ତ ସେବେ ଡାକ୍ତର । ମଣିମା ହେ ।

(ଦଶରା ଭେଟି)

ସାମନ୍ତବାଦର ଅତ୍ୟାଚାର ବିରୁଦ୍ଧରେ ଏକ ବଜ୍ର ଘୋଷଣା ଶ୍ରୀନିବାସ ମିଶ୍ର(ତାଳଚେର )ଙ୍କ–

ହେ ପଞ୍ଚାୟତ ସତ,
ସତ ବଚନ ମନରୁ ଫିଟିବ କି ନା ହେ
ହେ ପଞ୍ଚାୟତ ସତ ।
ଝିଅ ବୋହୂଙ୍କର ଇଜ୍ଜତ ସାରିଣ
ନାକରୁ କାନରୁ ଘୁଷାଇ ସୁନା
ବିଶା ବିଶାକରି ଓଜନ କରିଣ
କୁଢ଼ି ନେବା ଉଚିତ କି ମନା
ହେ ଗର୍ବିତ ମନା
ଉଡ଼ାଇଲ ଦେଖେ କାଳିଆ ବାନା ।

(ଆସନ୍ତା କାଲିର ସାହିତ୍ୟ)

କବି ଗୋକୁଳାନନ୍ଦ ମହାନ୍ତି ଏ ଜାତିର ଅତୀତ ବୈଭବ ସ୍ମରଣ କରାଇ ଲେଖିଥିଲେ–

" ଯେ ଜାତି ବୋଇତ ଭସାଇ ସାତ ସମୁଦ୍ରର ତେର ନଈରେ
ପରଦେଶୁ ଧନ ଦଉଲତ ଘରେ ଆଣୁଥିଲା ଦିନେ ବହିରେ ।"

ଦେଶର ସାମାଜିକ ଦୁର୍ଗତି, ରାଜନୈତିକ ଓ ଅର୍ଥନୈତିକ ଶୋଷଣ ଓ ଅତ୍ୟାଚାର ବିରୁଦ୍ଧରେ ଲେଖିଥିଲେ,

"ଗାମ ଭାଇଙ୍କର ପରଜା ଆମେ ହୋ
ପେଟକୁ ନ ମିଳେ ଦାନା,
ଦେହ ଢାଙ୍କିବାକୁ ନ ମିଳଇ କନା
ତୁଣ୍ଡ ଫିଟାଇବା ମନା ହୋ
କଥା କଥାକେ ମାଡ଼,
ଅଛି କମ୍ପାନୀ ଲୁହାର ବାଡ଼ ହୋ ।

* ସାମ୍ରାଜ୍ୟବାଦୀ ଚିନ୍ତାଧାରା ବିରୋଧରେ ସ୍ୱର ଉତ୍ତୋଳନ କଲେ କବି ଅନନ୍ତ ପଟ୍ଟନାୟକ–

ତୁମେ ଜାଣିଚକି ତୁମେ ଜାଣିଚକି
ଯେଉଁ ଘୁନେଲି ଭୁପେଲି ହସୁଥାଏ ।
ସେ ଯେ ପଶରା ମେଲିଚି ମରଣର,
ତାର ହସେ ତାହିଁ ଲୁହ ଜାଣିଚାଏ ।
କେତେ କଳା ମଣିଷର ଗଳାଚିପି
କେତେ ଛାତିରୁ ଛାଲ ସେ ଉତୁରାଏ
ସେ ଯେ ଛେଉକା ପଣରେ ଛକି ଛକି
ପ୍ରୀତି କୁହୁକୁତା କରି କତୁରାଏ ।

(ଶାନ୍ତିଶିଖା)

ଓଡ଼ିଆ ସାହିତ୍ୟରେ ନୀଳକଣ୍ଠ, ଗୋଦାବରୀଶ, କୁନ୍ତଳା, ପଦ୍ମଚରଣ,ଗୋବିନ୍ଦ ଶୂରଦେଓ, ବାଞ୍ଛାନିଧି, ଲକ୍ଷ୍ମୀକାନ୍ତ, କୃଷ୍ଣମୋହନ, ଗୋଦାବରୀଶ ମହାପାତ୍ର ଆଦିଙ୍କ ରଚନା ଓ କବି ବୀରକିଶୋରଙ୍କ ଅଗ୍ନିବର୍ଷୀ କବିତାର ଉଦାମତା ଏ ଦେଶର ଯୁବପିଢ଼ିଙ୍କ ପ୍ରାଣରେ ଭରିଦେଇଥିଲା ଅସରନ୍ତି ପ୍ରେରଣା । ମାତୃଭୂମିର ମୁକ୍ତି ପାଇଁ ଉଦ୍‌ବୁଦ୍ଧ ହୋଇ ସେମାନେ ପ୍ରାଣବଳି ଦେବାକୁ ସୁଦ୍ଧା ପଶ୍ଚାତ୍‌ପଦ ନଥିଲେ । କାରାର ଯାତନା ଓ ଶାସକର ଅତ୍ୟାଚାରକୁ ହସି ହସି ସହି ଯାଉଥିଲେ । ସେମାନଙ୍କର ଦେଶ ପାଇଁ ତ୍ୟାଗ ଓ ଆତ୍ମୋତ୍ସର୍ଗର ମୂଳରେ ଥିଲା କବିକୁଳଙ୍କର ପ୍ରେରଣା ଓ ଆହ୍ୱାନ ।

*ନିର୍ମଳି କୁଟୀର, କଟକଚଣ୍ଡୀ,କଟକ-୯*

# ଜାତୀୟ ଜାଗରଣରେ କବି ବାଞ୍ଛାନିଧି

● ଅଧ୍ୟାପକ ଶାନ୍ତନୁ କୁମାର ମହାନ୍ତି

ସ୍ୱାଧୀନତା ମିଳିନାହିଁ । କେବେ ମିଳିବ ଜଣାନାହିଁ । ଦୁର୍ଦ୍ଧର୍ଷ ଫିରିଙ୍ଗିର ଉଦ୍ଧତ ନିଶାଣ ଫରଫର ଉଡୁଛି । ବାଜିଆଡ଼େ ଗୁଳିଗୋଳା, ବୋମା ଓ ବନ୍ଧୁକ । ଜାତୀୟ ଜୀବନର ପରିଚୟ ଖୋଜି ବାହାର କରିବା କଷ୍ଟକର ହୋଇପଡୁଛି । ଜାତୀୟ ଭାବନା କ'ଣ ବୋଲି ଲୋକେ ଜାଣୁ ନାହାଁନ୍ତି । 'ବିଦ୍ରୋହ, ଶବ୍ଦ ଉଚ୍ଚାରଣ କରିବା ବିସ୍ମୟକର । ସେହି ସମୟରେ କବି କହୁଛନ୍ତି, 'ସତ୍ୟରେ ଭାରତ ସ୍ୱାଧୀନ'' । ଦେଶବାସୀଙ୍କୁ ଡାକରା ଦେଉଛନ୍ତି-ଡ଼ରନାହିଁ କାଲି ସ୍ୱାଧୀନତା ମିଳିବ ।

ସ୍ୱରାଜ୍ୟ ସ୍ୱରୂପ ବେଗେ ଆସ ଚାଲିରେ
ସ୍ୱାଧୀନ ହେବା ଆମେ ହେଇପରା କାଲିରେ ।

କିଏ ସେହି କ୍ରାନ୍ତିଦର୍ଶୀ କବି ? କାହାର ସେ ମନୋ'ବାଞ୍ଛା' ପୁଣି କାହା ହୃଦୟର 'ନିଧି' ? ଏକଥା ଜାଣିବାକୁ ହେଲେ ଫେରି ଯିବାକୁ ହେବ ଉତ୍କଳ ଭୂଖଣ୍ଡର ଏକ ସମୃଦ୍ଧ କୁଳିଆଗାଁ ଗଜମଲ୍ଲୁ, ଯେଉଁଠି ଜନ୍ମ ନେଇଥିଲେ ସେ । ୧୮୯୭ ମସିହାର ଏମିତି ଏକ ଲୋହିତ ଲଗ୍ନରେ ଜନ୍ମ ହୋଇଥିଲେ ଯେ ରକ୍ତରେ ରକ୍ତରେ ଫୁଟି ଉଠୁଥିଲା ଉଦାତ୍ତ ଉଜ୍ଜ୍ୱଳ କବିତାର ଉଦ୍‌ଗୀରଣ । ଦେଶପ୍ରେମ ଯଦି କ'ଣ ଜାଣିବାର କଥା,ତେବେ ଜାତୀୟ କବି ବାଞ୍ଛାନିଧିଙ୍କୁ ପଢ଼ । ହୃଦୟରୁ ସ୍ପନ୍ଦନକୁ ହୁଏତ ଅଲଗା କରାଯାଇ ପାରେ; କିନ୍ତୁ ବାଞ୍ଛାନିଧି ମହାନ୍ତିଙ୍କଠାରୁ ଜାତିପ୍ରେମକୁ ନୁହେଁ । ସେ ଗଣକବି, ଚାରଣ କବି, ବିପ୍ଳବୀ କବି, ଜାତୀୟ କବି ବା ଆଉ କି କବି ହିସାବରେ ପରିଚିତ ହୁଅନ୍ତୁ ନା କାହିଁକି, ଆଉ କିଛି ହୋଇ ନଥିଲେ ସେ କେବଳ କବିଟିଏ ହୋଇଥାନ୍ତେ ଏବଂ କହିଥାନ୍ତେ-

ମୋର ଭଙ୍ଗା କୁଡ଼ିଆରେ ଭଙ୍ଗା ପରାଣରେ
ଭଙ୍ଗା କବିତାକୁ ଯୋଉଥିଲି
ମୋର ଭଙ୍ଗା ଜୀବନକୁ କବିତା ଡଙ୍ଗାରେ
ଉପାଇ ନେବାକୁ ଲୋଡୁଥିଲି ।

କବିଟିଏ ଯାହା ଖୋଜେ ତାହା ପ୍ରେରଣା । ସେ ଚାହେଁ, ନଥାଉ ସାଂସାରିକ ଜଞ୍ଜାଳ, ନିନ୍ଦୁକମାନଙ୍କ ଦ୍ୱାରା ମାନସିକ ନିର୍ଯ୍ୟାତନା କିମ୍ବା ମଣିଷର ଶିକୁଳି । ସେ କେବଳ କବିତା ଲେଖି ଚାଲିଥାଉ, ଜୀବନ ସଙ୍ଗୀତ ଗାଇ ଚାଲିଥାଉ । ହେଲେ 'ଜୀବନ ଗୋଟିକେ ଜଞ୍ଜାଳ କୋଟିଏ' । ଭଙ୍ଗା ଡଙ୍ଗା ଧରି ଅକୂଳ ପାରାବାରକୁ ପାରିହେବା ନିମିତ୍ତ ବାଞ୍ଛାନିଧି ମହାପ୍ରଭୁ ଜଗନ୍ନାଥଙ୍କୁ ଲୋଡ଼ିଛନ୍ତି । ଉତ୍କଳ ଜନନୀଙ୍କୁ ବନ୍ଦାପନା କରିଛନ୍ତି-

ହେ ମା ଉତ୍କଳ ଜୟ ମା' ବନ୍ଦେ
ବନ୍ଦେ ଜନନୀ ଗୋ ପଦାରବିନ୍ଦେ ।

ରାଧାନାଥ ରାୟ, ଗଙ୍ଗାଧର ମେହେର, ଫକୀର ମୋହନ ସେନାପତି, ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ମଧୁସୂଦନ ରାଓ, ଗୋଦାବରୀଶ ମହାପାତ୍ର, ଲକ୍ଷ୍ମୀକାନ୍ତ ମହାପାତ୍ର, ଚିନ୍ତାମଣି ମହାନ୍ତି ପ୍ରଭୃତି ଜାତୀୟବାଦୀ କବିମାନେ ଉତ୍କଳ ଜନନୀର ପଦବନ୍ଦନା କରିଯାଇଛନ୍ତି । ବାଞ୍ଛାନିଧି ଥିଲେ, ସେଇ ପରମ୍ପରାର ପୂଜାରୀ । ସେତେବେଳକୁ ଉତ୍କଳ ଜନନୀ ଛିନ୍ନମସ୍ତା, ଖଣ୍ଡିତ କଳେବରା । ଭାଷାଭିତ୍ତିରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମିତ୍ତ ରାଜ୍ୟବ୍ୟାପୀ ଆନ୍ଦୋଳନ । ଏହିଭଳି ଏକ ଚରମ ମୁହୂର୍ତ୍ତରେ ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ସ୍ୱାଧୀନତା ଆନ୍ଦୋଳନ ତେଜି ଉଠିଲା । ଓଡ଼ିଶାର ନେତୃବର୍ଗ ସେଥିରେ ସାମିଲ ହେବା ଦ୍ୱାରା ଓଡ଼ିଆ ଭାଷା ଆନ୍ଦୋଳନ ଧୂମେଇ ଗଲା । ଏସବୁକୁ ଲକ୍ଷ୍ୟକରି ଦେଶ ମିଶ୍ରଣ ଆନ୍ଦୋଳନ ବେଳେ ବାଞ୍ଛାନିଧି ଗାନ କଲେ-

କି ହେବ ଏ ମୁଣ୍ଡକଟା ଦେଶକୁ ଘେନି
ମୁଣ୍ଡକଟା, ଗୋଡ଼କଟା ପଙ୍ଗୁକୁ ଘେନି ।
ମୋ ଜନନୀ କି ସୁନ୍ଦର ସିଂହଭୂମି ତା'ର ଶିର
ମେଦିନୀପୁର ମଞ୍ଜୁଷା ପୟର ବେନି
ଟିକାଲି ତା ଅଙ୍ଗଟୀକା
ସପ୍ତର ତାରୁ ଛିଟିକା
ଫୁଲଝର ଫୁଲଝରା ସୁଷମା ବେଣୀ ।

ବାଞ୍ଛାନିଧି ଓଡ଼ିଶା ପ୍ରଦେଶର ନବ ଜନ୍ମ ଦେଖିବାକୁ ବଞ୍ଚିଥିଲେ । ଏହା ତାଙ୍କ ଭାଗ୍ୟରେ ଥିଲା । ୧୯୩୬ ମସିହାରେ ସ୍ୱତନ୍ତ୍ର ପ୍ରଦେଶଟିଏ ଆମକୁ ମିଳିଲା ସତ; କିନ୍ତୁ ରହିଗଲା ଟିକାଲି, ଫୁଲଝର, ସିଂହଭୂମି, ଖଡ଼େଇକଲା, ଖରସୁଆଁ, ମଞ୍ଜୁଷା, ବସ୍ତର, ମେଦିନୀପୁର ପ୍ରଭୃତି ଅଞ୍ଚଳ, ଯାହାକୁ ପାଇବା ପାଇଁ ଓଡ଼ିଆମାନେ ପ୍ରାଣପାତ ସଂଗ୍ରାମ କରିଥିଲେ । ଅନ୍ୟମାନଙ୍କ ପରି ବାଞ୍ଛାନିଧି ପୂର୍ଣ୍ଣାଙ୍ଗ ଉତ୍କଳର ଯେଉଁ ସ୍ୱପ୍ନ ଦେଖିଥିଲେ ତାହା ଅଧୁରା ରହିଗଲା ।

ବାଞ୍ଛାନିଧି ଥିଲେ ଏକ ସମର୍ପିତ ପ୍ରାଣ । ସାହିତ୍ୟସେବା, ସଙ୍ଗୀତସେବା ଓ ଦେଶ ସେବାରେ ସେ ନିଜକୁ ନିୟୋଜିତ କରିଥିଲେ । ତାଙ୍କ ଶିରା ପ୍ରଶିରାରେ ଦେଶପ୍ରୀତିର ଦୁଇ ମୁଖ୍ୟଧାରା ଉତ୍କଳୀୟତା ଓ ଭାରତୀୟତା ଗଙ୍ଗାଯମୁନା ସଦୃଶ ପ୍ରବାହିତ ହେଉଥିଲା । ସ୍ୱତନ୍ତ୍ର ପ୍ରଦେଶ ବିନା ଓଡ଼ିଆତ୍ୱର କିଛି ଅର୍ଥନାହିଁ । ସ୍ୱରାଜ୍ୟ ବିହୁନେ ବଞ୍ଚିବାର କିଛି ମାନେ ହୁଏନା ।

ସ୍ୱରାଜ ବିହୁନେ ନାହିଁ ପ୍ରତିକାର ଆଶା
ସ୍ୱରାଜ ବିହୁନେ ନ ଘୁଞ୍ଚିବ ଦୁଃଖ ନିଶା ।

ମଧୁବାବୁ, ଗୋପବନ୍ଧୁ ଥିଲେ ଉତ୍କଳୀୟ ପ୍ରାଣତାର ଉଦ୍‌ଗାତା, କିନ୍ତୁ ବାଞ୍ଛାନିଧି ଥିଲେ ଜାତୀୟତା ମନ୍ତ୍ରରେ ଉଦ୍‌ବୁଦ୍ଧ ସ୍ୱାଧୀନଚେତା ଆତ୍ମାଟିଏ । ଭାରତ ସ୍ୱାଧୀନ ହୋଇ ନଥିବାରୁ ତାଙ୍କ ଜାତିପ୍ରାଣ ଅସମାନ ହୋଇଉଠିଛି । ଫଳରେ ସ୍ୱଦେଶପ୍ରୀତିରୁ ଉଦ୍ଭବ ବିଦ୍ରୋହାତ୍ମକ ଭାବଧାରା ତାଙ୍କ ପଦ୍ୟାବଳୀକୁ ମୁଖରିତ କରିଛି । ତାଙ୍କ ମତରେ ହାରି, ଗୁହାରି କଲେ ସ୍ୱାଧୀନତା ମିଳେନା । ମନ୍ତ୍ରର ସାଧନ ଅବା ଶରୀର

ପାଡନ' ଭାରତୀୟମାନଙ୍କର ଧ୍ୟେୟ ହେବା ଉଚିତ୍ । ଏକତା ନହିଲେ ସ୍ୱାଧୀନତା ସଂଗ୍ରାମ ନିଷ୍ଫଳ । ତେଣୁ

ଜୟଜୟ ହିନ୍ଦୁ ମୁସଲମାନ
ଶିଖ ପାର୍ସି ଜୈନ ବୌଦ୍ଧ ଇହୁଦି ଖ୍ରୀଷ୍ଟିୟାନ
ନକରି କାହାରି ଭୟ ଗାଅ ଜନ୍ମ ଭୂମିର ଜୟ
ସ୍ୱାଧୀନତା ବୈଜୟନ୍ତୀ ଉଡ଼ାରେ ଅବନାମୟ
ଗର୍ଜିଉଠୁ ସିଂହନାଦେ ସୁପ୍ତ ହିନ୍ଦୁସ୍ତାନ ।

ଜନ୍ମଭୂମିର ଜୟଗାନ କରିବାଠାରୁ ବଡ଼କଥା ଦୁନିଆରେ କିଛି ନାହିଁ । ତେଣୁ ଯିଏ ଯେଉଁଠି ଅଛି, ଭାରତର ଜୟଗାନ କର । ହିନ୍ଦୁସ୍ଥାନୀମାନଙ୍କୁ ସେ ସୁପ୍ତସିଂହ ସହିତ ତୁଳନା କରିଛନ୍ତି । ସୁପ୍ତ ସିଂହ ଯେତେବେଳେ ଜାଗିଉଠେ, ତା'ଠାରେ ଶତସିଂହର ପରାକ୍ରମ ଦେଖାଯାଏ । ଏହିଭଳି ଉତ୍ତପ୍ତ ଜାତୀୟତା ଚେତନା ଭାରତୀୟମାନଙ୍କୁ ଅନୁପ୍ରାଣିତ କରୁ ଏହାହିଁ ତାଙ୍କର କାମନା । କାରଣ ଇଂରେଜ ଶାସନ ବିରୁଦ୍ଧରେ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ପ୍ରତିବାଦ କରିବାର ସାହସ ତାଙ୍କର ଥିଲା । ଫିରିଙ୍ଗି ଆକ୍ରମଣର ପ୍ରତ୍ୟୁତ୍ତର ଓଡ଼ିଆ କିପରି ଦେଇପାରେ, ଏହା ବାଞ୍ଛାନିଧି କହିବା ପାଇଁ ସମର୍ଥ । ଜାତୀୟ ଜୀବନର ସ୍ୱାଧୀନତା ସଂଗ୍ରାମ ପାଇଁ ଓଡ଼ିଆ କିପରି ସଚେତନ ଓ ଆଗଭର, ତାହା ପ୍ରକାଶ କରିଯାଇଛନ୍ତି ସେ । ଭାରତ ଆମ ଦେଶ, ଓଡ଼ିଶା ଆମ ରାଜ୍ୟ– ଏହି ଚିନ୍ତାଧାରା ତାଙ୍କୁ ସର୍ବଦା ରସସିକ୍ତ କରିଛି । ତାଙ୍କ ଜନ୍ମଭୂମି ଉତ୍କଳ ସତରେ କେତେ ଭାଗ୍ୟବାନ, ଏମିତି ଏକ ଦେଶଭକ୍ତ ଜାତୀୟ କବିଙ୍କୁ ପାଇ । ସେଠାରେ ସେ ଏତେ ପ୍ରସିଦ୍ଧ ହୋଇ ଯାଇଥିଲେ ଯେ ତାଙ୍କ ନାମରେ ସ୍ୱତନ୍ତ୍ର ଏକ ' 'ବାଞ୍ଛାନିଧି ଦଳ' ଗଠନ କରାଯାଇ ସମାନ୍ତରାଳ ସରକାର ଚାଲିଥିଲା । ଉତ୍କଳ ଜାଗରଣ ଏବଂ ବାଞ୍ଛାନିଧିଙ୍କ ଜାତି ପ୍ରାଣକୁ ଲକ୍ଷ୍ୟ କରି ଏକଦା ଉତ୍କଳମଣି ଗୋପବନ୍ଧୁ ଗାଇଥିଲେ–

ଦେଶ ଜାତି ପ୍ରୀତି ସରସ୍ୱତୀ ନଦୀ
ବହୁଛି ଉତ୍କଳେ ଶତମାର୍ଗ ଭେଦି
ଦେଶାତ୍ମବୋଧର ବାରୁ ଗନ୍ତାଘର
ଉତ୍କଳ ସୁରମ୍ୟ ଜାତୀୟ ନଗର ।

ଉତ୍କର୍ଷ ଉତ୍ସ ଏକ ପଦ୍ଧିତ୍ୟ ଏଟି । 'ବାଞ୍ଛାନିଧି ପଦ୍ୟାବଳୀରେ ବାଲେଶ୍ୱର ଜୋଲେକ୍ଟେଡ୍ ବଡ଼ିଠାରୁ ବାଲେଶ୍ୱର ଜିଲ୍ଲା ସମ୍ମିଳନୀ ପର୍ଯ୍ୟନ୍ତ-ପଞ୍ଜାବ ହତ୍ୟାକାଣ୍ଡଠାରୁ କନିକା ଅତ୍ୟାଚାର, ଶ୍ରୀଜଙ୍ଗ କାହାଣୀ ପର୍ଯ୍ୟନ୍ତ ସମସ୍ତ ବିଷୟବସ୍ତୁ ତାଙ୍କ କବିତାରେ ସ୍ଥାନିତ । ବାଞ୍ଛାନିଧିଙ୍କୁ ସ୍ମରଣ କରି ବିପ୍ଳବୀ ଚକ୍ରଧର ବେହେରା ଲେଖିଛନ୍ତି–

ବାଞ୍ଛାନିଧିବାବୁ ଉତ୍କଳ ସନ୍ତାନ
ଦୁଃଖିନୀ କନିକା ସହୋଦର ପ୍ରାଣ ।
ଦେଖିଲେ ସାକ୍ଷାତେ ତୋର ଏ ଯାତନା
ଗାଇଲେ ଦୁଃଖିନୀ କନିକା ବେଦନା

ଉତ୍କଳ ସମାଜେ କଟକ ନଗରେ
ସ୍ମରି ସେ ଗୀତିକା ଆଜି ପ୍ରାଣ ଥରେ
ଲବଣ ଆଇନ ଭାଙ୍ଗି ଏବେ ଭାଇ
ଗଲୁ କାରାଗାରେ ପଛକୁ ନଚାହିଁ ।

ଅସହଯୋଗ ଆନ୍ଦୋଳନ ପରଠାରୁ ଭାରତୀୟ ଜାତୀୟତାର ସ୍ଫୁଲିଙ୍ଗ କ୍ରମେ ଘନୀଭୂତ ହୋଇ ଉଠୁଥିଲା । ଉତ୍କଳରେ ଏହି ଉଗ୍ର-ଜାତୀୟତା ବହ୍ନିର ଅଗ୍ନି ସଂଯୋଜକ ଥିଲେ ବାଞ୍ଛାନିଧି । ସେଥିପାଇଁ ସେ ସଭାସମିତି ବ୍ୟତୀତ ଯାତ୍ରାଦଳକୁ ଏକ ମାଧ୍ୟମ ରୂପେ ବାଛି ନେଇଥିଲେ । ଭୈରବୀ, ପୁରବୀ, ଆଶାବରୀ, ମହ୍ଲାର, ସିନ୍ଧୁ, ଖମାଜ ପ୍ରଭୃତି ରାଗରେ ରଚିତ ତାଙ୍କର ଅଧିକାଂଶ ଗୀତି କବିତା ବିଭିନ୍ନ ସଭା, ସମ୍ମିଳନୀ, ଅଧିବେଶନ, ସମ୍ବର୍ଦ୍ଧନା, ଶ୍ରାଦ୍ଧ ଉତ୍ସବ, ଯାତ୍ରାଭିନୟ ନିମିତ୍ତ ଅଭିପ୍ରେତ । ପ୍ରକୃତ ସ୍ୱର, ତାଳରେ ଗାନ କଲେ ତାହାର ମାଧୁର୍ଯ୍ୟ ଏବଂ ଚମତ୍କାରିତା ଉପଲବ୍ଧି କରିହେବ ।

ବାଲେଶ୍ୱର, ଉତ୍କଳର ଜାତୀୟତା କ୍ଷେତ୍ରକୁ ପ୍ରଶସ୍ତ ଏବଂ ଉର୍ବର କରିବାରେ ହରେକୃଷ୍ଣ ମହତାବ, ଲକ୍ଷ୍ମୀକାନ୍ତ ମହାପାତ୍ର, ବାଞ୍ଛାନିଧି ମହାନ୍ତି ପ୍ରଭୃତି ମନୀଷିମାନେ ଆମର ନମସ୍ୟ । ବିଶେଷ କରି ବାଞ୍ଛାନିଧିଙ୍କ ପଦ୍ୟାବଳୀଗୁଡ଼ିକ ସଙ୍ଗୀତ ଆକାରରେ ଗାନ କରାଯାଉଥିବାରୁ ଜନଜୀବନରେ ସେଗୁଡ଼ିକର ଏକ ସ୍ୱତନ୍ତ୍ର ପ୍ରଭାବ ଥିଲା । କବି ଯେ କେବଳ କଳ୍ପନାବିଳାସୀ ନୁହଁନ୍ତି, ଜାତି ସଙ୍ଗଠନରେ କବିଙ୍କର କୃତି ଯେ ଏକ ଶକ୍ତିଶାଳୀ ଅସ୍ତ୍ର, ସମାଜ ପ୍ରତି ସଚେତନତା ଯେ କବିଙ୍କର ବଳିଷ୍ଠ ବ୍ୟକ୍ତିତ୍ୱର ପରିଚାୟକ, ଏହା ଅନ୍ୟ ଅନେକ ବିଶିଷ୍ଟ କବିଙ୍କ ପରି ସ୍ୱର୍ଗତ ବାଞ୍ଛାନିଧିଙ୍କ କବିତାବଳୀରୁ ମଧ୍ୟ ପ୍ରତିପନ୍ନ ହୁଏ ।"(ଗୌରାକୁମାର ବ୍ରହ୍ମା)

ଗୋପବନ୍ଧୁ ଯଥାର୍ଥରେ କହିଛନ୍ତି–

ଜାତୀୟ ମମତା ବିଶ୍ୱଜନ ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି ।

"ବିଶ୍ୱପ୍ରୀତି ହିଁ ଓଡ଼ିଆର ଜାତୀୟତା; ଓଡ଼ିଆର ମନୁଷ୍ୟତା । ଓଡ଼ିଆର ଏ ଜାତୀୟତା, ଦେଶାନୁରାଗ କେବେ ଜଡ଼, ନିର୍ଜୀବ, ନୀରସ ନୁହେଁ । ରାଜ୍ୟଲାଭ ବା ରକ୍ତପାତରେ ଏହାର ପ୍ରତିଷ୍ଠା ନୁହେଁ, ଗଭୀର ଧର୍ମଭାବ ଏବଂ ଦୃଢ଼ ବିଶ୍ୱାସ ଏହାର ଭିତ୍ତିଭୂମି । ସାମ୍ୟ, ମୈତ୍ରୀ, ସ୍ୱାଧୀନତା ଏହାର ବିଗ୍ରହ" । ଏହିପରି ଉତ୍କଳୀୟତା ଏବଂ ସ୍ୱଦେଶବତ୍ସଳତାର ପ୍ରଚଣ୍ଡ ପରିଚୟ ବାଞ୍ଛାନିଧିଙ୍କଠାରେ ଦେଖିବାକୁ ମିଳେ । ଡ଼ଃ ଜଗନ୍ନାଥ ପଟ୍ଟନାୟକଙ୍କ ଭାଷାରେ, ସେ ହେଉଛନ୍ତି 'ଜାତୀୟତା ତରଙ୍ଗର ରୂପକାର' ।

ସ୍ୱାଧୀନତାର ସ୍ୱପ୍ନ ବହନ୍ତରେ ଥିଲାବେଳେ ସେ ଜାତୀୟ ଜାଗରଣର ସ୍ୱପ୍ନ ଦେଖିଥିଲେ । ବିଦେଶୀ ଶାସନ କବଳରୁ ମୁକ୍ତି ପାଇଁ ଜାତିପ୍ରେମ ବହ୍ନି ପ୍ରଜ୍ୱଳିତ କରିଥିଲେ । ପରାଧୀନ ସୁପ୍ତ ଭାରତବର୍ଷରେ ଜାତୀୟତାର ସଙ୍କେତ ପ୍ରଦାନ କରିଥିଲେ ।

ଚାନ୍ଦବାଲି-୭୫୬୧୩୩

• • •

# ଢେଙ୍କାନାଳ ଆନ୍ଦୋଳନ ଓ ବୀର ବୈଷ୍ଣବ ପଟ୍ଟନାୟକ

● ଡକ୍ଟର ଉଦ୍ଧବ ଚରଣ ନାୟକ

ଢେଙ୍କାନାଳ ଗଡ଼ଜାତରେ ଗଣଆନ୍ଦୋଳନ ସାରା ଦେଶରେ ସେତେବେଳେ ଚହଳ ସୃଷ୍ଟି କରିଥିଲା । ଢେଙ୍କାନାଳ ରାଜାଙ୍କର ମନମୁଖୀ ଅତ୍ୟାଚାର ସଙ୍ଗକୁ କର ଭାର ବୃଦ୍ଧି ଓ ବେଠିରେ ଯତନ ନଗର ନିର୍ମାଣ ଥିଲା ଗଣଆନ୍ଦୋଳନର ମୁଖ୍ୟ ଘଟଣା । ୧୯୨୬ ମସିହାରେ ରାଜା ଶଙ୍କର ପ୍ରତାପ ମହୀନ୍ଦ୍ର ବାହାଦୂର ଢେଙ୍କାନାଳ ରାଜଗାଦିରେ ବସିଲେ । ସେମାନେ ଥିଲେ ଚାରିଭାଇ । ସବୁଭାଇମାନଙ୍କୁ ଶାନ୍ତି ଓ ଆନନ୍ଦରେ ରଖିବାକୁ ଯାଇ ରାଜା ଶଙ୍କର ପ୍ରତାପ କର ଭାର ବଢ଼ାଇଲେ । ବେଠିରେ ସାନଭାଇ ପଟ୍ଟାୟତଙ୍କ ରହିବା ନିମନ୍ତେ 'ଯତନ ନଗର' ତିଆରି ଆରମ୍ଭ କଲେ ।

ଭାରତବର୍ଷ ସ୍ୱାଧୀନତା ସଂଗ୍ରାମରେ ପହୁଅାଏ ଉଠୁଥାଏ । ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ । ତାପରେ ୧୯୩୦ରେ ଲବଣ ସତ୍ୟାଗ୍ରହ । ୧୯୩୧ ବେଳକୁ ଲବଣ ସତ୍ୟାଗ୍ରହର ଉଷ୍ଣତା ଥଣ୍ଡା ହୋଇଗଲାଏ । ଏତିକିବେଳେ ସହୀଦ୍ ଭଗତ୍ ସିଂହକୁ ବ୍ରିଟିଶ ସରକାର ଫାଶୀରେ ଚଢ଼ାଇଲା । ଭାରତର ପ୍ରାୟ ଛଅଶହ ଗଡ଼ଜାତର ଶାସକ ରାଜାମାନେ ବ୍ରିଟିଶ ସରକାରର ପୋଷା କୁକୁର ଭଳି ରହି ତାହାରି ବଳରେ ବଳୀୟାନ ହୋଇଥିଲେ । ଫଳରେ ସେମାନେ ନିଜ ନିଜ ରାଜ୍ୟରେ ମନମୁଖୀ ଶାସନ କରୁଥିଲେ । ଓଡ଼ିଶାର ଗଡ଼ଜାତମାନଙ୍କରେ ଅବସ୍ଥା ବି ଥିଲା ଠିକ୍ ସେଇଆ । ଢେଙ୍କାନାଳୀ ଶାସନର କଥା ବର୍ଣ୍ଣନା କରିବାକୁ ଭାଷା ନାହିଁ । ସେ ଅତ୍ୟାଚାରର କରୁଣ କାହାଣୀ ଶୁଣିଲେ ଦେହ ଶୀତେଇ ଉଠିବ ।

ଏହାର ପ୍ରତିବାଦରେ ଢେଙ୍କାନାଳ ହାଇସ୍କୁଲର କେତେକ ଛାତ୍ର ସଙ୍ଗଠିତ ହେଲେ । ସେତେବେଳେ ଅମଲାମାନେ ରାଜା ଅତ୍ୟାଚାରରେ ଶିକାର ହେଉ ଥାଆନ୍ତି । ସେଥିରୁ ରକ୍ଷା ପାଇବା ନିମନ୍ତେ ସେମାନେ ପିଲାଙ୍କୁ ସାହାଯ୍ୟ କରୁଥାଆନ୍ତି । ୧୯୩୧ ମସିହାରେ ନବମ ଶ୍ରେଣୀରେ ପଢ଼ୁଥିଲେ ଶ୍ରୀବୈଷ୍ଣବ ଚରଣ ପଟ୍ଟନାୟକ, ସ୍ୱର୍ଗତ ପ୍ରଫେସର ଦୟାନିଧି ପଟ୍ଟନାୟକ ଓ ଶ୍ରୀ ଗତିକୃଷ୍ଣ ଗଜ । ସ୍ୱର୍ଗତ ହରମୋହନ ପଟ୍ଟନାୟକ ଏକାଦଶ ଶ୍ରେଣୀର ଛାତ୍ର । ଏମାନେ ସମସ୍ତେ ଥାଆନ୍ତି ଛାତ୍ର ସଙ୍ଗଠନର ସକ୍ରିୟ ସଭ୍ୟ । ଢେଙ୍କାନାଳ ରାଜା ଏ ସମସ୍ତ ଘଟଣା ଜାଣିପାରି ଛାତ୍ର ସଙ୍ଗଠନକୁ ଭାଙ୍ଗି ଦେବା ନିମନ୍ତେ ଚେଷ୍ଟା କରି ପିଲାଙ୍କୁ ରଷ୍ଟିକେଟ କରିବା ପାଇଁ ଆଦେଶ ଦେଲେ ।

ସେତେବେଳେ ଢେଙ୍କାନାଳ ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ରାଜେନ୍ଦ୍ର ଲାଲ ମିତ୍ର ଓ ସହକାରୀ ପ୍ରଧାନ ଶିକ୍ଷକ ମନମୋହନ ଘୋଷ । ଅନ୍ୟ ଶିକ୍ଷକମାନେ ହେଲେ ବାସୁଦେବ ମହାପାତ୍ର, ରମେଶଚନ୍ଦ୍ର ପଟ୍ଟନାୟକ, ହରିହର ମହାପାତ୍ର ଓ ରଘୁନାଥ କର ପ୍ରମୁଖ । ଏହି ଶିକ୍ଷକମାନେ ପିଲାଙ୍କୁ ସହାୟତା ପ୍ରଦାନ କରି ସେମାନଙ୍କୁ ଟ୍ରାନ୍ସଫର ସାର୍ଟିଫିକେଟ ଦେଇ ବିଦା କଲେ । ଦୟାନିଧି ପଟ୍ଟନାୟକ କଟକ ଆସି ପ୍ୟାରୀମୋହନ ଏକାଡ଼େମୀରେ ପଢ଼ିଲେ । ଗତିକୃଷ୍ଣ ଗଜ କଟକ ଆସିଲେ । ହରମୋହନ ପଟ୍ଟନାୟକ ଖୋର୍ଦ୍ଧା ଚାଲି ଆସି ସେଠାରେ ଓଲସିଂହଠାରେ ପଢ଼ିଲେ । ବାକି ରହିଗଲେ ବୈଷ୍ଣବ ପଟ୍ଟନାୟକ । ସେ ଗରିବ ପିଲା । ଅନ୍ୟ କେଉଁ ଆଡ଼େ ଯାଇ ପାଠ ପଢ଼ିବାରେ ତାଙ୍କ ପିତାଙ୍କର ସମ୍ବଳ ନାହିଁ । ଖୁବ୍ ମେଧାବୀ ଛାତ୍ର ଥିଲେ ସିଏ । ମାଇନର ବୃତ୍ତି ପାଇଥିଲେ । ପଞ୍ଚମ ଶ୍ରେଣୀରେ ସାରା ଢେଙ୍କାନାଳରେ ପ୍ରଥମ ହୋଇ ବୃତ୍ତି ପାଇଥିଲେ । ସେ ଢେଙ୍କାନାଳ ସହରରେ ୧୯୧୪ ମସିହା ଏପ୍ରିଲ ୨୯ ତାରିଖ ଦିନ ଜନ୍ମ ହୋଇଥିଲେ । ବାପା ସାଧୁ ଚରଣ ପଟ୍ଟନାୟକ ଥିଲେ ଜଣେ ସାଧାରଣ ମୋହରିର ।

ଶେଷରେ ବୈଷ୍ଣବ ବାବୁ ବି.ଏନ୍.ଆର କମ୍ପାନୀରେ ରେଳବାଇ ରଙ୍ଗ ମିସ୍ତ୍ରୀ ଭାବରେ ଚାକିରି କଲେ । ଖ୍ରୀଷ୍ଟମାନଙ୍କରେ ନମ୍ବର ଲେଖିବା ଥିଲା ତାଙ୍କର କାମ । କିନ୍ତୁ ସେ ଭଲ ଇଂରାଜୀ ଲେଖି ପାରୁଥିବାରୁ କମ୍ପାନୀ ତରଫରୁ ତାଙ୍କୁ କିରାଣୀ କାମ କରିବା ନିମନ୍ତେ ସୁବିଧା ଦିଆଗଲା, ଯଦିଓ ସେ ରଙ୍ଗ ମିସ୍ତ୍ରୀ ଭାବରେ ନିଯୁକ୍ତି ପାଇଥିଲେ । ତାପୂର୍ବରୁ ପାଠ ପଢ଼ିଲାବେଳେ ବୈଷ୍ଣବ ବାବୁ ମଝିରେ ମଝିରେ ଢେଙ୍କାନାଳରୁ କଟକ ଚାଲିଆସି ବାଖରାବାଦଠାରେ ନବବାବୁ ଓ ମାଳତୀଦେବୀଙ୍କୁ ଭେଟି ତାଙ୍କ ପ୍ରରୋଚନାରେ କଟକର ମଦଦୋକାନ ଆଗରେ ପିକେଟିଂ କରୁଥିଲେ । ଏକଥା ତାଙ୍କ ବଡ଼ଭାଇ ଜାଣିପାରି କଟକ ଯାଇ ତାଙ୍କୁ ଫେରାଇ ଆଣି ସ୍କୁଲରେ ଛାଡ଼ି ଦେଇଥିଲେ । ଏସବୁ କଥା ରାଜାଙ୍କୁ କର୍ଣ୍ଣଗୋଚର ହେଉଥାଏ । ତେଣୁ ବୈଷ୍ଣବ ବାବୁଙ୍କୁ ସ୍କୁଲରୁ ତଡ଼ିବା ପାଇଁ ରାଜା ବିଶେଷ ତତ୍ପର ଥିଲେ । ରଙ୍ଗମିସ୍ତ୍ରୀ ଭାବରେ ଚାକିରି ପାଇବାରୁ ବୈଷ୍ଣବ ବାବୁଙ୍କୁ ରେଳବାଇ ତରଫରୁ ଖଣ୍ଡିଏ ପାସ୍ ମିଳିଥିଲା । ସେହି ପାସ୍ ବଳରେ ଯେକୌଣସି ଗାଡ଼ିରେ ନିର୍ଘଣ୍ଟିରୁ ତାଳଚେର ଭିତରେ ଯେକୌଣସି ଜାଗାକୁ ଯିବା ଆସିବାର ସୁବିଧା ତାଙ୍କୁ ମିଳିଥିଲା । ଫଳରେ ସେ ମଝିରେ କଟକ ଯାଇ ଭଗବତୀ ବାବୁ, ନବବାବୁ ଓ ମାଳତୀ ଚୌଧୁରୀଙ୍କୁ ଭେଟୁଥିଲେ । କୃଷକ ପତ୍ରିକା ଆଣି ଢେଙ୍କାନାଳର ଗାଁ ଗହଳିରେ ବାଣ୍ଟୁଥିଲେ । ଏହି କୃଷକ ପତ୍ରିକାରେ ସେତେବେଳେ ଗଡ଼ଜାତ ଅତ୍ୟାଚାର କଥା ଭଲଭାବରେ ପ୍ରକାଶ ପାଉଥିଲା ।

ଢେଙ୍କାନାଳରେ ରାଜା ଲୋକଙ୍କୁ ବେଠି ଖଟାଇ ଯତନ ନଗର ତିଆରି କରିବାରେ ବ୍ୟସ୍ତ । ଏହି ସମୟରେ ବୈଷ୍ଣବବାବୁ ସମାଳି ହୋଇ ରହିପାରିଲେ ନାହିଁ । ଚାକିରି ଛାଡ଼ି ଦେଇ ଆନ୍ଦୋଳନକୁ ମୁଖ୍ୟ କାର୍ଯ୍ୟ ଭାବରେ ଧରିନେଲେ । ସୁଭାଷଚନ୍ଦ୍ର ବୋଷ ୧୯୩୮ ମସିହାରେ ହରିପୁର ସମ୍ମିଳନୀରେ କଂଗ୍ରେସ ସଭାପତି ଭାବରେ ନିର୍ବାଚିତ ହେଲେ । ସେ ଘୋଷଣା କଲେ ଯେ, ଗଡ଼ଜାତମାନଙ୍କରେ ହେଉଥିବା ନିର୍ମମ ଅତ୍ୟାଚାର ବିଷୟରେ କଂଗ୍ରେସ ତରଫରୁ ଦୃଢ଼ ମୁକାବିଲା କରାଯିବ । ଫଳରେ ବୈଷ୍ଣବ ବାବୁ ପ୍ରଜାମଣ୍ଡଳର ସହ ସମ୍ପାଦକ ହିସାବରେ ସୁଭାଷ

ନେତାଙ୍କ ପାଖକୁ ଢେଙ୍କାନାଳ ଅତ୍ୟାଚାର ବିଷୟରେ ଖଣ୍ଡିଏ ଟେଲିଗ୍ରାମ ପଠାଇଲେ । ଏହି ଟେଲିଗ୍ରାମର ବିଷୟବସ୍ତୁକୁ ଏନ୍.ଆର୍.ସ୍ୱାମୀ ଷ୍ଟେଟସ୍‌ମ୍ୟାନ୍ କାଗଜରେ ପ୍ରକାଶ କରିଦେଲେ । ଏହି ସମ୍ବାଦ ପ୍ରକାଶ ପାଇବା ପରେ ଓଡ଼ିଶା ସାରା ଚମକ ଖେଳିଗଲା । ଢେଙ୍କାନାଳ ପ୍ରଜାମଣ୍ଡଳ ହେଲା ଓଡ଼ିଶାର ପ୍ରଥମ ଓ ଭାରତର ଦ୍ୱିତୀୟ ପ୍ରଜାମଣ୍ଡଳ । ସଭାପତି ହେଲେ ହରମୋହନ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ ହେଲେ ସମ୍ପାଦକ ଆଉ ବୈଷ୍ଣବ ପଟ୍ଟନାୟକ ହେଲେ ସହ ସମ୍ପାଦକ । ପ୍ରଜାମଣ୍ଡଳ ଗୁପ୍ତଭାବରେ କାର୍ଯ୍ୟକଲା । ବୈଷ୍ଣବ ବାବୁ ଗାଁ ଗହଳିରେ ଲୁଚି ଛପି ସଙ୍ଗଠନ କରିବାରେ ବ୍ୟସ୍ତ ରହିଲେ । ଲକ୍ଷ୍ମୀଧର ସାହୁ ସାରା ଓଡ଼ିଶାରେ ମାଟ୍ରିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କଲେ । ସେ ଅଧିକ ପଢ଼ିବା ପାଇଁ କଟକ ଆସିଲେ । କଲେଜ ପଢ଼ା ସାରି ପୁଣି ଯାଇ ଢେଙ୍କାନାଳ ଆନ୍ଦୋଳନରେ ସାମିଲ ହେଲେ । ହେଲେ ତାଙ୍କର ଅକାଳ ବିୟୋଗ ଘଟିଲା ।

ଏହି ସମୟରେ ଢେଙ୍କାନାଳର ସର୍ଦ୍ଦାର ପଟେଲ ମହେଶଚନ୍ଦ୍ର ସୁବାହୁସିଂହ ଓ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଗ୍ରାମାଞ୍ଚଳ ସଙ୍ଗଠନରେ ଲିପ୍ତ ରହିଥିଲେ । ଶ୍ରୀକାନ୍ତ ରାଉତ ସ୍ୱେଚ୍ଛାସେବୀ ବାହିନୀର କ୍ୟାପ୍ଟେନ ଥିଲେ । ଏହିପରି ଭାବରେ ବର୍ଷ ବର୍ଷ ଧରି ଢେଙ୍କାନାଳରେ ଗୁପ୍ତ ସଙ୍ଗଠନ ଚାଲିଥାଏ । କଟକରେ ବାଳକୃଷ୍ଣ କରଙ୍କ ପ୍ରେସରେ କୃଷକ ପତ୍ରିକା ଛପା ହୋଇ ବାହାରିବା ବେଳକୁ ଚମକ ସୃଷ୍ଟି ହେଉଥାଏ । ଢେଙ୍କାନାଳ ଖବର ଖୁବ୍ ଜୋର୍‌ରେ ପ୍ରକାଶ ପାଉଥାଏ । ଏଣୁ ଢେଙ୍କାନାଳ ରାଜା ଲୋକ ଲଗାଇ କୃଷକ ପତ୍ରିକା କିଣି ନେଇ ପୋଡ଼ି ପକାଉଥିଲେ । ଫଳରେ କର୍ମୀମାନେ ଡାଲଟେଣ ଟ୍ରେନରେ କୃଷକ ପତ୍ରିକା ନେଇ ଯାଉଥିବା ବେଳେ ବାଟରେ ପକାଇ ପକାଇ ଯାଆନ୍ତି । ଫିଙ୍ଗିବା ଜାଗାରେ କର୍ମୀମାନେ ଲୁଚିକରି ଥାଆନ୍ତି । ସେମାନେ କୃଷକ କାଗଜକୁ ନେଇ ଗାଁ ଗାଁରେ ଲୋକଙ୍କ ଭିତରେ ବାଣ୍ଟନ୍ତି । ଏହିପରି ଆନ୍ଦୋଳନ ଚାଲିଥାଏ । କୃଷକ ପତ୍ରିକାରେ ଢେଙ୍କାନାଳ ଖବର ଖୁବ୍ ଜୋରଦାର ଭାବରେ ପ୍ରକାଶ ପାଉଥାଏ ।

୧୯୩୮ ମସିହା ସେପ୍ଟେମ୍ବର ୧୧ ତାରିଖରେ ଢେଙ୍କାନାଳର ପ୍ରଜାମଣ୍ଡଳ ସଭାପତି, ସମ୍ପାଦକ ପ୍ରଭୃତି ବାରଜଣଙ୍କୁ ଗିରଫ କରି ରାଜାର ଫଉଜ ଧରିନେଲେ । ଏହି ସମ୍ବାଦ ଚାରିଆଡ଼େ ଖେଳିଗଲା । ଚାରିଆଡୁ ହଜାର ହଜାର ଲୋକ ୧୨ ତାରିଖ ଦିନ ଆସି ଢେଙ୍କାନାଳ ଗଡ଼ରେ ହାଜର ହୋଇଗଲେ । ଢେଙ୍କାନାଳ ହାଟତୋଟା ଜନଗହଳିରେ ପରିପୂର୍ଣ୍ଣ । ଲୋକମାନଙ୍କ ପାଇଁ ଲୋକେ ନିଜେ ନିଜେ ଘେରିରୁ ଖାଦ୍ୟଶସ୍ୟ ଆଣୁ ଥାଆନ୍ତି, ସେକଥା କିଏ କହିବ ? ଲୋକେ ଆନ୍ଦୋଳନ କଲେ । ପୋଲିସ ବେଲ୍‌ଟ ମାଡ଼ରେ ସଂଗ୍ରାମୀ ନବୀନ ସ୍ୱାଇଁଙ୍କର ମୁଣ୍ଡ ଫାଟିଗଲା । ଲୋକଙ୍କୁ ଛତ୍ର ଭଙ୍ଗ କରିବା ପାଇଁ ପୋଲିସ ହିଂସା ଲୀଳା ଆରମ୍ଭ କଲା । ହାତୀରେ ବସି ବ୍ରେଫିଲଡ ସାହେବ ଗୁଳି ଫୁଟାଇଲେ । ଲୋକେ ବିଲବଣ ଡୋଟାମାଳ ଦେଇ ଛତ୍ରଭଙ୍ଗ କଲେ । ନିଜ ପ୍ରାଣକୁ ବଞ୍ଚାଇବାକୁ ଯାଇ ବିଲରୁ ଧାନ କୁଦାଟେ ଓପାଡ଼ି ଜଣେ ଲୋକ ଫୋପାଡ଼ିଲା ବ୍ରେଫିଲଡ୍ ସାହେବ ଉପରକୁ । ତାଙ୍କ ହାତରୁ ରାଜାର ଜୟ ତରବାରୀ ଖସିପଡ଼ିଲା । ସେ ବିଲ ଭିତରେ ମୁହଁମାଡ଼ି ପଡ଼ିଗଲେ । ଲୋକେ ତରବାରୀ ଧରି ପଳେଇ ଗଲେ । ରାଜାର ଲୋକେ ଛତ୍ରଭଙ୍ଗ ଦେଇ କିଏ କୁଆଡ଼େ ପଳାଇଗଲେ । ଲୋକେ ଶାନ୍ତିରେ ରେଳଷ୍ଟେସନରେ ସେଦିନ ଶୋଇଲେ । କିଏ ପାଖ ପଡ଼ିଆରେ ବି ଶୋଇଗଲେ । ଆନ୍ଦୋଳନକୁ ଚପାଇ ଦେବା ନିମନ୍ତେ ରାଜା ନାନା କୌଶଳ କରୁଥାଆନ୍ତି । ହେଲେ ସବୁ ବିଫଳରେ ପରିଣତ ହେଲା ।

୧୯୩୮ ମସିହା ଆନ୍ଦୋଳନ ତୀବ୍ର ରୂପ ନେଲା । ବାଜିରାଉତ ହତ୍ୟାକାଣ୍ଡ ଘଟିଲା । ବାଜିରାଉତ, ଲକ୍ଷ୍ମଣ ମଲ୍ଲିକ, ନଟମଲ୍ଲିକ୍, ଗୟୁନାଏକ, ଗୁରିନାଏକ ଓ ହୃଷି ପ୍ରଧାନ ସହୀଦ ହେଲେ । ସେମାନଙ୍କ ଶବକୁ ବୈଷ୍ଣବ ବାବୁ ପ୍ରଭୃତି ଢେଙ୍କାନାଳର ପ୍ରଜାମଣ୍ଡଳ ନେତାମାନେ ଚତୁରତାର ସହ ଜେନାପୁର ଦେଇ କଟକ ସହରକୁ ନେଇଗଲେ । ସେଠାରେ ଛଅଗୋଟି ବଳଦ ଗାଡ଼ିରେ ଏହି ସହୀଦମାନଙ୍କର ଶବକୁ ବିରାଟ ପଟୁଆରରେ ଖାନନଗର ଶ୍ମଶାନ ଘାଟକୁ ନେଇ ସତ୍କାର କରାଗଲା । ଢେଙ୍କାନାଳର ଏହି ଆନ୍ଦୋଳନ ଓ ହତ୍ୟାକାଣ୍ଡ ସାରା ଭାରତରେ ଚମକ ସୃଷ୍ଟି କଲା । ଏହି ଆନ୍ଦୋଳନ ପରେ ବୈଷ୍ଣବ ବାବୁ ଢେଙ୍କାନାଳ ରାଜାଙ୍କ ୱାରେଣ୍ଟ ବଳରେ କଟକଠାରେ ଗିରଫ୍ ହେଲେ । କଟକ ଜେଲରେ ଛ'ମାସ ବନ୍ଦୀ ହୋଇ ରହିଲେ ।

ତାପରେ ବୈଷ୍ଣବ ବାବୁ ଛଦ୍ମ ବେଶରେ ଛଦ୍ମ ନାମ ଧାରଣ କରି ବୁଲି ବୁଲିଲେ । "ବାଉବୈଷ୍ଣବ କରେ ପୁକାର ଢେଙ୍କାନାଳ ରାଜାହୁଅ ହୁସିଆର" ସ୍ଲୋଗାନରେ ଢେଙ୍କାନାଳ ଗଗନ ପବନ ପ୍ରକମ୍ପିତ ହେଉଥାଏ । ଏହି ସମୟରେ ବମ୍ବେର ନ୍ୟାସନାଲ ଫ୍ରଣ୍ଟ ପତ୍ରିକାରେ ଢେଙ୍କାନାଳ ଆନ୍ଦୋଳନ ସମ୍ପର୍କରେ ଦୁଇଟି ଲେଖା ପ୍ରକାଶ ପାଇଲା । ୨୯.୧.୧୯୩୯ ସଂଖ୍ୟାରେ ସେହି କାଗଜ ବୈଷ୍ଣବ ବାବୁଙ୍କ ସମ୍ପର୍କରେ ଲେଖିଥିଲେ ଯେ, "ବୈଷ୍ଣବ ବାବୁ ହେଉଛନ୍ତି ଢେଙ୍କାନାଳ ଆନ୍ଦୋଳନର ପ୍ରାଣକେନ୍ଦ୍ର ଏବଂ ସେ ହେଉଛନ୍ତି ଢେଙ୍କାନାଳ ଆନ୍ଦୋଳନର ହୃତପିଣ୍ଡ ।" ବୈଷ୍ଣବ ବାବୁ ସକ୍ରିୟ ଆନ୍ଦୋଳନରେ ଯୋଗ ଦେଇ ୧୯୪୦ ମସିହାରେ ଭାରତ ରକ୍ଷା ଆଇନ୍ ବଳରେ ଢେଙ୍କାନାଳ ରାଜାଙ୍କ ଦ୍ୱାରା ଗିରଫ ହେଲେ । ଢେଙ୍କାନାଳ ଜେଲ୍‌ରେ ୧୯୪୨ ମସିହା ଯାଏ ତାଙ୍କୁ ଅଟକ ବନ୍ଦୀ କରି ରଖାଗଲା । ୧୯୪୨ ମସିହାରେ ମୁକ୍ତ ହେଲା ବେଳକୁ ଭାରତଛାଡ଼ ଆନ୍ଦୋଳନ ଖୁବ୍ ତୀବ୍ର ରୂପ ନେଲା । ୧୯୪୨ ମସିହା ଅଗଷ୍ଟ ମାସରେ ଢେଙ୍କାନାଳର ୧୯ ଜଣ ସଂଗ୍ରାମୀ ବୈଷ୍ଣବ ବାବୁଙ୍କ ନେତୃତ୍ୱରେ 'ମରଣ ସେନା' ଗଠନ କଲେ । ଏହି ମରଣ ସେନାରେ ମୁଖ୍ୟମାଲିକ ଥିଲେ ଜଣେ ସକ୍ରିୟ ସଦସ୍ୟ । ବାର ବରଷର ବାଳକ ବାଉଧର ସ୍ୱାଇଁ ମଧ୍ୟ ସେହି ମରଣ ସେନାରେ ଥାଇ ଖୁବ୍ ସାହସିକତାର ସହ କାର୍ଯ୍ୟ କରୁଥିଲେ । ଏବେ ବାଉଧର ବାବୁ ଜୀବିତ ଅଛନ୍ତି । ଏହି ମରଣ ସେନା ଚତୁରତାର ସହ ମଡ଼ି ବା କାମାକ୍ଷାନଗର ଥାନାର ଅସ୍ତ୍ରାଗାରକୁ ଦଖଲ କରି ସମସ୍ତ ଅସ୍ତ୍ରଶସ୍ତ୍ର, ଗୁଳିବାରୁଦ ଅକ୍ତିଆର କରିନେଇ ମଡ଼ି ଥାନା, ପୋଲିସ ବାରାକ, ତହସିଲ ଅଫିସ, ଟ୍ରେଜେରୀ, ଏସ୍.ଡି.ଓ. ଅଫିସ ଓ ବହୁ ସରକାରୀ ବାସଭବନକୁ ଏକାଦିନରେ ପୋଡ଼ି ପାଉଁଶ କରିପାରିଥିଲେ । ମଡ଼ିରେ ସ୍ୱାଧୀନ ସରକାର ପ୍ରତିଷ୍ଠା କଲେ । ମାନପୁରର ଖମାର ଭାଙ୍ଗି ପ୍ରଜାମାନଙ୍କ ମଧ୍ୟରେ ଧାନ ଚାଉଳ ବାଣ୍ଟି ପକାଇଲେ । ଖମାରିଆ ଠାରୁ ହାଣ୍ଡ ନୋଟ୍ ତମସୁକ ଆଦି ଆଣି ପୋଡ଼ି ପକାଇ ଋଣଗ୍ରସ୍ତ ପ୍ରଜାମାନଙ୍କୁ ଋଣ ମୁକ୍ତ କଲେ ।

ତାପରେ ସେପ୍ଟେମ୍ବର ମାସରେ ପରଜଙ୍ଗ ଥାନା ଦଖଲ ପାଇଁ ମରଣ ସେନା ଆଗେଇ ଗଲେ । ସେମାନଙ୍କ ସହ ଥିଲେ ତିନିହଜାର କର୍ମୀ । ସେମାନଙ୍କୁ ଦୁଇଭାଗ କରି ଦିଆଗଲା । ଗୋଟିଏ ଗୋଟିଏ ଦଳରେ ପନ୍ଦର ଶହ କରି କର୍ମୀ ହାତ ହତିଆର, ଧନୁତୀର, ଟାଙ୍ଗିଆ, ଫାର୍ସା ଧରି ବାହାରି ପଡ଼ିଲେ । ଗୋଟିଏ ଦଳର ନେତୃତ୍ୱ ନେଉଥିଲେ ବୀର ବୈଷ୍ଣବ ପଟ୍ଟନାୟକ । ସେମାନେ ପ୍ରଥମେ ଚାନ୍ଦପୁର ଥାନା ଦଖଲ କରିନେଲେ । ତାପରେ ପରଜଙ୍ଗ ଯାତ୍ରା କରୁଥିବା ବେଳେ ବୈଷ୍ଣବବାବୁଙ୍କ ଦଳ ଉପରେ ଢେଙ୍କାନାଳ ରାଜାର ପୋଲିସ ବାହିନୀ ଅତର୍କିତ ଆକ୍ରମଣ କଲେ । ଦୁଇ ଜଣ ବ୍ୟକ୍ତି ସେଠାରେ ଶହୀଦ ହେଲେ । ବୈଷ୍ଣବବାବୁଙ୍କ ଦେହରେ ଭୀଷଣ ଗୁଳିମାଡ଼ ହୋଇ ସେ ସାଂଘାତିକ ଭାବରେ ଆହତ ହୋଇ ଲୁଚି ଲୁଚି କଟକ ପଳାଇ ଆସିଲେ । ସେଠାରେ ତାଙ୍କର ଆଶୁ ଚିକିତ୍ସା କରିବାପରେ ତାଙ୍କୁ କଲିକତା ପଠାଇ ଦିଆଗଲା । ସେଠାରେ ସେ ଆତ୍ମ ଗୋପନ କରି ପ୍ରାୟ ୪ ବର୍ଷ ରହିଲେ । ତାଙ୍କ ନାଁରେ ୱାରେଣ୍ଟ ପରୱାନା ବୁଲୁଥାଏ ।

ଢେଙ୍କାନାଳ ରାଜା ଘୋଷଣା କରି ଥାଆନ୍ତି ବୈଷ୍ଣବ ପଟ୍ଟନାୟକଙ୍କୁ ଦେଖିଲା ମାତ୍ରେ ଗୁଳିକର । ଆଉ ବୈଷ୍ଣବ ପଟ୍ଟନାୟକଙ୍କ ମୁଣ୍ଡ ପାଇଁ ହଜାର ହଜାର ଟଙ୍କା ଘୋଷଣା କରାଯାଇଥାଏ । ମରଣ ସେନାର ଅନ୍ୟ ସଭ୍ୟମାନେ ଧରାହେଲେ । ସେମାନଙ୍କର ବିଚାର କରାଯାଇ ମୁଖ୍ୟମାନଙ୍କ ଓରେ ତିନିଜଣଙ୍କୁ ପାଞ୍ଚ ପାଞ୍ଚ ଦଫାରେ ପାଞ୍ଚ ପାଞ୍ଚ ଥର ଲେଖାଏଁ ଫାଶୀ ଆଦେଶ ହେଲା । ତାପରେ ସେମାନଙ୍କ ଉପରେ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡର ଆଦେଶ କାଏମ୍ ରହିଲା ।

ବୈଷ୍ଣବବାବୁ ଦୀର୍ଘ ଚାରିବର୍ଷ କାଳ କଲିକତାରେ ଅଜ୍ଞାତ ବାସରେ ବିତାଇଲେ । ଏହି ସମୟରେ ସେ ଶ୍ରୀ ନୀଳମଣି ରାଉତରାୟଙ୍କ ଘରେ କିଛି ସମୟ ବିତାଇ ଥିଲେ । ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ସେତେବେଳେ ପାଠ ପଢୁଥିଲେ । ତାଙ୍କ ସହ ବି ସାକ୍ଷାତ ହେଉଥିଲା । ନୃପେନ୍ ଚକ୍ରବର୍ତ୍ତୀ ଯିଏକି ତ୍ରିପୁରାର ମୁଖ୍ୟମନ୍ତ୍ରୀ ଥିଲେ, ତାଙ୍କ ସହାୟତାରେ ବୈଷ୍ଣବବାବୁ ନିର୍ବିଘ୍ନରେ କଲିକତାରେ ଆତ୍ମ ଗୋପନ କରି ରହିଲେ । କଲିକତାରେ ଥିବାବେଳେ ସେ କମ୍ୟୁନିଷ୍ଟମାନଙ୍କର ସାହାଯ୍ୟ ସହାନୁଭୂତି ପାଇ ଜଣେ ଖ୍ୟାତନାମା କମ୍ୟୁନିଷ୍ଟ ନେତା ହିସାବରେ ଅଗ୍ରଗଣ୍ୟ ହେଲେ । ୧୯୪୬ ମସିହାରେ ତାଙ୍କ ଉପରୁ ୱାରେଣ୍ଟ ଉଠିଲା । ବଙ୍ଗଳା ଖବର କାଗଜରେ ପ୍ରକାଶ ପାଇଲା ବୈଷ୍ଣବ ବାବୁଙ୍କ ସମ୍ପର୍କରେ ଏକ ବିରାଟ ଲେଖା । ତାର ଶୀର୍ଷକ ଥିଲା "ଢେଙ୍କାନାଳର ବୀରପୁତ୍ର ବୈଷ୍ଣବ ପଟ୍ଟନାୟକର ବୈଚିତ୍ର୍ୟମୟ କାହିନୀ ।" ତାଙ୍କ ସମ୍ପର୍କରେ ଏହି ତଥ୍ୟ ଶୁଣି ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ ।

ଦେଶ ସ୍ୱାଧୀନ ହେଲା । ବୈଷ୍ଣବବାବୁ ଓଡ଼ିଶା ଗଡ଼ଜାତ ମିଶ୍ରଣ ପାଇଁ କାମ କଲେ । ତାପରେ ନୂତନ ସରକାର କମ୍ୟୁନିଷ୍ଟମାନଙ୍କ ଉପରେ କଡ଼ା ନଜର ରଖି ସେମାନଙ୍କୁ ଅଟକ ବନ୍ଦୀ କରିରଖିଲେ । ଫଳରେ ବୈଷ୍ଣବ ବାବୁ ତିନିବର୍ଷ ନଅମାସ କାଳ କଟକ ଜେଲରେ ୧୯୪୮-୫୨ ଯାଏ ଅଟକ ବନ୍ଦୀ ହୋଇ ରହିଲେ । ଏହି ସମୟରେ ଦେଶରେ ୧୯୫୨ ମସିହାରେ ସାଧାରଣ ନିର୍ବାଚନ ହେଲା । ବୈଷ୍ଣବ ବାବୁ ଜେଲରେ ଥାଇ ଢେଙ୍କାନାଳ ବିଧାନସଭା ଆସନରୁ କମ୍ୟୁନିଷ୍ଟପାର୍ଟି ଟିକେଟରେ ଲଢ଼ିଲେ । ନିର୍ବାଚନ ମାତ୍ର ଦୁଇଦିନ ଥିଲା, ତାଙ୍କୁ ଖଲାସ କରାଗଲା । ସେ ନିର୍ବାଚନରେ ବିପୁଳ ବିଜୟ ହାସଲ କଲେ ।

୧୯୬୨ ମସିହାରେ ପାର୍ଲାମେଣ୍ଟ ନିର୍ବାଚନରେ ବୈଷ୍ଣବ ବାବୁ ଢେଙ୍କାନାଳ ଲୋକସଭା ଆସନରୁ କଂଗ୍ରେସ ପ୍ରାର୍ଥୀ ଭାବରେ ଲଢ଼େଇ କରି ତାଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ଢେଙ୍କାନାଳର ରାଜା ଗଣତନ୍ତ୍ର ପରିଷଦର ପ୍ରାର୍ଥୀ ଶ୍ରୀ ଶଙ୍କର ପ୍ରତାପ ସିଂହ ଦେଓ ମହୀନ୍ଦ୍ର ବାହାଦୁରଙ୍କୁ ବହୁ ଭୋଟ ବ୍ୟବଧାନରେ ପରାଜିତ କଲେ । ସେ ଲୋକସଭାର ସଦସ୍ୟ ଭାବରେ ୧୯୬୭ ଯାଏ ରହିଥିଲେ ।

ବୈଷ୍ଣବ ବାବୁଙ୍କୁ ଯଥାର୍ଥରେ କୁହାଯାଏ, ଢେଙ୍କାନାଳର ସୁଭାଷ । ତାଙ୍କର ରଣ କୌଶଳ ଓ ସଂଗ୍ରାମର ସମରସଜ୍ଜା ଥିଲା ଅନନ୍ୟ । ବର୍ତ୍ତମାନ ତାଙ୍କର ବୟସ ୮୬ ବର୍ଷ ।

*ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା, ଭୁବନେଶ୍ୱର-୧*

• • •

| | | |
|---|---|---|
| ୧୮୪୪-୪୬ | : | ଇଂରେଜ ସହିତ ଲଢ଼ି ଫାଶୀ ପାଇଥିବା ଶ୍ୟାମବିଶୋଇଙ୍କ ପୁତ୍ର ଚକରା ବିଶୋଇଙ୍କ ନେତୃତ୍ୱରେ ଘୁମୁସର ବିଦ୍ରୋହ । |
| | : | ରାମପୁର(କଳାହାଣ୍ଡି)ରେ ରେନ୍ଦୋ ମାଝି, ଢ଼ୁଡ଼ ମାଝି, ପାରଳାରେ ରାଧାକୃଷ୍ଣ ଦଣ୍ଡସେନା, ଅନୁଗୁଳରେ ନବଘନ କୁଅଁରଙ୍କ ନେତୃତ୍ୱରେ ମେଳି । ଏହି ମେଳିରେ ରାଧାକୃଷ୍ଣଙ୍କୁ ଫାଶୀ । |
| ୧୮୪୭-୪୮ | : | ଅନୁଗୁଳର ରାଜା ସୋମନାଥ ସିଂହଙ୍କ ବିଦ୍ରୋହ ଓ ଯୁଦ୍ଧରେ ବନ୍ଦୀ ହୋଇ ହଜାରୀବାଗ ଜେଲରେ ମୃତ୍ୟୁ । ଅନୁଗୁଳର କୃଷ୍ଣଚକ୍ରଗଡ଼ ରକ୍ଷକ ମଣି ସାହୁରା, ବିପ୍ଳବୀ ଭୋବନି ମଙ୍ଗରାଜ ଇଂରେଜଙ୍କ ଗୁଳିରେ ଶହୀଦ । |
| ୧୮୪୯ | : | ସମ୍ବଲପୁର ଇଂରେଜ ଶାସନାଧୀନ । |
| ୧୮୫୪-୫୫ | : | ଜୟପୁରରେ ବିଦ୍ରୋହ । |

# ଚକରା ବିଷୋୟୀ ଓ ଚକ୍ରଗଡ଼

● ଡକ୍ଟର ବ୍ରଜ କିଶୋର ପାଢ଼ୀ

ଘୁମୁସରରେ ଅନେକଗୁଡ଼ିଏ ପାହାଡ଼ ଓ ପାର୍ବତ୍ୟ ଘାଟି ଅଛି । କଳିଙ୍ଗା ଘାଟି ତନ୍ମଧ୍ୟରୁ ସବୁଠାରୁ ବଡ଼ । ପ୍ରତ୍ୟେକ ପାର୍ବତ୍ୟ ଘାଟି ପଛରେ କିଛି ନା କିଛି ଐତିହାସିକ ଘଟଣାବଳୀ ବା କିମ୍ବଦନ୍ତୀ ଥାଏ । ଚକ୍ରାଘାଟି ଐତିହାସିକ ଦୃଷ୍ଟିକୋଣରୁ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ସ୍ୱାଧୀନତା ଆନ୍ଦୋଳନକୁ ଇନ୍ଧନ ଯୋଗାଇବା ଏବଂ ସ୍ୱାଧୀନତା ସଂଗ୍ରାମୀଙ୍କୁ ଆଶ୍ରୟ ଦେବାରେ ଏହି ସ୍ଥାନର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଭଞ୍ଜନଗର-ଦଶପଲ୍ଲା ମୁଖ୍ୟ ରାସ୍ତାରେ ତିନି ଛକିଆ ଓ କରଡ଼ାବଣି ଇତ୍ୟାଦି ଗ୍ରାମ ପଡ଼େ । ତିନି ଛକିଆରୁ ଚକରା ଘାଟି ୧୦ କି.ମି. ଏବଂ କରଡ଼ାବଣିରୁ ୧୫ କି.ମି. । ଚନ୍ଦ୍ରଗିରି ପର୍ବତମାଳା ମଧ୍ୟରେ ଏହି ଚକରାଘାଟିର ଅବସ୍ଥିତି । କରଡ଼ାବଣିରୁ ତାରସିଙ୍ଗକୁ ଚକରା ଘାଟି ପାହାଡ଼ର ତଳ ପାର୍ଶ୍ୱ ଦେଇ ଏକ ଜଙ୍ଗଲି ରାସ୍ତା ଯାଇଛି । ତିନି ଛକିଆରୁ ଦୁଇ ପାହାଡ଼ ଅତିକ୍ରମ କଲା ପରେ ଚକରାଘାଟି ପଡ଼େ । ଏହି ପାହାଡ଼ ଦେଇ ଚକାପାଦକୁ ରାସ୍ତା ଯାଇଛି । ଏହି ରାସ୍ତାଟି ବିଦ୍ରୋହୀମାନଙ୍କର ଏକଦା ମୁଖ୍ୟ ରାସ୍ତା ଥିଲା । ସଂପୂର୍ଣ୍ଣ ଚକରାଘାଟି ଅଞ୍ଚଳଟିର ଚତୁର୍ଦ୍ଦିଗ ସୁଉଚ୍ଚ ପାହାଡ଼ମାନଙ୍କ ଦ୍ୱାରା ଘେରି ରହିଛି । ପ୍ରତ୍ୟେକ ପାହାଡ଼ର ନାମ ଭିନ୍ନ ଭିନ୍ନ । ମଝିରେ ଏକ ଉଚ୍ଚ ପାହାଡ଼ ଅଛି । ଏହାର ଉଚ୍ଚତା ପ୍ରାୟ ୮୦ ଫୁଟ ହେବ । ଏହି ସବୁ ପାହାଡ଼ର ସଂଯୋଗ ଦୂରକୁ ଠିକ୍ ଏକ ଚକ୍ର ପରି ଦେଖାଯାଏ । ଏଣୁ ଏହାକୁ ଚକ୍ରଗଡ଼ ବା ଚକ୍ରଘାଟ ବୋଲି କହିଲେ ଠିକ୍ ହେବ । ଏହି ଉପତ୍ୟକାର ସମତଳ ଅଞ୍ଚଳଟି ନଅରଡୋଟା ନାମରେ ଖ୍ୟାତ । ଏହାର ଆକାର ପ୍ରାୟ ୨ କି.ମି. ହେବ । ଏଠାରେ ଜନବସତି ଥିଲା । ଲୋକମାନେ ରହୁଥିବା ଘର ଓ ଗୃହ ସାମଗ୍ରୀର ଭଗ୍ନାବଶେଷରୁ ଜଣାପଡ଼େ ଯେ ଏଠାରେ ଏକ ଉନ୍ନତ ସଭ୍ୟତା ଥିଲା । ସେମାନଙ୍କ ଘରର କାନ୍ଥଗୁଡ଼ିକ ବିଶେଷ ଚଉଡ଼ା ଥିଲା । ଏହି କାନ୍ଥର ପ୍ରସ୍ଥ ୨ ଫୁଟ । ଏଥିରେ ବ୍ୟବହୃତ ଇଟାଗୁଡ଼ିକ ଆଧୁନିକ ଇଟାଠାରୁ ଭିନ୍ନ । ଏହାର ଚଉଡ଼ା ନଅ ଇଞ୍ଚ, ଲମ୍ବ ଏଗାର ଇଞ୍ଚ ଓ ଉଚ୍ଚତା ତିନି ଇଞ୍ଚ । ଇଟାଗୁଡ଼ିକ ଚୂନ ଓ ବାଲିର ମିଶ୍ରଣରେ ଯୋଡ଼ାଯାଇଛି । ବର୍ତ୍ତମାନ ଇଟା କାନ୍ଥଗୁଡ଼ିକର ଭଗ୍ନାବଶେଷ ହିଁ ଅଛି । ପୋଡ଼ାଗଡ଼ ଓ କଦଳୀଗଡ଼ର ପର୍ବତମାଳା ଏହି ଚନ୍ଦ୍ରଗିରି ପର୍ବତମାଳାକୁ ସଂଯୋଗ କରେ । ଚକରାଘାଟିଠାରୁ ପଚିଶ କିଲୋମିଟର ଏହି ଗଡ଼ମାନଙ୍କରେ ମଧ୍ୟ ଠିକ୍ ଏଭଳି ଇଟା ଓ ଇଟାକାନ୍ଥ ଥିବା କୁଡ଼ଗୁଡ଼ିକ ଦେଖିବାକୁ ମିଳେ । ପୋଡ଼ାଗଡ଼ର ଇଟାକୁଡ଼ଟିର ଆୟତନ ପ୍ରାୟ ୫୦୦ ଫୁଟ ହେବ । ଏଠାରୁ ବହୁତ ଖପରା, ଗୃହ ଉପକରଣ ଖନନ କଲାବେଳେ ମିଳିଥାଏ । ଚକରାଘାଟି ଓ ପୋଡ଼ାଗଡ଼ର ଇଟା କୁଡ଼ମାନଙ୍କରେ ବହୁ ସାମଞ୍ଜସ୍ୟ ଅଛି । ଏହି ସବୁ ସ୍ଥାନର ପ୍ରତ୍ନତତ୍ତ୍ୱ ଖନନ ନିହାତି ଆବଶ୍ୟକ । ପୋଡ଼ାଗଡ଼, କଦଳୀ ଗଡ଼, କୋଳଲବା, ତାରସିଙ୍ଗ, ଚକରାଘାଟିକୁ ନେଇ ଏଠାରେ ଏକ ବିରାଟ ସଭ୍ୟତା ଗଢ଼ି ଉଠିଥିବାର ସୂଚନା ଏଥିରୁ ମିଳେ । ନଅର ଡୋଟାରେ ବର୍ତ୍ତମାନ ସୁଦ୍ଧା ଅନେକ ପ୍ରକାରର ଫଳଗଛମାନ ଯଥା ଆମ୍ବ, କମଳା, କରୁଣା ଇତ୍ୟାଦି ଅଦ୍ୟାବଧି ଅଛି ।

ଚକରାଘାଟିର ପଶ୍ଚିମପଟ ପାହାଡ଼କୁ ରାଣୀଚଉରା ପାହାଡ଼ ଅଛି । ଏହି ପାହାଡ଼କୁ ନେଇ ଅନେକ କିମ୍ବଦନ୍ତୀ ଶୁଣିବାକୁ ମିଳେ । ଏହାର ଆୟତନ ପ୍ରାୟ ଅଧ କିଲୋମିଟରରୁ ଉର୍ଦ୍ଧ୍ୱ ହେବ । ଏଠାରୁ ଏକ କ୍ଷୁଦ୍ର ଝରଣାଟିଏ ବାହାରିଛି । ଏହା ଚିରସ୍ରୋତା ନୁହେଁ । ରାଣୀଚଉରା ପାହାଡ଼ର ଝରଣାର ପାଣି ଚକରାଘାଟିର ମଧ୍ୟସ୍ଥଳରେ ଥିବା ଠାକୁରାଣୀଙ୍କ ଆସ୍ଥାନ ଦେଇ ଯାଇଛି ଏବଂ କଡରା ନାଳରେ ପଡ଼ିଛି । କଡରା ନାଳଟି ନଅର ଡୋଟା ମଧ୍ୟ ଦେଇ ପ୍ରବାହିତ ହେଉଛି ଏବଂ ଏହା ତିନିଛକିଆ ଗ୍ରାମ ଦେଇ ବଡ଼ନଦୀ ସହିତ କମଳାବାରି ଛକଠାରେ ମିଶିଛି । ଏହି ନାଳଟି ଚିରସ୍ରୋତା ନୁହେଁ । ନଅର ଡୋଟାରେ କୌଣସି କୂପ ବା ପୁଷ୍କରିଣୀ ମିଳେ ନାହିଁ । ଠାକୁରାଣୀ ଆସ୍ଥାନର ପଶ୍ଚିମ ଦିଗର ଠିକ୍ କୋଡ଼ିଏ ଫୁଟ ତଳକୁ ଏକ ପ୍ରସ୍ତର ଖଣ୍ଡ ଅଛି । ଏହି ପ୍ରସ୍ତର ଖଣ୍ଡରେ ଥିବା ଗର୍ତ୍ତଗୁଡ଼ିକ ଦେଖିବାକୁ ଠିକ୍ ହାଣ୍ଡି ପରି । ଏଣୁ ଲୋକମାନେ ଗର୍ତ୍ତ ପରିବର୍ତ୍ତେ ଏହାକୁ ପଥର ହାଣ୍ଡି କହନ୍ତି । ଏପରି ପଥର ହାଣ୍ଡି ଏଠାରେ ଦୁଇଟି ଅଛି । ଦୁଇଟି ଯାକ ପ୍ରସ୍ତର ହାଣ୍ଡି ପରସ୍ପରକୁ ସ୍ପର୍ଶ କରୁଛି । ଏହା ଦେଖିବାକୁ ଠିକ୍ ଅଶ୍ୱାକୃତି । ଏହା ପ୍ରକୃତି ଦ୍ୱାରା କଳାମୁଗୁନି ପଥରରେ ନିର୍ମିତ । ପ୍ରଥମ ହାଣ୍ଡିଟିର ଲମ୍ବ ବାର ଫୁଟ ଓ ପ୍ରସ୍ଥ ଆଠ ଫୁଟ । ଅନ୍ୟ ହାଣ୍ଡିଟି ସାମାନ୍ୟ ବଡ଼ । ଏହାର ଲମ୍ବ ପନ୍ଦର ଫୁଟ ଓ ପ୍ରସ୍ଥ ଦଶଫୁଟ । ଏଥିରେ ପ୍ରାୟ ବାର ଫୁଟରୁ ପନ୍ଦର ଫୁଟ ପର୍ଯ୍ୟନ୍ତ ପାଣି ରହେ । ଏଣୁ ଏହାକୁ ସେମାନେ କୂପ ପରି ବର୍ତ୍ତମାନ ବ୍ୟବହାର କରୁଥିଲେ । ଏଠାରୁ ଆଠ ଫୁଟ ଦୂରରେ ଏକ ପଥରର ଛୋଟ ପାତ୍ର ପରି ଥାଳୀ ଅଛି । ଏହାର ଲମ୍ବ ଚାଳିଶି ଫୁଟ ଓ ପ୍ରସ୍ଥ ତିରିଶ ଫୁଟ । ଏହାର ପାଣିକୁ ସ୍ନାନ ରୂପେ ସେମାନେ ବ୍ୟବହୃତ କରୁଥିଲେ । ପଥର ହାଣ୍ଡିର ଜଳ ଦେବୀଙ୍କ ଉପାସନା ଓ ଲୋକମାନଙ୍କର ବ୍ୟବହାର ପାଇଁ ମୁଖ୍ୟତଃ ଉପଯୋଗ ହେଉଥିଲା । କଦଳୀଗଡ଼ ଓ ପୋଡାଗଡ଼ ମଧ୍ୟ ଦେଇ ଏକ ଛୋଟନାଳ ପ୍ରବାହିତ ହେଲେ ମଧ୍ୟ ଏହା ଚିରସ୍ରୋତା ନୁହେଁ । ଏଣୁ ସେମାନେ ଏକ କୂପ ଖୋଦନ କରିଥିଲେ । ଏହି କୂପଟି କାଠରେ ନିର୍ମିତ । ଏହା ଦେଖିବାକୁ ଚତୁଷ୍କୋଣ । ଏହାର ଆୟତନ କୋଡ଼ିଏ ଫୁଟ ।

ଚକରାଘାଟିର ମଧ୍ୟଭାଗରେ ଥିବା କ୍ଷୁଦ୍ର ମୁଣ୍ଡିଆ ଉପରେ ଠାକୁରାଣୀ ଦେବୀଙ୍କ ଆସ୍ଥାନ । ଚକରାଘାଟି ନାମାନୁଯାୟୀ ଏହି ଦେବୀଙ୍କୁ ଚକରା ଘାଟି ଠାକୁରାଣୀ ବୋଲି ଲୋକେ ଡ଼ାକନ୍ତି । ବିଗ୍ରହଗୁଡ଼ିକ ପଶ୍ଚିମାମୁଖୀ । ଦେବୀ ବିଗ୍ରହଟି ଭାଙ୍ଗିଯାଇ ଦୁଇ ତିନି ଖଣ୍ଡ ହୋଇଯିବା ଫଳରେ ମୂର୍ତ୍ତିଟିର ପ୍ରତିକୃତି ଜାଣିବା କଷ୍ଟକର । ବର୍ତ୍ତମାନ ଲୋକମାନେ ଏହି ଆସ୍ଥାନ ଯାଏଁ ପଥରର ପାହାଚ ନିର୍ମାଣ କରି ରାସ୍ତା କରିଦେଇଛନ୍ତି ଓ ଉପରି ଭାଗଟି ସିମେଣ୍ଟରେ ମଣ୍ଡପ ପରି ନିର୍ମାଣ କରିଛନ୍ତି । ଖୋଲା ମଣ୍ଡପ ଉପରେ

ଦେବୀଙ୍କ ଆସ୍ଥାନ । ଆଶ୍ୱିନ ମାସରେ ଛେଳି, କୁକୁଡ଼ା ଇତ୍ୟାଦି ସେହି ମାସର ପ୍ରତ୍ୟେକ ମଙ୍ଗଳବାର ଦିନମାନଙ୍କରେ ଦେବୀଙ୍କଠାରେ ବଳି ଦିଆଯାଏ । ହଳଦିଖୋଳା ଗ୍ରାମର ଲୋକମାନେ ଏହି ପର୍ବରେ ମୁଖ୍ୟତଃ ଭାଗ ନେଇଥାନ୍ତି । କଦଳାଗଡ଼ ଓ ପୋଡ଼ାଗଡ଼ରେ ବର୍ଷର ଅନ୍ୟ ଦିନମାନଙ୍କରେ ପର୍ବ ପାଳିତ ହୋଇଥାଏ । କଦଳାଗଡ଼ରେ ଆଶ୍ୱିନ, ମାର୍ଗଶିର ଓ ଜ୍ୟେଷ୍ଠ ମାସର ଅଷ୍ଟମୀ ଏବଂ ସଂକ୍ରାନ୍ତି ଦିନମାନଙ୍କରେ ପୂଜାର୍ଚ୍ଚନା କରାଯାଏ । ଆଶ୍ୱିନ ମାସ ଅଷ୍ଟମୀକୁ ଏଠାରେ ପୋଡ଼ ବଳୀ ଦିଆଯାଏ । ଏଠାରେ ପ୍ରସ୍ତର ଖୋଦିତ ମୂର୍ତ୍ତି ନାହିଁ । କେବଳ ଛୋଟ ଗୋଲାକୃତି ପଥରଗୁଡ଼ିକୁ ପୂଜା କରାଯାଏ । କଦଳାଗଡ଼ରେ ଧାତୁ ବିଗ୍ରହ ଓ ପଥର ବିଗ୍ରହ ଅଧିଷ୍ଠିତ । କଦଳାଗଡ଼ର ଦେବୀ ଭଗବତୀ ଦେବୀ ନାମରେ ପ୍ରସିଦ୍ଧ । ଏହି ଦେବୀଙ୍କ ମହିମା ନେଇ ଅନେକ କିମ୍ବଦନ୍ତୀ ଶୁଣିବାକୁ ମିଳେ । ପୋଡାଗଡ଼ର ଦେବୀ ଗତ ଚାଳିଶି ବର୍ଷ ଧରି ଏଠାରେ ପୂଜା ପାଉଛନ୍ତି । ଚକରାଘାଟି, କଦଳାପାଡ଼ି, ପୋଡାଗଡ଼ ଇତ୍ୟାଦିଠାରେ ଦେବୀଙ୍କ ଆସ୍ଥାନରେ ମନ୍ଦିର ନଥିବାରୁ ଏହାର କୌଣସି ପାର୍ଶ୍ୱ ଦେବତା ପୂଜା ପାଉନାହାଁନ୍ତି । ଏହି ତିନିଗଡ଼ର ଧାର୍ମିକ ଧାରାକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଏହି ସବୁ ସ୍ଥାନରେ ଗୋଟିଏ ଜାତିର ଲୋକ ରହୁଥିଲେ । କିନ୍ତୁ ସେମାନଙ୍କ ଚାଲିଚଳଣୀ ଗୋଟିଏ ପ୍ରକାରର । ସେମାନେ ତନ୍ତ୍ର ବିଦ୍ୟାରେ ପାରଙ୍ଗମ ଥିଲେ । ଯାହା ଫଳରେ ଏମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ ଅନ୍ୟମାନେ ଭୟ କରୁଥିଲେ ।

ଘୁମୁସର ଅଧିବାସୀ ୧୭୫୩ ଖ୍ରୀଷ୍ଟାବ୍ଦରୁ ୧୭୫୯ ଖ୍ରୀଷ୍ଟାବ୍ଦ ଯାଏଁ, ପ୍ରଥମେ ଫରାସୀ ଶାସନ ବିରୁଦ୍ଧରେ ଏବଂ ତତ୍‌ପରେ ୧୭୬୬ ଖ୍ରୀଷ୍ଟାବ୍ଦରୁ ୧୮୬୬ ଖ୍ରୀଷ୍ଟାବ୍ଦ ଯାଏଁ ବ୍ରିଟିଶ ଶାସନ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ସେମାନଙ୍କର ସ୍ୱଳ୍ପ ସମ୍ବଳ ଥିଲେ ମଧ ମନ ବଳ ଅଧିକ ଥିଲା । ସେମାନଙ୍କ ଏହି ସଂଗ୍ରାମକୁ ପ୍ରତିରୋଧମୂଳକ ସଂଗ୍ରାମ ବା ଇଂରାଜୀରେ Registance Movement କୁହାଯାଏ । ଭଞ୍ଜରାଜାମାନଙ୍କ ଦ୍ୱାରା ପରିଚାଳିତ ସଂଗ୍ରାମ ୧୭୫୩ ଖ୍ରୀଷ୍ଟାବ୍ଦରୁ ଆରମ୍ଭ ହୋଇ ଧନଞ୍ଜୟ ଭଞ୍ଜଙ୍କ ମୃତ୍ୟୁ ସହିତ ସମାପ୍ତି ହେଲା । ତା'ପରେ ଘୁମୁସରରେ ୧୮୩୬ ଖ୍ରୀଷ୍ଟାବ୍ଦରୁ ଘୁମୁସରବାସୀଙ୍କ ଦ୍ୱାରା ପରିଚାଳିତ ହେଲା । ଏଥିରେ ଚକରା ବିଶୋୟୀଙ୍କ ଭୂମିକା ମୁଖ୍ୟ ଥିଲା । ତାଙ୍କୁ ଚକରାଘାଟି ପୂର୍ଣ୍ଣ ସୁରକ୍ଷା ଦେଉଥିଲା । ଚକରାଙ୍କ ଦେଶାତ୍ମବୋଧ, ବୀରତ୍ୱ ସହିତ ଏହି ଉପତ୍ୟକା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଥିବାରୁ ତାଙ୍କ ନାମାନୁଯାୟୀ ଏହି ପାର୍ବତ୍ୟ ଘାଟିଟି ଚକରାଘାଟି ନାମରେ ଆଜି ପରିଚିତ । ଇଂରେଜମାନେ ଯେତେ ଚେଷ୍ଟା କଲେ ମଧ ଏହି ଉପତ୍ୟକା ଅଞ୍ଚଳ ଭିତରକୁ ପଶିବା ପାଇଁ ସାହସ କରିପାରୁନଥିଲେ । କୌଣସି ଉପାୟରେ ଚକରାଙ୍କୁ ଧରିବା ପାଇଁ ୧୮୪୮ ଖ୍ରୀଷ୍ଟାବ୍ଦରେ ଭାରତର ବଡ଼ଲାଟ୍ ଲର୍ଡ଼ ଡ଼େଲହାଉସି ମାନ୍ଦ୍ରାଜ ପ୍ରେସିଡ଼େନ୍‌ସି ପ୍ରଶାସନକୁ କଡ଼ା ନିର୍ଦ୍ଦେଶ ଦେଇଥିଲେ । ଏହାର ଉତ୍ତରରେ ଇଷ୍ଟ ଇଣ୍ଡିଆ କମ୍ପାନୀର ବୋର୍ଡ଼ ଅଫ୍ କଣ୍ଟ୍ରୋଲର ପ୍ରେସିଡ଼େଣ୍ଟଙ୍କ ନିକଟକୁ ପତ୍ର ଲେଖି ଜଣାଇଥିଲେ ଯେ "ଚକରା ବିଶୋୟୀ ହେଉଛନ୍ତି ଜଣେ ଦୁଃସାହସୀ ବିଦ୍ରୋହୀ । ତାଙ୍କୁ ପର୍ବତ କନ୍ଦରରୁ ଉପତ୍ୟକା ଇଲାକା ପର୍ଯ୍ୟନ୍ତ ଖୋଜା ଚାଲିଛି । ତଥାପି ତାଙ୍କର ସନ୍ଧାନ ପାଇବା କଷ୍ଟକର ହୋଇପଡ଼ିଛି । ବୋଧହୁଏ ସେ ବଣ ଜଙ୍ଗଲର ନିଭୃତ ଅଞ୍ଚଳରେ ଆତ୍ମଗୋପନ କରି ରହିଛନ୍ତି ।" ଚକରା ବିଶୋୟୀଙ୍କୁ ବିଭିନ୍ନ ପାହାଡ଼ ଜଙ୍ଗଲ, ଗୁମ୍ଫା, ଉପତ୍ୟକା ୧୮୫୬ ଖ୍ରୀଷ୍ଟାବ୍ଦ ଯାଏଁ ଦୀର୍ଘ ଦଶ ବର୍ଷ କାଳ ଆତ୍ମ ଗୋପନ କରି ରହିବା ପାଇଁ ସହାୟତା କରିଥିଲା । ବିଭିନ୍ନ ପାର୍ବତ୍ୟ ଅଞ୍ଚଳର ଠାକୁରାଣୀ ପୀଠସ୍ଥଳରୁ ସେ ତନ୍ତ୍ର ବିଦ୍ୟା ଶିକ୍ଷା କରି ବଳଶାଳୀ ହୋଇଥିଲେ ।

ଆଜି ସେହି ଐତିହାସିକ ପୀଠର ସ୍ଥାପତ୍ୟ, ସଂସ୍କୃତି, ଉପାସନା ସ୍ଥଳୀ ପରିତ୍ୟକ୍ତ ଅବସ୍ଥାରେ ପଡ଼ି ରହିଛି ।

କୁହୁଡ଼ା, ଜିଲ୍ଲା- ଗଞ୍ଜାମ

• • •

୧୮୫୭-୬୪ : ବୀର ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ପଶ୍ଚିମ ଓଡ଼ିଶାରେ ଗଣ ବିଦ୍ରୋହ- ଦେବ୍ରିଗଡ଼ରେ ଲଖନପୁର ଜମିଦାର ବଳଭଦ୍ର ସିଂହ ଦାଓଙ୍କ ମୃତ୍ୟୁ-ଝାରଘାଟୀ ଯୁଦ୍ଧରେ ବହୁ ବିଦ୍ରୋହୀଙ୍କ ପ୍ରାଣବଳୀ-ସମ୍ବଲପୁର ଯୁଦ୍ଧରେ ୪ ଜଣ ଶହୀଦ- କଦୋପାଲି ଗାଁ ଯୁଦ୍ଧରେ ଛବିଲ ସାଏଙ୍କ ସମେତ ୫୪ ଜଣ ଶହୀଦ-କୋଲାବିରା ଜମିଦାର ଜଗୁଣାକର ଗଡ଼ତିଆଙ୍କ ସମେତ ୧୩ ଜଣଙ୍କୁ ଫାଶୀ- ୧୮୬୦ ଦେଓରୀ ଖଣ୍ଡଯୁଦ୍ଧରେ ଦେଓରୀ ଜମିଦାର ମହାରାଜା ସାଏ ନିହତ । ୧୮୫୭ ବିଦ୍ରୋହରେ ବିପ୍ଳବୀ ଲୋକନାଥ ଗଡ଼ତିଆ, ଖରେଶ୍ୱର ସିଂହ ଦାଓ, ମଧୁ ଗୌନ୍ତିଆ, କମଲ ସିଂ ଦାଓ, ବଳରାମ ସାଏ, ଗଣେଶ ଉପାଧ୍ୟାୟ, ପାହାଡ଼ ଶ୍ରୀଗିଡ଼ାର ଜମିଦାର ଜନାର୍ଦ୍ଦନ ଗଡ଼ତିଆ, ବସାଇ କେଲାର ଜମିଦାର ମନୋହର ସିଂହ, ସୋହେଲ ଜମିଦାର ମୋହନ ସିଂହ, ଘେଁସ ଜମିଦାର ମାଧୋ ସିଂ, ତାଙ୍କ ବଡ଼ନାତି ହାତୀ ସିଂହ, ମାଧୋ ସିଂହଙ୍କ ନାତି ଉଗତ ସିଂହଙ୍କ ପୁଅ କୁଞ୍ଜେଲ ସିଂହ, ଶାଲିକ ରାମସିଂହ ବରିହା, ଶହୀଦ କୁଞ୍ଜେଲ ସିଂହଙ୍କ ସମୁଦି ସୋନାଖାନ ଜମିଦାର ନାରାୟଣ ସିଂହ ଓ ଭ୍ରାଇଁ ଗୋବିନ୍ଦ ସିଂହ ବୀରତ୍ୱର ସହିତ ସଂଗ୍ରାମ କରି ଶହୀଦ ।

: ପୁରୀପଣ୍ଡା ବାଶୀ ଖୁଣ୍ଟିଆ, ବାଲିଆ ଜମିଦାର ରାମକୃଷ୍ଣ ସାମନ୍ତସିଂହାରଙ୍କୁ ଜେଲଦଣ୍ଡ ।

: ସିଂହଭୂମି ପୋଡ଼ାହାଟର ଜମିଦାର ଅର୍ଜୁନ ସିଂହଙ୍କ ବିଦ୍ରୋହ- ଜଗୁ ଦେବାନଙ୍କୁ ଫାଶୀ - ଉତ୍ତର ବାଲେଶ୍ୱରରେ ଆନନ୍ଦ ମାଝିଙ୍କ ବିଦ୍ରୋହ-ଅଠଗଡ଼ରେ କନ୍ଧ ସର୍ଦ୍ଦାର ଚକ୍ର ବିଶୋଇଙ୍କ ନେତୃତ୍ୱରେ ସାନ୍ତାଳ ବିଦ୍ରୋହ ଓ ଆଣ୍ଡାମାନ ଦ୍ୱୀପରେ ମୃତ୍ୟୁ (୧୮୮୯)

୧୮୬୪ : ଗୁଣପୁରରେ ସଉରା ବିଦ୍ରୋହ ।

# ପ୍ରାଥମିକ ଶିକ୍ଷା ଓ ପଞ୍ଚାୟତିରାଜ

● ପ୍ରଫେସର ଜଗନ୍ନାଥ ମହାନ୍ତି

## ପ୍ରାଥମିକ ଶିକ୍ଷାର ଗୁରୁତ୍ୱ

ପ୍ରାଥମିକ ଶିକ୍ଷା ଜନସାଧାରଣଙ୍କ ଶିକ୍ଷା । ଏହି ଶିକ୍ଷା ସମୁଦାୟ ଶିକ୍ଷା ବ୍ୟବସ୍ଥାର ମୂଳଦୁଆ । ଏହା ଆଗକୁ ଯିବା ପାଇଁ ବା ଉପରକୁ ଉଠିବା ପାଇଁ ପହିଲି ପାହାଚ । ପିଲାମାନଙ୍କର କର୍ମଜୀବନକୁ ଠିକ୍ କରି ଗଢ଼ିବା ପାଇଁ ଏହା ଲୋଡ଼ା । ଦୁନିଆର ହାଲଚାଲ ଜାଣିବା ପାଇଁ ଏହା ଦରକାର । ନିଜ ଗୋଡ଼ରେ ଠିଆ ହେବା ପାଇଁ ଏହା ସାହାଯ୍ୟ କରେ । ତେଣୁ ସବୁ ଆଗୁଆ ଦେଶରେ ଏହା ବାଧ୍ୟତାମୂଳକ । ଆମ ଦେଶରେ ଏହା ମଧ୍ୟ ସମ୍ବିଧାନରେ ସ୍ୱୀକୃତ ହୋଇଛି । ଛଅବର୍ଷରୁ ଚଉଦ ବର୍ଷ ବୟସର ସବୁ ପିଲାଙ୍କୁ ଶିକ୍ଷାର ସୁବିଧା ଦେବା ପାଇଁ ନିର୍ଦ୍ଦେଶ ରହିଛି ।

ପ୍ରାଥମିକ ଶିକ୍ଷା ସବୁ ପ୍ରକାର ଉନ୍ନତିର ବାଟ । ଜୀବନର ସୁଖଶାନ୍ତି ପାଇବାର ଏହା ଏକ ଚାବିକାଠି । ସ୍ୱାସ୍ଥ୍ୟ ଓ ପରିବାର ମଙ୍ଗଳ, ଚାଷବାସ, ଶିଳ୍ପ, ଗୋପାଳନ, କୁକୁଡ଼ାଚାଷ ଆଦି ବିଭିନ୍ନ ଧନ୍ଦା ପାଇଁ ଶିକ୍ଷା ଆବଶ୍ୟକ । ଏମିତିକି ପରିବାର ନିୟନ୍ତ୍ରଣ ସହିତ ଶିକ୍ଷାର ସମ୍ପର୍କ ଖୁବ୍ ଘନିଷ୍ଠ ବୋଲି ଜଣାପଡ଼ିଛି । ଯେଉଁଠି ଶିକ୍ଷାର ପ୍ରସାର ଯେତେ ଅଧିକ, ସେଠାରେ ଛୋଟ ପରିବାର ସେତେ ଅଧିକ, ଶିଶୁ ଓ ମାତାଙ୍କର ମୃତ୍ୟୁ ହାର ସେତେ କମ୍ । ଶିକ୍ଷା ବଳରେ ଜନସାଧାରଣ ନିଜର ଦାୟିତ୍ୱ ଓ କର୍ତ୍ତବ୍ୟ ବୁଝିପାରନ୍ତି, ନିଜ ଅଧିକାର ସାବ୍ୟସ୍ତ କରିପାରନ୍ତି । ଦୁନିଆର ହାଲଚାଲ ବୁଝିପାରନ୍ତି । ନିଜ ନିଜ ଜୀବନକୁ ଶାନ୍ତ, ସରସ ଓ ସଫଳ କରିବା ଦିଗରେ ଏହା ଖୁବ୍ ସହାୟକ ।

## ଆଜିର ଅବସ୍ଥା

ଆମ ଦେଶ ସ୍ୱାଧୀନ ହେବା ଆଗରୁ ପ୍ରାଥମିକ ଶିକ୍ଷାର ପ୍ରସାର ପାଇଁ ନେତାମାନେ ଦାବି କରୁଥିଲେ । ମାତ୍ର ଏଥିପାଇଁ ଯାହା କିଛି କରାଯାଉଥିଲା, ତାହା ଆଦୌ ଯଥେଷ୍ଟ ହୋଇନଥିଲା । ୧୯୪୭ ମସିହାରେ ଆମ ଦେଶରେ ଶତକଡ଼ା ୧୪ ଜଣ ଥିଲେ ସାକ୍ଷର, ଯେଉଁମାନେ ନିଜେ ଲେଖିପଢ଼ି ପାରୁଥିଲେ ବା ନିଜ ନିଜ ନାଁଟିମାନ ଲେଖୁଥିଲେ । ସମ୍ବିଧାନ ଆମ ଦେଶରେ କାର୍ଯ୍ୟକାରୀ ହେବାର ୧୦ ବର୍ଷ ମଧ୍ୟରେ ଅର୍ଥାତ୍ ୧୯୬୦ ମସିହା ସୁଦ୍ଧା ଏଥିରେ ଥିବା ନିର୍ଦ୍ଦେଶ ଲାଗୁ ହେବାର ଥିଲା । କେନ୍ଦ୍ର ସରକାରଙ୍କଠାରୁ ଆରମ୍ଭ କରି ରାଜ୍ୟ ସରକାରଙ୍କ ପର୍ଯ୍ୟନ୍ତ ଯୋଜନା କରାଯାଉଛି । ଗାଁ ପାଖରେ ପ୍ରାଥମିକ ବିଦ୍ୟାଳୟ ବସାଇବା, ଝିଅ ପିଲାମାନଙ୍କୁ ପୋଷାକ ପିନ୍ଧିବାକୁ ଦେବା, ଆଦିବାସୀ ଓ ହରିଜନ ପିଲାମାନଙ୍କୁ ପଢ଼ିବା ଓ ଲେଖିବା ପାଇଁ ଦରକାରୀ ସବୁ ସୁବିଧା ଯୋଗାଇବା, ଆର୍ଥିକ ବୃତ୍ତି ଦେବା, ଅଧିକ ଶିକ୍ଷୟିତ୍ରୀ ନିଯୁକ୍ତ କରିବା, ଆଦି ବ୍ୟବସ୍ଥା ହେଲା । ଶିକ୍ଷକ ଶିକ୍ଷୟିତ୍ରୀ ଶିକ୍ଷାକୁ ସଫଳ କରାଇବା ପାଇଁ ଅଧିକ ଦାୟୀ ହୋଇଥିବାରୁ ସେମାନଙ୍କ ଦରମା ବଢ଼ାଇବା, ପୁରସ୍କାର ଓ ସମ୍ମାନ ଦେବା ଆଦି କାର୍ଯ୍ୟ କରାଗଲା ।

ଏସବୁ ସତ୍ତ୍ୱେ ଆଜି ସାରା ଦୁନିଆର ଯେତେ ଅପାଠୁଆ ଅଛନ୍ତି, ଯେତେ ନିରକ୍ଷର ଅଛନ୍ତି, ତାର ତିନିଭାଗରୁ ଏକ ଭାଗ କେବଳ ଆମରି ଦେଶରେ । ପାଠ ପଢ଼ୁନଥିବା ୬ ବର୍ଷରୁ ୧୪ ବର୍ଷ ବୟସର ପିଲାଙ୍କ ସଂଖ୍ୟା ଦୁଇ କୋଟିରୁ ଅଢ଼େଇ କୋଟି ମଧ୍ୟରେ । ସେଥିରୁ ପୁଣି ଶତକଡ଼ା ୬୦ ଜଣ ହେଲେ ଝିଅ ପିଲା । ପୁଣି ତଫସିଲଭୁକ୍ତ ଜାତି ଓ ଉପଜାତିର ଅଧିକାଂଶ ପିଲା ବିଦ୍ୟାଳୟକୁ ଯାଇ ନାହାନ୍ତି ବା ଯାଇ ଫେରି ଆସିଛନ୍ତି ।

ଆମ ଦେଶରେ ୧୯୫୦-୫୧ ବର୍ଷରେ ୨୦୯, ୬୭୧ ପ୍ରାଥମିକ ବିଦ୍ୟାଳୟ ଥିଲାବେଳେ ୧୯୯୧-୯୨ରେ ୫୬୭, ୬୮୬ଟି ପ୍ରାଥମିକ ବିଦ୍ୟାଳୟ ଥିଲା । ମାତ୍ର ଅଧିକାଂଶ ବିଦ୍ୟାଳୟର ଅବସ୍ଥା ଖୁବ୍ ଶୋଚନୀୟ । ପ୍ରାଥମିକ ଛାତ୍ରଛାତ୍ରୀଙ୍କ ସଂଖ୍ୟା ୧୯୫୦-୫୧ରେ ୨ କୋଟି ଥିଲାବେଳେ ୧୯୯୧-୯୨ରେ ତାହା ୧୦ କୋଟିରୁ ଅଧିକ ହୋଇଥିଲା । ମାତ୍ର ଝିଅ ଓ ତଫସିଲଭୁକ୍ତ ଜାତି ଉପଜାତିର ଛାତ୍ରଛାତ୍ରୀଙ୍କ ସଂଖ୍ୟା ଅପେକ୍ଷାକୃତ ଭାବରେ ବହୁତ କମ୍ ଥିଲା ।

ପ୍ରାଥମିକ ଶିକ୍ଷାର ଏପରି ମନ୍ଥର ଗତିର କାରଣ ବହୁତ । ଲୋକମାନଙ୍କ ମନ, ଗରିବ ଅବସ୍ଥା, ପ୍ରାକୃତିକ ପ୍ରତିବନ୍ଧକ, ସାମାଜିକ କୁସଂସ୍କାର, ଶିକ୍ଷାଗତ ଦୋଷତ୍ରୁଟି ଆଦି ଏହି କାରଣଗୁଡ଼ିକ ମଧ୍ୟରେ ପ୍ରଧାନ । ସେଗୁଡ଼ିକ ସମ୍ପର୍କରେ ପରେ ଆଲୋଚନା କରାଯାଉଛି । ଆମେ ଦୃଢ଼ ମନୋବଳ ଓ ନିଷ୍ଠାର ସହିତ ଆମର ପ୍ରକଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରିବା ଦରକାର । ଏହା ଫଳରେ ଦୁଇ ହଜାର ମସିହା ସୁଦ୍ଧା "ସବୁରିଙ୍କ ପାଇଁ ଶିକ୍ଷା" ସମ୍ଭବ ହୋଇପାରିବ ବୋଲି ଆଶା କରାଯାଉଛି । ସବୁରି ମଧ୍ୟରେ ଏଥିପାଇଁ ଯଥେଷ୍ଟ ଆଗ୍ରହ ଓ ଅଙ୍ଗୀକାରବଦ୍ଧତା ଏକାନ୍ତ ଆବଶ୍ୟକ । ମୂଳ କଥା ହେଲା-ମନ ଦେଲେ, ପାଠ ପଢ଼ିବା; ପାଠ ପଢ଼ିଲେ ସବୁ ଜାଣିବା; ସବୁ ଜାଣିଲେ ଦୁନିଆକୁ ଜିଣିବା । ଏହାକୁ ହାସଲ କରିବା ହେଲା, ଆମର ପ୍ରାଥମିକତା ।

## ପ୍ରାଥମିକ ଶିକ୍ଷାକ୍ଷେତ୍ରରେ ବାଧାବିଘ୍ନ

(କ) ଆର୍ଥିକାବସ୍ଥା : ଲୋକମାନଙ୍କ ମଧ୍ୟରେ ଏବେ ବି ଅନେକ ଗରିବ । ନିଜ ବିଲବାଡ଼ିରେ କାମ କରି କିମ୍ବା ଅନ୍ୟର ଚାଷବାସରେ ମୂଲ ଲାଗି ପେଟପୂରା ଦୁଇବେଳା ଖାଇବାକୁ ପାଇବା କଷ୍ଟକର ହୋଇଥାଏ । ପୁଣି ବର୍ଷ ସାରା ମୂଲ ମଜୁରି ପାଇବା ସମ୍ଭବ ହୁଏ ନାହିଁ । ଅନେକ ସ୍ଥାନରେ କେନାଲ ନଥିବାରୁ ବର୍ଷକ ମଧ୍ୟରେ ଗୋଟିଏ ଚାଷ ହିଁ ହେଉଥିଲା । ସେଥିରେ ପୁଣି ପୁନିଅପରବ, ଶ୍ରାଦ୍ଧ, ବାହାଘର ବ୍ରତଘର ଆଦିରେ ଋଣ କରିବାକୁ ପଡୁଥିଲା । ଅଧିକାଂଶ ପରିବାରରେ ପିଲାମାନେ ବି ଚାଷବାସରେ ମିଶୁଥିଲେ ବା ଅନ୍ୟ ଘରେ ଖଟୁଥିଲେ । ଝିଅପିଲାମାନେ ତ ମାଆଙ୍କୁ ଖାଲି ସାହାଯ୍ୟ କରୁନଥିଲେ, ସାନ ଭାଇଭଉଣୀଙ୍କୁ ସମ୍ଭାଳୁ

ଥିଲେ । ତେଣୁ ସ୍କୁଲକୁ ଯାଇ ପାଠ ପଢ଼ିବା ବହୁ ପିଲାଙ୍କ ପାଇଁ ଅସମ୍ଭବ ଥିଲା ।

**ଖ) ସାମାଜିକ ଅବସ୍ଥା :** ଆମ ଦେଶରେ ବହୁ ଜାତି, ଧର୍ମ ଓ ସମ୍ପ୍ରଦାୟର ଲୋକ ରହନ୍ତି । ସେମାନଙ୍କ ମଧ୍ୟରେ ବିଭିନ୍ନ ଭେଦଭାବ, ଅନ୍ଧବିଶ୍ୱାସ, କୁସଂସ୍କାର ଆଦି ରହିଛି । ପିଲାଙ୍କୁ ବାହା କରିଦେବା, ଓଢ଼ଣା ପକାଇ ଘର କୋଣରେ ରହିବା, ତଫସିଲଭୁକ୍ତ ଜାତି, ଉପଜାତିର ପିଲାମାନଙ୍କୁ ଅଛୁଆଁ ବୋଲି କହି ବିଦ୍ୟାଳୟରେ ଏକାଠି ବସାଇ ନ ଦେବା, ଝିଅ ପିଲାମାନେ ବାହା ହେଲେ ପର ଘରକୁ ଯିବାରୁ ପାଠ ନ ପଢ଼ାଇବା ଆଦି ଭୁଲ ଧାରଣା ଓ ଖରାପ ଅଭ୍ୟାସମାନ ରହିଥିଲା ।

**ଗ) ପ୍ରାକୃତିକ ବାଧାବିଘ୍ନ :** ଭାରତ ଗାଁ ଗହଳିର ଦେଶ । ଗାଁ ଗାଁ ମଧ୍ୟରେ ନଈନାଳ, ପାହାଡ଼ ଜଙ୍ଗଲ ଆଦି ରହିଥିଲା । ଛୋଟ ଛୋଟ ପିଲା ଏସବୁ ବାଧା ଟପି ବିଦ୍ୟାଳୟକୁ ଯିବା କଷ୍ଟକର ହେଉଥିଲା । ପୁଣି ଘନ ଅରଣ୍ୟ ମଧ୍ୟରେ ବହୁ ସଂଖ୍ୟାରେ ଆଦିବାସୀମାନେ ରହୁଥିଲେ । ସେମାନେ ଛୋଟ ଛୋଟ ଗାଁରେ ବା ପଡ଼ାରେ ରହୁଥିବାରୁ, ଆଉ ଛାଡ଼ି ଛାଡ଼ି ସେସବୁ ଥିବାରୁ ଗୋଟିଏ ସ୍କୁଲ ପାଇଁ ଯଥେଷ୍ଟ ପିଲା ହେଉନଥିଲେ । କେତୋଟି ଗାଁର ପିଲା ଏକାଠି ପଢ଼ିବାରେ ନଈନାଳ, ବଣ ପାହାଡ଼ ସବୁ ବାଧା ଦେଉଥିଲା ।

**ଘ) ଶିକ୍ଷାଗତ ଅସୁବିଧା :** ପ୍ରାଥମିକ ବିଦ୍ୟାଳୟରେ ବହୁ ପାଠ ନୀରସ ଓ ଅଦରକାରୀ ଥିଲା । ବହୁ ବିଷୟ ପିଲାମାନଙ୍କର ଜୀବନ ସହିତ ସମ୍ପର୍କିତ ନଥିଲା । ଅନେକ ଅନାବଶ୍ୟକ ବିଷୟ ପଢ଼ା ଯାଉଥିଲା । ଆଦିବାସୀ ଓ ହରିଜନମାନଙ୍କ ପାଠପଢ଼ାରେ ଆହୁରି ଅବୋଧ ଓ ଅପରିଚିତ ପଦାର୍ଥ ରହୁଥିଲା । ସେମାନଙ୍କ ଘରେ ମଧ୍ୟ ପିଲାମାନଙ୍କୁ ପାଠ ପଢ଼ାରେ କେହି ସାହାଯ୍ୟ ଓ ଉତ୍ସାହ ଦେଉନଥିଲେ । ବହିର ଭାଷା ଓ ପାଠପଢ଼ାଇବା ମାଧ୍ୟମ ଓଡ଼ିଆ ହେଲେ ବି ଆଦିବାସୀ ପିଲାମାନଙ୍କୁ କଷ୍ଟକର ହୋଇଥାଏ । ତେଣୁ ପ୍ରଥମେ ପାଠପଢ଼ା ଓ ପରୀକ୍ଷାରେ ଖରାପ କରିବା ସ୍ୱାଭାବିକ । ସେତେବେଳେ ଶିକ୍ଷକ ଓ ଅଭିଭାବକ ସେମାନଙ୍କୁ ସାହାଯ୍ୟ ନକଲେ ସ୍କୁଲ ଛାଡ଼ି ସେମାନେ ପଳାଉଥିଲେ । ପୁଣି ପାଠପଢ଼ୁଥିବା ପିଲାମାନେ ଚାକିରି ନପାଇ ବେକାର ହେଲେ ଘରେ ଓ ଅନ୍ୟମାନଙ୍କ ମଧ୍ୟରେ ନୈରାଶ୍ୟ ସୃଷ୍ଟି ହେଉଥିଲା ।

**(ଙ)ପ୍ରଶାସନିକ ଅସୁବିଧା :** ରାଜ୍ୟ ସରକାରଙ୍କ ଅଧୀନରେ ଶିକ୍ଷା ଥିବାରୁ କେନ୍ଦ୍ର ସରକାର ପ୍ରାଥମିକ ଶିକ୍ଷାକୁ ପୂର୍ଣ୍ଣଭାବରେ ନିୟନ୍ତ୍ରଣ କରିନଥାନ୍ତି । ଅଧିକାଂଶ ପ୍ରାଥମିକ ବିଦ୍ୟାଳୟ ରାଜ୍ୟ ଓ ସ୍ଥାନୀୟ ସଂସ୍ଥାଗୁଡ଼ିକ ଅଧୀନରେ ଥିଲା । ସେମାନଙ୍କ ଆର୍ଥିକ ସାହାଯ୍ୟ ଆଶାନୁରୂପ ନଥିବାରୁ ବିଦ୍ୟାଳୟର ବହୁ ଅଭାବ ଅସୁବିଧା ରହୁଥିଲା । ଘରଦ୍ୱାର, ଆସବାବପତ୍ର, ଉପକରଣ, ଶିକ୍ଷାଦାନ ଓ ଶିକ୍ଷଣ ସହାୟକ ସାମଗ୍ରୀ ଇତ୍ୟାଦି ଆବଶ୍ୟକ ଅନୁସାରେ ମିଳୁନଥିଲା । ତେଣୁ ବିଦ୍ୟାଳୟ ପରିବେଶ ଓ କାର୍ଯ୍ୟକଳାପ ଆକର୍ଷଣୀୟ ହେବା ଅସମ୍ଭବ ଥିଲା । ଏବେ କେନ୍ଦ୍ର ସରକାର କଳାପଟା ଅଭିଯାନ କରିଥାରେ ସବୁ ପ୍ରକାର ଶିକ୍ଷା ଉପକରଣ ଓ ମାଧ୍ୟମ ପ୍ରାଥମିକ ସ୍କୁଲକୁ ଯୋଗାଇ ଦେଉଛନ୍ତି ।

**ଚ) ପରିଚାଳନାଗତ ଅସୁବିଧା :** ପୂର୍ବେ ଗ୍ରାମବାସୀମାନେ ପ୍ରାଥମିକ ବିଦ୍ୟାଳୟ ନିର୍ମାଣ ଓ ରକ୍ଷଣାବେକ୍ଷଣ ଦାୟିତ୍ୱ ନେଉଥିଲେ । ଏମିତିକି ଶିକ୍ଷକଙ୍କର ରହିବା ଖାଇବା ବ୍ୟବସ୍ଥା ମଧ୍ୟ କରୁଥିଲେ । ମାତ୍ର ପରେ ସରକାର ଶିକ୍ଷାର ଦାୟିତ୍ୱ ନେଲେ ବୋଲି କହି ସେମାନେ ବିଦ୍ୟାଳୟ ବିଷୟ କିଛି ବୁଝିଲେ ନାହିଁ । ପରେ ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତି ପ୍ରାଥମିକ ଶିକ୍ଷା ଦାୟିତ୍ୱ ନେଲେ । ବିଦ୍ୟାଳୟ ସମିତିକୁ ବିଦ୍ୟାଳୟ ଘରଦ୍ୱାର ନିର୍ମାଣ, ସେଗୁଡ଼ିକର ଯତ୍ନନେବା, ଶିକ୍ଷକମାନଙ୍କ ଉପସ୍ଥାନ ଓ ପିଲାମାନଙ୍କ ପ୍ରବେଶ ଓ ଉପସ୍ଥିତିରେ ଉନ୍ନତି କରିବା, ପାଠ୍ୟ ଓ ପାଠ୍ୟପରିପୂରକ କାର୍ଯ୍ୟଗୁଡ଼ିକର ସଙ୍ଗଠନ ଦିଗରେ ଶିକ୍ଷକଙ୍କୁ ସାହାଯ୍ୟ କରିବା ଦାୟିତ୍ୱ ଦିଆଯାଇଥିଲା । ମାତ୍ର ସେମାନଙ୍କର ଉଦାସୀନତା ଓ ଅବହେଳା ଯୋଗୁଁ ବିଦ୍ୟାଳୟର ଅବସ୍ଥା ଶୋଚନୀୟ ହେଲା ।

**ଛ) ଶିକ୍ଷାଦାନ ଓ ଶ୍ରେଣୀ ସଙ୍ଗଠନଗତ ଅସୁବିଧା :** ଶିକ୍ଷାଦାନ ଏକ କଳା ଓ କୌଶଳ । ପିଲାମାନଙ୍କ ମନକୁ ନେଇ ପାଠ ପଢ଼ାଇବା ସହଜ ନୁହେଁ । ଗପ, ଗୀତ, ଅଭିନୟ, ଭ୍ରମଣ, ଆଲୋଚନା ଆଦି ବିଭିନ୍ନ ପଦ୍ଧତିରେ ପାଠ ପଢ଼ାଇଲେ ପିଲାମାନେ ଆନନ୍ଦର ସହିତ ଶିକ୍ଷାଲାଭ କରିବେ । ପାଠପଢ଼ା ସେମାନଙ୍କ ପାଇଁ ବୋଝ ନହୋଇ ସୁଖପ୍ରଦ ହୋଇ ପାରିବ । ପିଲାମାନଙ୍କ ଆଗ୍ରହ ଓ ଆବଶ୍ୟକତାକୁ ଚାହିଁ ପାଠ ପଢ଼ାଯାଉନଥିଲା । ଆଗେ ପିଲାମାନଙ୍କୁ ବାଧ କରି ସବୁ ପଢ଼ାଯାଉଥିଲା । ସବୁ କଥା ଘୋଷି କରି ମନେ ରଖିବାକୁ ପିଲାମାନଙ୍କୁ ବାଧ କରାଯାଉଥିଲା । ସାମାନ୍ୟ ଭୁଲ ବା ବିଶୃଙ୍ଖଳାରେ ପିଲାମାନଙ୍କୁ କଠିନ ଦଣ୍ଡ ଦିଆଯାଉଥିଲା । ତେଣୁ ପିଲାମାନଙ୍କ ମନରେ ଭୟ ଓ ଘୃଣା ଭରି ରହିଥିଲା ଏବଂ ବିଦ୍ୟାଳୟ ପ୍ରତି ସେମାନଙ୍କର ବିତୃଷ୍ଣା ସୃଷ୍ଟି ହେଉଥିଲା ।

## ପଞ୍ଚାୟତିରାଜର ନୂତନ ରୂପ

ପଞ୍ଚାୟତ ଆମ ଦେଶର ଏକ ବହୁପ୍ରାଚୀନ ସଂସ୍ଥା । ଗାଁ ଗହଳିର ସୁଖଦୁଃଖ ଓ ଭଲମନ୍ଦ ପାଇଁ ସେ ଦାୟୀ ରହୁଥିଲେ । ଲୋକମାନଙ୍କ ମଧ୍ୟରେ କଳିକଜିଆ, ଗଣ୍ଡଗୋଳ ଓ ଅନ୍ୟାୟ ଅବିଚାର ଘଟୁଥିଲେ ପଞ୍ଚାୟତ ଆପୋଷ ଭାବରେ ସେସବୁର ସମାଧାନ କରୁଥିଲା । ସ୍ୱାଧୀନ ଭାରତରେ ପଞ୍ଚାୟତ ନୂଆ ରୂପରେ ଗଢ଼ାଗଲା । ୧୯୮୯ ମସିହାରେ ସମ୍ବିଧାନ ସଂଶୋଧନ କରାଯାଇ ପଞ୍ଚାୟତିରାଜ ସଂସ୍ଥାମାନ ଗଢ଼ାଗଲା । ସେମାନଙ୍କୁ ନୂଆ ରୂପ, ନୂଆ କ୍ଷମତା ଓ ନୂଆ କାର୍ଯ୍ୟକ୍ରମ ଦିଆଗଲା । ୧୯୯୨ ମସିହାରେ ନୂଆ ଆଇନ କରାଯାଇ ପଞ୍ଚାୟତିରାଜକୁ ଆହୁରି ଶକ୍ତିଶାଳୀ କରାଗଲା । ଆମ ସମାଜରେ ଅବହେଳିତ ହେଉଥିବା ସ୍ତ୍ରୀ, ହରିଜନ ଓ ଗିରିଜନମାନେ ଏଥିରେ କିପରି ବେଶୀ ସଂଖ୍ୟାରେ ଯୋଗଦେବେ, ତାର ବ୍ୟବସ୍ଥା କରାଗଲା । ଗାଁ ଗଣ୍ଡାର ଉନ୍ନତିରେ ବିଶେଷ ଭାବରେ ଶିକ୍ଷା କ୍ଷେତ୍ରରେ ପଞ୍ଚାୟତିରାଜର ଭୂମିକା ଗୁରୁତ୍ୱପୂର୍ଣ୍ଣ କରାଗଲା । ପ୍ରାଥମିକ ଶିକ୍ଷାର ଉନ୍ନତି ପାଇଁ ପଞ୍ଚାୟତ ସଭ୍ୟ ଓ କର୍ମକର୍ତ୍ତାମାନଙ୍କୁ ବହୁ ଦାୟିତ୍ୱ ଓ କର୍ତ୍ତବ୍ୟ ଦିଆଗଲା ।

## ଶିକ୍ଷାରେ ଆମର ଲକ୍ଷ୍ୟ

''ସବୁରି ପାଇଁ ଶିକ୍ଷା''କୁ ସଫଳ କରିବା ନିମନ୍ତେ

୧) ଛଅରୁ ଚଉଦ ବର୍ଷ ବୟସର ସବୁ ପିଲା ପ୍ରାଥମିକ ଶିକ୍ଷା ପାଇବେ । ଝିଅପିଲାଙ୍କ ଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଦିଆଯିବ ।

୨) ଶିକ୍ଷାଦାନ ଓ ପାଠ ପଢ଼ାଇବା ପ୍ରଣାଳୀରେ ଉନ୍ନତି ଘଟି

ବିଦ୍ୟାଳୟ ପିଲାମାନଙ୍କ ପ୍ରତି ଆକର୍ଷଣୀୟ ହେବା ଉଚିତ । ଏହା ଫଳରେ ପାଠପଢ଼ା ଅଧାରୁ ଛାଡୁଥିବା ପିଲାଙ୍କ ସଂଖ୍ୟା କମିଯାଇ ପାରିବ ।

୩) ଶିକ୍ଷା ଓ ଶିକ୍ଷଣ କାର୍ଯ୍ୟର ଗୁଣାତ୍ମକ ଉନ୍ନତି କରାଯିବା ବାଞ୍ଛନୀୟ ।

୪) ଦୁଇରୁ ପାଞ୍ଚବର୍ଷ ପିଲାମାନଙ୍କୁ ପ୍ରାକ୍ ପ୍ରାଥମିକ ଶିକ୍ଷା ଓ ଯତ୍ନର ବ୍ୟବସ୍ଥାରେ ବିଶେଷ ଉନ୍ନତି କରାଯିବ ।

**ପଞ୍ଚାୟତିରାଜର ଦାୟିତ୍ୱ :**

ଶିକ୍ଷାର ଲକ୍ଷ୍ୟ(ପ୍ରଥମୋକ୍ତ) ପୂରଣ କରିବା ନିମିତ୍ତ ପଞ୍ଚାୟତିରାଜର ଦାୟିତ୍ୱ ହେଲା

୧) ସମସ୍ତ ଗ୍ରାମ ଶିକ୍ଷା ସମିତି ସକ୍ରିୟ ହେବା ଉଚିତ ।

୨) ସବୁ ଗ୍ରାମ ପାଖରେ ପ୍ରାଥମିକ ବିଦ୍ୟାଳୟ ରହିବା ଦରକାର ।

୩) ବିଦ୍ୟାଳୟ ପାଇଁ ନିଜ ଘର/ଜମି ରହିବା ଉଚିତ ।

୪) ପଞ୍ଚାୟତରେ ଥିବା ସ୍କୁଲ ଘରଗୁଡ଼ିକର ଅବସ୍ଥା ଭଲ ରଖାଯିବ ।

୫) ସ୍କୁଲ ସମୟ ପିଲାମାନଙ୍କ ପାଇଁ ସୁବିଧାଜନକ ହେବା ଦରକାର । ପିତାମାତା ପିଲାମାନଙ୍କୁ ଯଥା ସମୟରେ ବିଦ୍ୟାଳୟରେ ଛାଡ଼ିବାରେ ଆପତ୍ତି ନଥିବା ଦରକାର ।

୬) ସେଇ ଅଞ୍ଚଳର ଚାଷବାସ ବା ଅନ୍ୟାନ୍ୟ ଧନ୍ଦା ସହିତ ସ୍କୁଲ ସମୟର କିଛି ବାଧା ରହିବା ଅନୁଚିତ ।

ଶିକ୍ଷାର ଦ୍ୱିତୀୟ ଲକ୍ଷ୍ୟ ପୂରଣ କରିବା ପାଇଁ ପଞ୍ଚାୟତ ସଦସ୍ୟମାନଙ୍କର କର୍ତ୍ତବ୍ୟ ହେଲା–

୧) ଛଅରୁ ଏଗାର ବର୍ଷ ବୟସର ସବୁପିଲା ସ୍କୁଲରେ ପ୍ରବେଶ କଲେ କି ନାହିଁ ଦେଖିବା,

୨) ସେଇ ସବୁ ପିଲା ବିଶେଷ ଭାବରେ ଝିଅ ପିଲାମାନେ ନିୟମିତ ଭାବରେ ସ୍କୁଲକୁ ଆସୁଛନ୍ତି କି ନାହିଁ ଦେଖିବା,

୩) ଗ୍ରାମବାସୀମାନେ ନିୟମିତ ଭାବରେ ସବୁପିଲା ବିଶେଷତଃ ଝିଅ ପିଲାମାନଙ୍କୁ ପ୍ରତିଦିନ ଠିକ୍ ସମୟରେ ସ୍କୁଲକୁ ପଠାଇବାରେ ଆଗ୍ରହୀ ହୋଇଛନ୍ତି କି ନାହିଁ ଦେଖିବା,

୪) ବେଶୀ ପିଲା ପଢୁଥିବା ସ୍କୁଲରେ ଦେଖାଯାଉଥିବା ସମସ୍ୟାଗୁଡ଼ିକର ସମାଧାନ ପାଇଁ କି କି ପଦକ୍ଷେପ ନେଉଛନ୍ତି,

୫) ଶିକ୍ଷକ ଶିକ୍ଷୟିତ୍ରୀମାନେ ପ୍ରତିଦିନ ସ୍କୁଲକୁ ଠିକ୍ ସମୟରେ ଆସୁଛନ୍ତି କି ନାହିଁ ଦେଖିବା,

(୬) ଯଦି କେଉଁ ସ୍କୁଲରେ ଶିକ୍ଷକ ନାହାନ୍ତି, ସେଇ ସ୍ଥାନରେ କାର୍ଯ୍ୟ କରିବା ପାଇଁ ଉପଯୁକ୍ତ ପଦକ୍ଷେପ ନେବା ଯଥା-ଯୁବକସଂଘ, ନାରୀସେବା ସମିତି ମାଧ୍ୟମରେ ଏ ଦିଗରେ ଚେଷ୍ଟା କରିବା ।

୭) ଶ୍ରେଣୀ ଗୃହକୁ ପିଲାମାନଙ୍କ ପାଇଁ ଆକର୍ଷଣୀୟ କରି ଏକ ସୁନ୍ଦର ପରିବେଶ ସୃଷ୍ଟି କରିବା,

୮) ପିଲାମାନଙ୍କୁ ସ୍କୁଲକୁ ପଠାଇବା ପାଇଁ ଅଭିଭାବକମାନଙ୍କ ପକ୍ଷେ ସ୍କୁଲ ସମୟ ସୁବିଧାଜନକ ହେଉଛି କି ନାହିଁ ଦେଖିବା,

୯) ପିଲାମାନେ ଯଦି ସ୍କୁଲ ସମୟରେ କୌଣସି ରୋଜଗାର କରୁଥିବା ଧନ୍ଦାରେ ନିଯୁକ୍ତ ହୋଇଥାନ୍ତି, ସ୍କୁଲକୁ ଆସିବାରେ ଅସୁବିଧା ହେଉଛି କି ନାହିଁ ଦେଖିବା,

୧୦) ପଞ୍ଚାୟତରେ ଥିବା ବିକଳାଙ୍ଗମାନଙ୍କର ଏକ ତାଲିକା କରିବା,

୧୧) ଗ୍ରାମ ଶିକ୍ଷା ସମିତି ଶିକ୍ଷକମାନଙ୍କୁ ସାହାଯ୍ୟ କରୁଛନ୍ତି ନାହିଁ ଦେଖିବା,

୧୨) ଶିକ୍ଷକ ଓ ଅଭିଭାବକଙ୍କ ମଧ୍ୟରେ ଯୋଗାଯୋଗ ରକ୍ଷା କରି ସମୂହ ଆଲୋଚନା ମାଧ୍ୟମରେ ସ୍କୁଲ ଓ ପିଲାମାନଙ୍କ ସମସ୍ୟାଗୁଡ଼ିକର ସମାଧାନ କରିବା,

୧୩) ସ୍କୁଲକୁ ସବୁ ପିଲା ନିୟମିତ ଭାବରେ ଆସିବା ପାଇଁ ଆବଶ୍ୟକ ପଦକ୍ଷେପ ନେବା(ଯୁବକ୍ଲବକୁ ସମ୍ପୃକ୍ତ କରାଇ),

୧୪) ସ୍କୁଲକୁ ନିୟମିତ ଭାବରେ ନ ଆସୁଥିବା ପିଲା ଓ ସ୍କୁଲକୁ ଛାଡ଼ି ପଳାଉଥିବା ପିଲାମାନଙ୍କୁ ପୁଣି ସ୍କୁଲକୁ ଆଣିବା ପାଇଁ ଉପାୟମାନ କରିବା,

ଶିକ୍ଷାର ତୃତୀୟ ଲକ୍ଷ୍ୟ ହେଲା ଶିକ୍ଷା ଓ ଶିକ୍ଷଣ କାର୍ଯ୍ୟର ଗୁଣାତ୍ମକ ଉନ୍ନତି କରିବା ଏବଂ ଏହି ଲକ୍ଷ୍ୟ ହାସଲ କରିବା ପାଇଁ ପଞ୍ଚାୟତ ସଦସ୍ୟମାନେ ଦେଖିବେ–

(୧) ସବୁ ପିଲାଙ୍କର ପାଠ୍ୟ ପୁସ୍ତକ ଓ ଅନ୍ୟାନ୍ୟ ଶିକ୍ଷଣ ସାମଗ୍ରୀ ଅଛି କି ନାହିଁ,

(୨) 'କଳାପଟା ଅଭିଯାନ'ରେ ମିଳିଥିବା ସମସ୍ତ ବହି, ଉପକରଣ ଆଦିର ସଦୁପଯୋଗ ହେଉଛି କି ନାହିଁ,

(୩) କେନ୍ଦ୍ର ସ୍କୁଲରେ ଶିକ୍ଷକଗଣ ନିୟମିତ ଭାବରେ ଏକତ୍ର ହେଉଛନ୍ତି ଓ ଆନନ୍ଦ ଭରା ଶିକ୍ଷଣ ଓ ଶିକ୍ଷାଦାନରେ ସେସବୁ ବ୍ୟବହାର କରୁଛନ୍ତି

୪) ନ୍ୟୁନତମ ଶିକ୍ଷଣ ସ୍ତରରେ ଶିକ୍ଷକମାନେ ତାଲିମପ୍ରାପ୍ତ ହୋଇ ଶିକ୍ଷାଦାନ ଓ ଶିକ୍ଷଣକୁ ସୁଖମୟ କରନ୍ତି କି ନାହିଁ,

୫) କାନ୍ଥବାଡ଼ ଓ କଳାପଟାରେ ଚିତ୍ରାଙ୍କନ କରି ସ୍ଥାନୀୟ ଶିଳ୍ପୀ ଓ କାରିଗରମାନେ ବିଦ୍ୟାଳୟଗୁଡ଼ିକୁ ଆକର୍ଷଣୀୟ କରନ୍ତି, କି ନାହିଁ ।

ଶିକ୍ଷାର ଚତୁର୍ଥ ଲକ୍ଷ୍ୟ ୨ରୁ ୬ ବର୍ଷର ପିଲାମାନଙ୍କୁ ବିଦ୍ୟାଳୟକୁ ଆସିବା ପୂର୍ବରୁ ଶିକ୍ଷା ଓ ଯତ୍ନ ନେବା ଏବଂ ଏହି ପ୍ରସଙ୍ଗରେ ପଞ୍ଚାୟତ ସଦସ୍ୟମାନଙ୍କର କର୍ତ୍ତବ୍ୟ ହେଲା-

୧) ପଞ୍ଚାୟତରେ ଯଥେଷ୍ଟ ସଂଖ୍ୟାର ଅଙ୍ଗନବାଡ଼ି କେନ୍ଦ୍ର ପ୍ରତିଷ୍ଠା କରିବା,

(୨) ସେଗୁଡ଼ିକ ନିୟମିତ ଭାବରେ କାର୍ଯ୍ୟକରୁଥିବା ଦେଖିବା,

୩) ଦୁଇରୁ ଛଅ ବର୍ଷ ବୟସର ସବୁ ପିଲା ବିଶେଷତଃ ଝିଅ ଓ ନିମ୍ନଶ୍ରେଣୀର ପିଲାମାନଙ୍କୁ ଏହିସବୁ କେନ୍ଦ୍ରରେ ଯୋଗଦାନ କରାଇବା,

୪) ଯେଉଁଠି ଅଙ୍ଗନବାଡ଼ି ନାହିଁ, ସେଠାରେ ସ୍ଥାନୀୟ ବାସିନ୍ଦା ଓ ବେସରକାରୀ ସଂସ୍ଥା ତରଫରୁ ଏ ଦିଗରେ ଉଦ୍ୟମ କରିବା,

୫) ଅଙ୍ଗନବାଡ଼ିରୁ ପାସ୍ କରୁଥିବା ସବୁ ପିଲାଙ୍କୁ ପ୍ରାଥମିକ ବିଦ୍ୟାଳୟରେ ପ୍ରବେଶ କରାଇବା ।

ପଞ୍ଚାୟତିରାଜର କର୍ମକର୍ତ୍ତାମାନେ ମଧ୍ୟ ବୁଝିବା ଉଚିତ ଯେ ଶିକ୍ଷା ଶିଶୁର ଜନ୍ମଗତ ଅଧିକାର । ଏହି ଅଧିକାର ପାଇବାରେ ଯେଉଁସବୁ ପ୍ରତିବନ୍ଧକ ରହିଛି, ସେଗୁଡ଼ିକୁ ଦୂର କରିବା ସେମାନଙ୍କର କର୍ତ୍ତବ୍ୟ । ଶିଶୁର ସ୍ୱାସ୍ଥ୍ୟ, ସୁରକ୍ଷା ଓ ବିକାଶ ନିମନ୍ତେ ସେମାନେ କାର୍ଯ୍ୟ କରିବା ଏବଂ

ସେଥିପାଇଁ ଆବଶ୍ୟକ ପଦକ୍ଷେପ ନେବା ଉଚିତ । ପୁଅ ପିଲା ପରିବାର ମଧ୍ୟରେ ଅଧିକ ଦାୟିତ୍ୱ ନେବା ଦରକାର ଏବଂ ଝିଅପିଲା ଗତାନୁଗତିକ କାର୍ଯ୍ୟରେ ସାହାଯ୍ୟ କରିବା ଆବଶ୍ୟକ । ପରିବାର ମଧ୍ୟରେ ସଦ୍‌ଭାବ, ସମ୍ପ୍ରୀତି ଓ ସହଯୋଗ ରହିବା ଉଚିତ ଏବଂ ନିଜ ନିଜ ମଧ୍ୟରେ ସଂଘର୍ଷ ଓ ହିଂସା ଦୂର କରିବା ବାଞ୍ଛନୀୟ । ଏହାଦ୍ୱାରା ଆମ ଘର ସଂସାର ସୁଖଶାନ୍ତି ପୂର୍ଣ୍ଣ ହେବ ।

**ସବୁରି ପାଇଁ ଶିକ୍ଷା : ସ୍ୱପ୍ନ ଓ ସତ୍ୟ :**

ସବୁ ପିଲା ପାଠ ପଢ଼ିବେ । ସେମାନେ ସାଧାରଣ ବିଦ୍ୟାଳୟକୁ ଆସନ୍ତୁ ବା ଅଣଆନୁଷ୍ଠାନିକ ଶିକ୍ଷାକେନ୍ଦ୍ରରେ ପଢ଼ନ୍ତୁ ସେମାନଙ୍କ ପାଇଁ ଏହି ସ୍ଥାନ ଓ ଶିକ୍ଷଣ ଆକର୍ଷଣୀୟ ଓ ଆନନ୍ଦମୟ ହେବା ଦରକାର । ପାଠପଢ଼ା ସେମାନଙ୍କ ମନକୁ ପାଇବ, ପାଠପଢ଼ାରେ ସହାୟକ ହେଉଥିବା ବିଭିନ୍ନ ଉପକରଣ ଓ ସାମଗ୍ରୀଗୁଡ଼ିକୁ ସେମାନେ ବ୍ୟବହାର କରିବେ ଏବଂ ଯେଉଁ ଭାଷାରେ ସେମାନେ ବୁଝି ପାରିବେ, ଶିକ୍ଷକ ଶିକ୍ଷୟିତ୍ରୀ ସେମାନଙ୍କୁ ସେଇ ଭାଷାରେ ପଢ଼ାଇବେ । ଶ୍ରେଣୀ ସମୟରେ ଶିକ୍ଷକ ସ୍ନେହ, ସଦ୍‌ଭାବ ଓ ସରସ ଭାବ ନେଇ କାର୍ଯ୍ୟ କରିବେ । ସ୍କୁଲ ହେବ ସେମାନଙ୍କର ଖେଳ ଘର ଆଉ ଫୁଲବଗିଚା । ଚଉଦିଗର ସାହୀ ପଡ଼ିଶା ଓ ପଡ଼ା ହେବ ସେମାନଙ୍କର ଅତି ଆଦରର ଓ ଆପଣାର ଜାଗା । ଏହିସବୁ ସ୍ଥାନରେ ସେମାନେ ଯେଉଁସବୁ ଅନୁଭୂତି ଲାଭ କରିବେ, ସେସବୁ ହେବ ଶିକ୍ଷଣୀୟ । ସମସ୍ତ ଶିକ୍ଷଣ ଅନୁଭୂତିକୁ ନେଇ ପିଲାମାନେ ଜ୍ଞାନ ଲାଭ କରିବେ, କୌଶଳ ଶିକ୍ଷା କରିବେ, ଆଉ ଭଲ ଆଚରଣ ତଥା ସଦାଚାର ଶିକ୍ଷା କରିବେ ।

ଶ୍ରେଣୀ କୋଠରୀରୁ ଆରମ୍ଭ କରି ବାଡ଼ିବଗିଚା, ଖେଳ ପଡ଼ିଆ, ସଭାସମିତି ଆଦି ସବୁଠାରେ ପିଲାମାନେ ଯୋଗଦେବେ, ସେମାନଙ୍କୁ ଏସବୁଥିରେ ଯଥେଷ୍ଟ ସ୍ୱାଧୀନତା ଓ ଆନନ୍ଦ ମିଳିବ । ପାଠପଢ଼ା ବୋଝ ନହୋଇ ସୁଖକର ହେବ । ଶିକ୍ଷକ ଶିକ୍ଷୟିତ୍ରୀ ମଧ ସ୍ୱାଧୀନ ଭାବରେ କାର୍ଯ୍ୟ କରିବେ-ପାଠପଢ଼ାଇବେ, ଖେଳାଇବେ, ବୁଲାଇବେ, ଦେଖାଇବେ ଓ ଶିଖାଇବେ । ଉପରୁ କିଛି଼ି ଲଦି ଦିଆଯିବ ନାହିଁ । ନିଜ ମନକୁ ଯେଉଁଥିରେ ନିଜେ ସ୍ୱଚ୍ଛନ୍ଦ, ସ୍ୱାଧୀନ ଓ ସମର୍ଥ ମନେ କରିବେ, ତାହା କରିପାରିବେ । ଛାତ୍ରଛାତ୍ରୀ ଓ ଶିକ୍ଷକ ଶିକ୍ଷୟିତ୍ରୀ ସାଥୀହୋଇ ସବୁ କରିବେ । ସବୁରି ସହଯୋଗ, ଶ୍ରଦ୍ଧା ଓ ସୌହାର୍ଦ୍ଦ୍ୟ ମଧ୍ୟରେ ସକଳ କାର୍ଯ୍ୟ ସମ୍ପାଦିତ ହେବ ।

ପଞ୍ଚାୟତିରାଜରେ ବିଦ୍ୟାଳୟ ସମିତି ବା ଗ୍ରାମ ଶିକ୍ଷା ସମିତି ଅଧିକ ସକ୍ରିୟ ହେବ, ଅଧିକ ଦାୟିତ୍ୱ ନେବ । ତାର ସଭ୍ୟମାନେ ଓ କର୍ମକର୍ତ୍ତାଗଣ ବିଦ୍ୟାଳୟର ବିକାଶ ପାଇଁ ଯାହା ଦରକାର, ସବୁ କରିବେ ଓ କରାଇବେ । ପିଲାମାନଙ୍କର ନାମ ଲେଖା ଓ ଉପସ୍ଥାନ, ଶିକ୍ଷକମାନଙ୍କର ଉପସ୍ଥାନ ଓ ଶିକ୍ଷାଦାନ, ଖେଳ, ବଗିଚା କାମ, ହାତକାମ, ନାଚଗୀତ ଓ ଅଭିନୟ ଇତ୍ୟାଦି ସବୁରି ସୁସଙ୍ଗଠନ ପାଇଁ ସେମାନେ ଦାୟିତ୍ୱ ଗ୍ରହଣ କରିବେ, ସକ୍ରିୟ ଓ ଅଙ୍ଗୀକାରବଦ୍ଧ ହେବେ । ପିଲାମାନଙ୍କ ବ୍ୟକ୍ତିତ୍ୱର ବହୁମୁଖୀ ବିକାଶ ଘଟିବ । ସବୁ ପିଲା ସୁନା ପିଲା ହେବେ, ସୁନାଗରିକ ହେବେ, ଭଲ ମଣିଷ ହେବେ । ନିଜ ଜୀବନକୁ ସୁଖମୟ ଓ ଶାନ୍ତିମୟ କରିବେ । ନିଜ ସମାଜ, ନିଜ ଦେଶକୁ ଆଗେଇ ନେବେ, ସରସ, ସୁନ୍ଦର ଓ ସମୃଦ୍ଧ କରିତୋଳିବେ । ପଞ୍ଚାୟତିରାଜ ଯେତେ ଅଧିକ ଦାୟିତ୍ୱପୂର୍ଣ୍ଣ ଓ ସକ୍ରିୟ ହେବ, ସାର୍ବଜନୀନ ପ୍ରାଥମିକ ଶିକ୍ଷା ସେତେ ଶୀଘ୍ର ସଫଳ ଓ ସାର୍ଥକ ହୋଇପାରିବ । ଏହା ହିଁ ଆମର ମୁଖ୍ୟ ଆଭିମୁଖ୍ୟ ଓ ଆଦର୍ଶ କର୍ତ୍ତବ୍ୟ ହେବା ଉଚିତ । ଏହାରି ସାଫଲ୍ୟରେ ହିଁ ଆମର ସ୍ୱପ୍ନ ସତ୍ୟରେ ସାକାର ହୋଇପାରିବ ।

*୨୯୩୫, ଗୌତମନଗର, ଭୁବନେଶ୍ୱର-୭୫୧୦୦୨*

• • •

| | | |
|---|---|---|
| ୧୮୬୭-୬୮ | : | ରତ୍ନାନାୟକଙ୍କ ନେତୃତ୍ୱରେ କେନ୍ଦୁଝର ବିଦ୍ରୋହ-ରତ୍ନାଙ୍କର ସମେତ ୬ ଜଣଙ୍କୁ ଫାଶୀ (୧୮୬୮ ନଭେମ୍ବର ୨୮) । |
| ୧୮୮୦ | : | ମାଲକାନଗିରିରେ ତାମାଦୋରାଙ୍କ ନେତୃତ୍ୱରେ କୋୟା ମେଳି-ଇଂରେଜଙ୍କ ଗୁଳିରେ ଶହୀଦ । |
| ୧୮୮୧ | : | ମୟୂରଭଞ୍ଜରେ ପ୍ରଜାମେଳି । |
| ୧୮୮୨ | : | କଳାହାଣ୍ଡିରେ କମଲ ମାଝିଙ୍କ ନେତୃତ୍ୱରେ କନ୍ଧମେଳି- ୧୯ ଜଣ ବିଦ୍ରୋହୀଙ୍କୁ ଗୁଳି କରି ହତ୍ୟା, ୭ ଜଣଙ୍କୁ ଫାଶୀ । |
| ୧୮୮୪ | : | ଫେବୃଆରୀ ୨୮ -ଆସୀରଗଡ଼ ଦୁର୍ଗରେ ସୁରେନ୍ଦ୍ର ସାଏଙ୍କ ମୃତ୍ୟୁ । |
| ୧୮୯୧-୯୩ | : | ଧରଣୀଧର ଭୂୟାଁଙ୍କ ନେତୃତ୍ୱରେ କେନ୍ଦୁଝର ମେଳି । |
| ୧୮୯୪ | : | ବୀର୍ସା ମୁଣ୍ଡାଙ୍କ ବିଦ୍ରୋହ-ଜେଲ ଭିତରେ ଖାଦ୍ୟରେ ବିଷ ଦେଇ ହତ୍ୟା । |
| ୧୯୦୭-୮ | : | ସ୍ୱଦେଶୀ ଆନ୍ଦୋଳନ । |
| ୧୯୧୧ | : | ତାଳଚେର ବିଦ୍ରୋହ । |
| ୧୯୧୩ | : | ଦଶପଲ୍ଲା ବିଦ୍ରୋହ-ବହୁ ବିଦ୍ରୋହୀଙ୍କୁ ଫାଶୀ । |
| ୧୯୧୪ | : | ସନ୍ତ୍ରାସବାଦୀ ଆନ୍ଦୋଳନ । |

# ଓଡ଼ିଶାର ସଂସ୍କୃତ ନାଟକ ପରମ୍ପରା

● ଡଃ କରୁଣାକର ବିଶୋଇ

ଭାରତରେ ସଂସ୍କୃତ ନାଟ୍ୟକଳାର ପରମ୍ପରା ବହୁ ପ୍ରାଚୀନ । ଅନ୍ୟ ସମସ୍ତ ଆର୍ଯ୍ୟଭାଷା ଏହି ସଂସ୍କୃତ ନାଟ୍ୟକଳାକୁ ଅନୁକରଣ କରିଛନ୍ତି । ସଂସ୍କୃତରେ 'ନଟ୍' ଧାତୁରୁ ନାଟକର ଉତ୍ପତ୍ତି । "କାବ୍ୟେଷୁ ନାଟକମ୍ ରମ୍ୟମ୍" । ସାହିତ୍ୟର ସମସ୍ତ ବିଭାଗ ମଧ୍ୟରେ ନାଟକର ରମଣୀୟତା ସ୍ୱୀକାର୍ଯ୍ୟ । ନାଟ୍ୟତତ୍ତ୍ୱବିଦ୍‌ମାନଙ୍କ ମତରେ ଋକ୍‌ବେଦର ସମ୍ବାଦସୂକ୍ତଗୁଡ଼ିକରେ ନାଟ୍ୟସୃଷ୍ଟିର ପ୍ରଥମ ସୂଚନା ମିଳେ । 'ନାଟ୍ୟଦର୍ପଣ' ଅନୁସାରେ "ନାଟକମିତି ନାଟୟତି ବିଚିତ୍ରଂ ରଞ୍ଜନା ପ୍ରବେଶନ ସଭ୍ୟାନାଂ ହୃଦୟଂ ନିର୍ଣ୍ଣୟାତୀତ ନାଟକମ୍" ଅର୍ଥାତ୍ ମନୋରଞ୍ଜନ ମାଧ୍ୟମରେ ଯାହା ଦର୍ଶକମାନଙ୍କୁ ବିମୁଗ୍ଧ କରେ; ତାହା ନାଟକ । ମନୁଷ୍ୟ ଅନୁକରଣପ୍ରିୟ । ଆଙ୍ଗିକ, ବାଚିକ ତଥା ସାତ୍ତ୍ୱିକ ଅନୁକରଣ ଦ୍ୱାରା ଦର୍ଶକମାନଙ୍କ ମନୋରଞ୍ଜନ କରି ସାଂସାରିକ ଚିନ୍ତାରୁ ମୁକ୍ତ କରିବା, ବିଭିନ୍ନ ପର୍ବପର୍ବାଣି ଏବଂ ଉତ୍ସବଗୁଡ଼ିକୁ ଆନନ୍ଦ ମୁଖର କରିବା ମାଧ୍ୟମରେ ଜନସମାଜକୁ ଉପଦେଶ ଦେବା ନିମନ୍ତେ ନାଟ୍ୟକଳାର ସୃଷ୍ଟି । ନାଟକରେ ସାମାଜିକ ବ୍ୟବସ୍ଥା, ଲୋକ ଚରିତ୍ର, ସୁଖ, ଦୁଃଖ, ଦେଶର ଶିଳ୍ପ, ବାଣିଜ୍ୟ, କଳା ଓ ସଂସ୍କୃତି ଓ ସାଂସାରିକ ଜ୍ଞାନ ପ୍ରଭୃତିର ଚର୍ଚ୍ଚା କରାଯାଇଥାଏ । ଜନସମାଜର ଶିକ୍ଷଣୀୟ ଓ ଦର୍ଶକମାନଙ୍କ ରୁଚିବୋଧକୁ ଲକ୍ଷ୍ୟକରି ନାଟକ ସୃଷ୍ଟି କରାଯାଏ । ଏହା ଏକ ପରିବର୍ତ୍ତନଶୀଳ କଳା କହିଲେ ଅତ୍ୟୁକ୍ତି ହେବ ନାହିଁ । 'ଦୃଶ୍ୟକାବ୍ୟ'ର ରଚୟିତା କଳାକାର (ଅଭିନେତା, ଅଭିନେତ୍ରୀ) ଓ ଦର୍ଶକ ବା ଶ୍ରୋତା, ଏହି ତିନି ପାହ୍ୟକ ବ୍ୟତୀରେକ ନାଟକ ପୂର୍ଣ୍ଣାଙ୍ଗ ହୋଇପାରେନା, କାରଣ ରଚୟିତା ଏହାକୁ ସୃଷ୍ଟି କରିବା ପାଇଁ ଯେତିକି ଦାୟୀ , କଳାକାରମାନେ ପ୍ରଦର୍ଶନ କରିବାରେ ସେତିକି ଦାୟୀ । ଦର୍ଶକ ବା ଶ୍ରୋତା ନଥିଲେ ଓ ନାଟକକୁ ଅନୁଭବ ନକଲେ ଏହାର ପ୍ରଦର୍ଶନ ମୂଲ୍ୟହୀନ । ଏଣୁ, ନାଟକକୁ ଏକ ମିଶ୍ରିତ କଳା ବୋଲି କୁହାଯାଏ ।

ପ୍ରାଚ୍ୟ ନାଟ୍ୟତତ୍ତ୍ୱବିଦ୍‌ମାନେ ଦୃଶ୍ୟକାବ୍ୟ ବା ଅଭିନୟକୁ ଚାରିଭାଗରେ ବିଭକ୍ତ କରିଛନ୍ତି, ଯଥା-ସାତ୍ତ୍ୱିକ, ବାଚିକ, ଆଙ୍ଗିକ ଓ ଆହାର୍ଯ୍ୟ । ସ୍ତମ୍ଭ, ସ୍ୱେଦ, ରୋମାଞ୍ଚକୁ ସାତ୍ତ୍ୱିକ, କଥନକୁ ବାଚିକ ; ଅବୟବ ପ୍ରଦର୍ଶନକୁ ଆଙ୍ଗିକ ଓ ବିଷୟବସ୍ତୁକୁ ବାସ୍ତବ ରୂପ ଦେବାକୁ ଆହାର୍ଯ୍ୟ । ଏହି ଅଭିନୟକୁ ସାକାର ରୂପଦେବା ନଟର କର୍ତ୍ତବ୍ୟ । ଆଳଙ୍କାରିକମାନେ ଅଭିନୟକୁ ଦୁଇଭାଗରେ ବିଭକ୍ତ କରିଥାନ୍ତି-ରୂପକ ଓ ଉପରୂପକ । ପଣ୍ଡିତମାନେ ଦୃଶ୍ୟକାବ୍ୟ ବା ରୂପକକୁ ନାଟକ, ପ୍ରକରଣ, ଅଙ୍କ, ବ୍ୟାୟୋଗ, ଭାଣ, ସମବକାର, ବୀଥୀ, ପ୍ରହସନ, ଡ଼ିମ ବା ଇହାମୃଗ ଭେଦରେ ଦଶ ଭାଗରେ ବିଭକ୍ତ କରିଛନ୍ତି । ସେହିପରି ତ୍ରୋଟକ, ନାଟିକା, ଗୋଷ୍ଠୀ, ସଟ୍ଟକମ୍, ନାଟ୍ୟ-ରାସକମ୍, ପ୍ରସ୍ଥାନକମ୍, ଉଲ୍ଲାପ୍ୟମ୍, କାବ୍ୟମ୍, ପ୍ରେଙ୍ଖଣମ୍, ସଂଲାପକମ୍, ଶ୍ରୀଗଦିତମ୍, ରାସକମ୍, ଶିଳ୍ପକମ୍, ବିଳାସିକା, ଦୁର୍ମଲ୍ଲିକା, ହଲ୍ଲୀଶଃ, ଭାଣିକା, ପ୍ରକରଣିକା-ଏହି ଅଠରଟି ଉପରୂପକର ପ୍ରକାର ଭେଦ ।

ସଂସ୍କୃତ ନାଟକରେ 'ପ୍ରବେଶକ'ର ବ୍ୟବହାର କରାଯାଇଥାଏ । ରସପରିକଳ୍ପନାକୁ ଲକ୍ଷ୍ୟ ରଖି ପ୍ରୟୋଜନୀୟ ବୃତ୍ତି ବା ଅଙ୍ଗସଜ୍ଜାର ବ୍ୟବହାର କରାଯାଇଥାଏ । ଏହି ବୃତ୍ତି ପୁଣି ଭାରତୀ, ସାତ୍ତ୍ୱତୀ, କୈଶିକି, ଆରଭଟ୍ଟୀ ଭେଦରେ ଚାରିପ୍ରକାର । ଭାରତୀରେ କେବଳ ପୁରୁଷ ଚରିତ୍ରମାନଙ୍କର ଓ ସଂଳାପ ସଂସ୍କୃତ ଭାଷାର ହୋଇଥାଏ । ସାତ୍ତ୍ୱତୀରେ ବୀର, ଅଦ୍ଭୁତ, କରୁଣ, ଶୃଙ୍ଗାର ରସର କଳ୍ପନା କରାଯାଇଥାଏ । ବିଚିତ୍ର ବେଶ ଭୂଷା, ସଜ୍ଜିତ ପାତ୍ର ଓ ଶୃଙ୍ଗାର ରସର ବ୍ୟବହାର କୈଶିକୀରେ ମିଳିଥାଏ ଓ ଆରଭଟ୍ଟୀ ବୃତ୍ତିରେ ପାତ୍ର, ପାତ୍ରୀ, ଦମ୍ଭ ଓ ମିଥ୍ୟାଚାରଣ ପ୍ରଦର୍ଶନ କିମ୍ବା ପୁରୁଷ ଭଳି ଆଚରଣ କରିଥାନ୍ତି ।

ସଂସ୍କୃତ ନାଟକ ଘଟଣାବହୁଳ ହେଲେ ମଧ୍ୟ ଅନ୍ତର୍ଦ୍ୱନ୍ଦ୍ୱ ଓ ବହିର୍ଦ୍ୱନ୍ଦ୍ୱର ତୀବ୍ରତା କମ୍ ପରିଲକ୍ଷିତ ହୁଏ । ବିଷୟବସ୍ତୁ ରାମାୟଣ, ମହାଭାରତ ଓ ଅନ୍ୟାନ୍ୟ ପୌରାଣିକ ଗ୍ରନ୍ଥକୁ ଆଧାର କରି ଥିଲେହେଁ ସମସାମୟିକ ଜୀବନର ପ୍ରତିଛବି ବିଶେଷ ନଥାଏ । ଅଧିକାଂଶ ନାଟକରେ ନୈରାଶ୍ୟ, ଦୁଃଖ ବା ଅଭାବବୋଧ କମ୍ ଥାଏ । ଏଣୁ ବାସ୍ତବ ଘଟଣା ସାହାଯ୍ୟରେ ନାଟକର ଚିରନ୍ତନ ଭାବମୂର୍ତ୍ତିର ଯେଉଁ ରୂପ ଦର୍ଶକମାନଙ୍କ ଆଗରେ ଫୁଟି ଉଠେ, ସଂସ୍କୃତ ନାଟକରେ ତାହା ନାହିଁ ।

ନାଟକ ରଚନା ଓ ତାହାର ଅଙ୍ଗସଜ୍ଜା ବିଷୟରେ ସମ୍ୟକ୍ ଧାରଣା ବିଶ୍ୱନାଥ କବିରାଜ ତାଙ୍କ ସାହିତ୍ୟ ଦର୍ପଣରେ ଏହିଭଳି ଭାବରେ ଦେଇଛନ୍ତି : କୌଣସି ଗୋଟିଏ ପ୍ରସିଦ୍ଧ ବୃତ୍ତାନ୍ତକୁ ନେଇ ନାଟକ ରଚନା କରାଯିବା ବିଧେୟ । ଏଥିରେ ପଞ୍ଚସନ୍ଧି ରହିବ । ବିଳାସ, ଧୈର୍ଯ୍ୟ, ଗାମ୍ଭୀର୍ଯ୍ୟ ପ୍ରଭୃତି ନାୟକ ଗୁଣଯୁକ୍ତ ଓ ନାୟକର ଅଭ୍ୟୁଦୟ ଥିବ । ସୁଖ ଦୁଃଖ ଉଭୟ ବର୍ଣ୍ଣିତ ହୋଇଥିବ । ଶୃଙ୍ଗାର, ବୀର ଆଦି ନାନାଦି ରସଯୁକ୍ତ ହୋଇ ପାଞ୍ଚଠାରୁ ଦଶ ପର୍ଯ୍ୟନ୍ତ ଅଙ୍କ ପର୍ଯ୍ୟବସିତ ହୋଇଥିବ । ଦୟା, କ୍ଷମା ଓ ଦାକ୍ଷିଣ୍ୟାଦି ଗୁଣଯୁକ୍ତ ଜଣେ ରାଜା ନାୟକ ସ୍ଥାନ ଅଳଙ୍କୃତ କରିଥିବେ । ଏଥିରେ ଶୃଙ୍ଗାର କିମ୍ବା ବୀରରସ ଅଙ୍ଗୀ ଓ ଅନ୍ୟ ରସମାନଙ୍କୁ ଅଙ୍ଗ ଭାବରେ ବର୍ଣ୍ଣନା କରାଯିବ । ଏହି ନାଟକର ଶେଷ ସନ୍ଧିରେ ଅଦ୍ଭୁତ କଥା ବର୍ଣ୍ଣନା ରହିବ । ଚାରିପାଞ୍ଚ ଜଣ ସହନାୟକ ଏଥିରେ ସହାୟତା କରିବେ । ନାଟକ ଆରମ୍ଭରେ ଧୀର ଭାବରେ ବଢ଼ିବ । ମଝି ସୋପାନରେ ସମ୍ପୂର୍ଣ୍ଣ ବୃଦ୍ଧି ହୋଇ ପୁଣି ଶେଷ ଆଡ଼କୁ ଆସ୍ତେ ଆସ୍ତେ କମିବ ।

ନାଟକଟିକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ପୂର୍ବରଙ୍ଗ, ସଭାପୂଜା, ପ୍ରସ୍ତାବନା, ବୀଜ, ବିନ୍ଦୁ, ପତାକା ଓ ପ୍ରକରୀ ପ୍ରଭୃତି ବିଧି ବିଧାନ ରହିବା ଉଚିତ୍ । ସମସ୍ତ ସଂସ୍କୃତ ନାଟକ ଏଇ ସବୁ ବିଧାନରେ ପରିପୁଷ୍ଟ ।

ଉର୍ଦ୍ଧ୍ୱଭାରତୀୟ ସ୍ତରରେ ସଂସ୍କୃତ ଭାଷାର ବ୍ୟବହାର ବହୁ ପ୍ରାଚୀନ । ଓଡ଼ିଶାରେ ରାଜନ୍ୟ ମଣ୍ଡଳୀ ଓ ପଣ୍ଡିତବର୍ଗ ଏଇ ଭାଷାକୁ ବ୍ୟବହାର କରି ସମସ୍ତ କାବ୍ୟ କବିତା ରଚନା କରୁଥିଲେ । ଏହାକୁ ଦେବଭାଷା କୁହାଯାଏ । ଭାରତର ବିଭିନ୍ନ ରାଜସଭାକୁ ଯାଇ ଓଡ଼ିଆ ବିଦ୍ୱାନ୍‌ମାନେ ସଙ୍ଗୀତ ରଚନା କରିବା; ସାହିତ୍ୟ, ଧର୍ମଶାସ୍ତ୍ର ପ୍ରଭୃତି ଆଲୋଚନାରେ ଭାଗ ନେବା କେବଳ ସଂସ୍କୃତ ଭାଷା ଯୋଗୁଁ ସମ୍ଭବ ହୋଇ ପାରୁଥିଲା । ଓଡ଼ିଶାରେ ଚତୁର୍ଦ୍ଦଶ ଶତାବ୍ଦୀ ଓ ତା' ପରଠାରୁ ଓଡ଼ିଆ ଲେଖା ପୋଥି ମିଳେ । ଏକାଦଶ ଶତାବ୍ଦୀରେ

ଓଡ଼ିଆ ଭାଷାରେ ଲିଖିତ ଗୋଟିଏ ଅଭିଲେଖ ମିଳେ । ଏହା ପୂର୍ବରୁ ଏହି ଭାଷା ସମୃଦ୍ଧ ଅବସ୍ଥାରେ ଥିଲେ ମଧ୍ୟ ସମସ୍ତ ଲେଖା ପଢ଼ା ସଂସ୍କୃତ ଭାଷାରେ ଚାଲୁ ଥିବାରୁ ଓଡ଼ିଆ ଓ ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାମାନଙ୍କର ଆଦର ନଥିଲା କହିଲେ ଚଳେ ।

ଓଡ଼ିଶାର ବିଦ୍ୱାନ୍‌ମାନେ ସଂସ୍କୃତ ଭାଷାରେ ବହୁ ଉଚ୍ଚକୋଟୀର ନାଟକ ରଚନା ମାଧ୍ୟମରେ ଅଶେଷ କୀର୍ତ୍ତି ପରବର୍ତ୍ତୀ ଦାୟାଦମାନଙ୍କ ପାଇଁ ଛାଡ଼ି ଯାଇଛନ୍ତି । ଅଷ୍ଟମ ଶତାବ୍ଦୀରେ ମୁରାରୀ ମିଶ୍ରଙ୍କ ରଚିତ "ଅନର୍ଘରାଘବ" ନାଟକ ବର୍ତ୍ତମାନ ସୁଦ୍ଧା ମିଳିଥିବା ସମସ୍ତ ନାଟକ ମଧ୍ୟରେ ସର୍ବ ପ୍ରାଚୀନ । ନାଟ୍ୟକାର ମୁରାରୀ ତାଙ୍କ ରଚନାର ଆରମ୍ଭରେ ଜଗନ୍ନାଥଙ୍କ ରଥଯାତ୍ରା ବିଷୟରେ ସୂତ୍ରଧାର ମୁଖରେ ପ୍ରକାଶ କରିଛନ୍ତି । ସମ୍ଭବତଃ ଏହି ନାଟକ ଠାକୁରଙ୍କ ଉଦ୍ଦେଶ୍ୟରେ ରଥଯାତ୍ରା ସମୟରେ ମଞ୍ଚସ୍ଥ କରାଯାଇଥିଲା । ଏଥିରୁ ସ୍ପଷ୍ଟ ଯେ 'ଅନର୍ଘରାଘବ' ଓଡ଼ିଶାରେ ହିଁ ରଚିତ ହୋଇଥିଲା ଓ ଏହା ଓଡ଼ିଶା ଇତିହାସରେ ଏକ ମହତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରେ ।

'ଅନର୍ଘରାଘବ' ପରେ ପରେ ରଚିତ ହୋଇଥିବା ଅନ୍ୟ କୌଣସି ନାଟକ ଏ ପର୍ଯ୍ୟନ୍ତ ହସ୍ତଗତ ହୋଇ ନଥିଲେ ମଧ୍ୟ ଏକାଦଶ ଶତାବ୍ଦୀରେ ସୃଷ୍ଟି ହୋଇଥିବା ନାଟକ 'ପ୍ରବୋଧ ଚନ୍ଦ୍ରୋଦୟ' ନାଟ୍ୟକାର କୃଷ୍ଣମିଶ୍ରଙ୍କ ଏକ ଅଭିନବ କୃତି । ଏହି ନାଟକ ରଚନା ପରେ ବାରଣାସୀ ରାଜସଭାର ବିଦ୍ୱାନ୍ ମଣ୍ଡଳୀ ସମ୍ମୁଖରେ ଅଭିନୀତ କରାଯାଇଥିଲା । ନାଟକର ଆରମ୍ଭରେ ଏହା ଓଡ଼ିଶାରେ ରଚନା ହୋଇଥିଲା ଓ ନାଟ୍ୟକାର ଉତ୍କଳୀୟ ବୋଲି ପ୍ରମାଣ ମିଳେ ।

ଦ୍ୱାଦଶ ଶତାବ୍ଦୀରେ ରଚିତ ସୁନାମଧନ୍ୟ ନାଟକ 'ଚନ୍ଦ୍ରକଳା' ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜଙ୍କ ସୃଷ୍ଟି । ନାଟ୍ୟକାର ତାଙ୍କ ପୃଷ୍ଠପୋଷକ ମହାରାଜ ନିଃଶଙ୍କ ଭାନୁ ଦେବଙ୍କ ବୀରତ୍ୱ ଓ ମହାନୁଭବତା ବର୍ଣ୍ଣନା କରିଛନ୍ତି । ନାଟକ ଏକ କାଳ୍ପନିକ ବିଷୟବସ୍ତୁର ଆଧାରରେ ରଚିତ । ଏହି ନାଟକ ନିଃଶଙ୍କଭାନୁଙ୍କ ଗୌଡ଼ ବିଜୟ ପରେ ଆନନ୍ଦ ଉଲ୍ଲାସ୍ ମଧ୍ୟରେ ପାତ୍ରମନ୍ତ୍ରୀ ଓ ପ୍ରଜାବୃନ୍ଦଙ୍କ ମନୋରଞ୍ଜନାର୍ଥେ ରାଜଧାନୀରେ ଅଭିନୀତ ହୋଇଥିଲା ।

ପଞ୍ଚଦଶ ଶତାବ୍ଦୀରେ ସୂର୍ଯ୍ୟବଂଶୀ ଗଜପତି ବଂଶର ପ୍ରତିଷ୍ଠାତା କପିଳେନ୍ଦ୍ରଦେବ 'ପର୍ଶୁରାମ ବିଜୟ' ନାମକ ଏକ ବ୍ୟାୟୋଗ ରଚନା କରିଥିଲେ । ଖ୍ରୀ.ଅ ୧୪୫୮ରେ ଦେବରକୋଣ୍ଡା ଯୁଦ୍ଧରେ ଜୟଲାଭ କରିବା ସ୍ମାରକୀ ସ୍ୱରୂପ ଗଜପତି ଏହି ନାଟକ ରଚନା କରିଥିଲେ । କପିଳେନ୍ଦ୍ର ଏଥିରେ ରାମାୟଣର ବୀର ପର୍ଶୁରାମଙ୍କ ସହ ନିଜକୁ ତୁଳନା କରିଛନ୍ତି ।

କପିଳେନ୍ଦ୍ରଦେବଙ୍କ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ରାଜ ସିଂହାସନ ଅଳଙ୍କୃତ କରିଥିଲେ । ସେ ନିଜେ ପଣ୍ଡିତ ଥିଲେ ଓ ଅନେକ ସାହିତ୍ୟ ଓ ତନ୍ତ୍ରକୃତି ରଚନା କରିଥିଲେ । ତତ୍ ସଙ୍ଗେ ସଙ୍ଗେ ପଣ୍ଡିତମାନଙ୍କର ପୃଷ୍ଠପୋଷକତା କରିଥିଲେ । ରାଜାଙ୍କ ଅନୁଗ୍ରହରୁ ବିଭିନ୍ନ କାବ୍ୟ କବିତା ରଚୟିତା ପଣ୍ଡିତମାନେ ପୁରୁଷୋତ୍ତମଙ୍କ ନାମରେ ନିଜକୃତି ଭଣିତା କରିବା ଗୌରବାବହ ମନେ କରୁଥିଲେ । ଏଣୁ ସବୁ ସାହିତ୍ୟ, ଧର୍ମଶାସ୍ତ୍ର, ତନ୍ତ୍ର ଓ ନାଟକ ପୁରୁଷୋତ୍ତମଙ୍କ କୃତ ବୋଲି ଜଣାଯାଏ । କେତେକ କୃତିକୁ ବାଦ୍ ଦେଲେ ପରବର୍ତ୍ତୀ କାଳରେ ଗବେଷଣା ଫଳରେ ପ୍ରକୃତ ଲେଖକଙ୍କ ନାମ ଜଣା ପଡ଼ିଛି । ଯେ ଯାହା ହେଉ, ପୁରୁଷୋତ୍ତମ ଦେବ ଅନେକ ନାଟକର ରଚୟିତା ।

ପଞ୍ଚଦଶ ଶତାବ୍ଦୀରେ ବିଶିଷ୍ଟ ବିଦ୍ୱାନ୍ କବି ଡିଣ୍ଡିମ ଜୀବଦେବାଚାର୍ଯ୍ୟ "ଭକ୍ତି ବୈଭବ ନାଟକ" ଓ "ଉଦ୍ଧବଦୂତୀ ରୂପକ" ରଚନା କରି ଅମର ହୋଇ ଯାଇଛନ୍ତି । ଜଗନ୍ନାଥଙ୍କ ଦୋଳ ଉତ୍ସବ ଅବସରରେ "ଭକ୍ତିବୈଭବ" ମଞ୍ଚସ୍ଥ କରାଯାଉଥିଲା ।

ଷୋଡ଼ଶ ଶତାବ୍ଦୀର ଆରମ୍ଭରେ ପୃଷ୍ଠପୋଷକ ଗଜପତି ପ୍ରତାପରୁଦ୍ରଙ୍କ ସଭାପଣ୍ଡିତ କବିଚନ୍ଦ୍ର ରାୟ ଦିବାକର ମିଶ୍ରଙ୍କ ଦ୍ୱାରା "ଧୂର୍ତ୍ତ ଚରିତ(ଭାଣ)", "ପାରିଜାତ ହରଣ", "ପ୍ରଭାବତୀ ନାଟକ" ପ୍ରଭୃତି ରୂପକ ରଚିତ ହୋଇ ଉତ୍କଳର ପଣ୍ଡିତ ମଣ୍ଡଳୀରେ ପ୍ରଶଂସିତ ହୋଇଥିଲା । ପ୍ରତାପରୁଦ୍ରଦେବ ତାଙ୍କ ପିତାଙ୍କ ଭଳି ନିଜେ ପଣ୍ଡିତ ଥିଲେ ଓ ବିଦ୍ୱାନ୍ ସମାଜର ପୃଷ୍ଠପୋଷକତା କରିଥିଲେ ।

ପ୍ରତାପରୁଦ୍ରଙ୍କ ସମସାମୟିକ, ପ୍ରଶାସକ ଓ ଶ୍ରୀ ଚୈତନ୍ୟଙ୍କ ପରମଶିଷ୍ୟ ରାୟ ରାମାନନ୍ଦ ପଟ୍ଟନାୟକଙ୍କ ରଚିତ "ଶ୍ରୀଜଗନ୍ନାଥ ବଲ୍ଲଭ ନାଟକ" ଏକ ସର୍ବଶ୍ରେଷ୍ଠ କୃତି । ଓଡ଼ିଶାର ପଣ୍ଡିତଙ୍କ ସଂସ୍କୃତ ଭାଷାରେ ଥିବା ପ୍ରଚଣ୍ଡ ପାଣ୍ଡିତ୍ୟ ଏହି ନାଟକ ପାଠକଲେ ସହଜରେ ଅନୁମେୟ । ତାଙ୍କର ଏହି ରଚନା ରାଧାକୃଷ୍ଣ ଲୀଳାରେ ରସାଣିତ ଓ ଭାଷାର ଲାଳିତ୍ୟ ମନୋମୁଗ୍ଧକର । ଏହା ରାମାନନ୍ଦଙ୍କ କୃଷ୍ଣଭକ୍ତିର ପରମ ନିଦର୍ଶନ ।

ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଗଜପତି ରାମଚନ୍ଦ୍ରଙ୍କ ଦ୍ୱାରା ରଚିତ "ଶ୍ରୀକୃଷ୍ଣ ଭକ୍ତି ବାତ୍ସଲ୍ୟ ନାଟକ" ଏକ ଉଚ୍ଚକୋଟୀର କୃତି ଓ ନାଟ୍ୟକାରଙ୍କ ଲେଖନ ଶୈଳୀର ପରମ ପରାକାଷ୍ଠା ।

ପ୍ରସିଦ୍ଧ ବିଦ୍ୱାନ କବି ଡିଣ୍ଡିମ୍ ଜୀବଦେବାଚାର୍ଯ୍ୟଙ୍କ ସୁପୁତ୍ର ଜୟଦେବ ଦ୍ୱିତୀୟ ଓଡ଼ିଶାର ଜଣେ ସୁନାମଧନ୍ୟ କବି ଓ ନାଟ୍ୟକାର । ତାଙ୍କ ରଚିତ 'ପୀୟୂଷ ଲହରୀ' ଏକ ଏକାଙ୍କିକା । ରାଧାକୃଷ୍ଣ ଲୀଳାରେ ରସାଣିତ ଏହି ଏକାଙ୍କିକାର ମଙ୍ଗଳାଚରଣରେ ନାଟ୍ୟକାର ମହାଦେବ ଓ ଶ୍ରୀକୃଷ୍ଣଙ୍କ ଆଶୀର୍ବାଦ କାମନା କରି ତାଙ୍କ ଲେଖାରେ ଅଗ୍ରସର ହୋଇଛନ୍ତି । ଏକ ଅପେରା ମାଧ୍ୟମରେ ନାଟ୍ୟକାର ଜଗନ୍ନାଥ ମନ୍ଦିର ପରିସରରେ ଏହି ନାଟକ ମଞ୍ଚସ୍ଥ କରାଇଥିଲେ । ଏହା ଲେଖକଙ୍କ ଖ୍ରୀ.ଅ. ୧୫୨୫-୩୫ ମଧ୍ୟର କୃତି ।

କବିଚନ୍ଦ୍ର ରାୟ ଦିବାକର ମିଶ୍ରଙ୍କ ବଂଶଜ, ଲେଖକ ସତ୍ରଞ୍ଜୀବଙ୍କ ପୁତ୍ର ଅନାଦି ମିଶ୍ର ତାଙ୍କ ପ୍ରସିଦ୍ଧ କୀର୍ତ୍ତି "ମଣିମାଳା ନାଟିକା" ପାଇଁ ସଂସ୍କୃତ ସାହିତ୍ୟରେ ଏକ ଶୀର୍ଷସ୍ଥାନ ଅଧିକାର କରନ୍ତି । ଖିମୁଣ୍ଡିରାଜା ନାରାୟଣ ମଙ୍ଗରାଜଙ୍କ ପୃଷ୍ଠପୋଷକତାରେ ତାଙ୍କର ପାଣ୍ଡିତ୍ୟ ବିକଶିତ ହୋଇଥିଲା । ଏହି "ମଣିମାଳା ନାଟିକା" ଖ୍ରୀ.ଅ. ୧୬୮୮ ରେ ରଚିତ ଓ ଏହା ନାଟିଅଙ୍କ ବିଶିଷ୍ଟ । ନାଟ୍ୟକାର ତାଙ୍କ ନାଟକରେ ଉଜ୍ଜୟିନୀର ରାଜକୁମାର ଶୃଙ୍ଗାରଶେଖରଙ୍କ ସହିତ ପୁଷ୍କର ଦ୍ୱୀପର ରାଜକୁମାରୀ ମଣିମାଳାଙ୍କ ପ୍ରେମ ଓ ନାନା ଘାତ ପ୍ରତିଘାତ ସତ୍ତ୍ୱେ ବିବାହର ବର୍ଣ୍ଣନା କରିଛନ୍ତି । ଏହି ନାଟକରେ ସନ୍ନିବେଶିତ ତାନ୍ତ୍ରିକ ଯୋଗୀ ଓ ଯୋଗିନୀମାନଙ୍କ ଚମତ୍କାରିତାରୁ ଖ୍ରୀ.ଅ. ୧୭ଶ ଶତାବ୍ଦୀରେ ସମାଜ ଉପରେ ତନ୍ତ୍ରର ପ୍ରଭାବ ବହୁଳ ଭାବରେ ଅନୁଭୂତ ହୁଏ ।

ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶାର ସଂସ୍କୃତ ଆକାଶରେ ବାଜପେୟୀ ଚନ୍ଦ୍ରଶେଖର ରାଜଗୁରୁ ନାମକ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଉଦୟ ହୋଇଥିଲେ । ତାଙ୍କ ପାଣ୍ଡିତ୍ୟ, କାବ୍ୟ ଗଠନ, ପଦ ବିନ୍ୟାସର ଚମତ୍କାରିତା ସ୍ପଷ୍ଟ ବିଦ୍ୱାନମାନଙ୍କ ପାଖରେ ମିଳିଥାଏ । ପ୍ରସିଦ୍ଧ ରାଜଗୁରୁ ଗୋପୀନାଥ ବାଜପେୟୀଙ୍କ ପୁତ୍ର ଚନ୍ଦ୍ରଶେଖର ତାଙ୍କ ରଚିତ "ମଧୁରା ନିରୁଦ୍ଧ ନାଟକ" ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସାହିତ୍ୟାଳଙ୍କାର ଭୂଷିତ ଓ ଲେଖକଙ୍କ ପ୍ରଚଣ୍ଡ ପାଣ୍ଡିତ୍ୟର ପରମ ନିଦର୍ଶନ ।

ସଂଗ୍ରହାଧ୍ୟକ୍ଷ, ହସ୍ତଲିଖିତ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

# ଜଉଗଡ଼ : ଓଡ଼ିଶାର ଏକ ଐତିହାସିକ ବିଭବ

● ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି

ବ୍ରହ୍ମପୁର ସହରଠାରୁ ଉତ୍ତର-ପଶ୍ଚିମ ଦିଗରେ ଥିବା ପୁରୁଷୋତ୍ତମପୁର ଆଡ଼କୁ ବସ୍‌ରେ ଯାଇ ଋଷିକୁଲ୍ୟା ନଦୀ କୂଳରେ ପଡୁଥିବା ପଣ୍ଡିଆ ଛକରୁ ଜଉଗଡ଼କୁ ଯିବାକୁ ହୁଏ । ଏହା ପୁରୁଷୋତ୍ତମପୁରରୁ ପଶ୍ଚିମରେ ମାତ୍ର ପାଞ୍ଚ ଛ' କିଲୋମିଟର ଦୂର । ଓଡ଼ିଶା କାହିଁକି, ସାରା ଭାରତବର୍ଷର ଏକ ପ୍ରସିଦ୍ଧ ଐତିହାସିକ ସ୍ଥାନ ।

ଅତୀତରେ ଆମ ଭାରତବର୍ଷ ତଥା ଓଡ଼ିଶା ରାଜ୍ୟରେ ଅନେକଗୁଡ଼ିଏ ଗଡ଼ ରହିଥିଲା । ପ୍ରତ୍ୟେକ ଗଡ଼ ଥିଲା ଏକ ଏକ ଗଡ଼ଜାତ ରାଜ୍ୟର ରାଜଧାନୀ । ଜଣେ ଜଣେ ରାଜା ଗଡ଼ ନିର୍ମାଣ କରି ନିଜ ନିଜ ଗଡ଼ଜାତ ରାଜ୍ୟଗୁଡ଼ିକରେ ପ୍ରଜାପାଳନ କରୁଥିଲେ । ଅନେକ ସମୟରେ ରାଜାମାନଙ୍କ ସହ ପଡ଼ୋଶୀ ରାଜ୍ୟମାନଙ୍କରେ ଯୁଦ୍ଧ ଲାଗି ରହୁଥିଲା । ଏଣୁ ଶତ୍ରୁପକ୍ଷକୁ ନିଶ୍ଚିହ୍ନ କରିଦେବା ପାଇଁ ଅବା ନିଜ ରାଜ୍ୟ ରାଜଧାନୀକୁ ଅନ୍ୟମାନଙ୍କ ଆକ୍ରମଣରୁ ରକ୍ଷା କରିବା ପାଇଁ ଗଡ଼କୁ ଅତି ମଜବୁତ କରି ତୋଳାଉ ଥିଲେ । ମେଘନାଦ ଭଳି ବିଶାଳ ବିଶାଳ ସୁଉଚ୍ଚ ପାଚେରୀ, ପାଚେରୀ ଚତୁର୍ଦ୍ଦିଗରେ ଗଡ଼ଖାଇ, ଗଡ଼ଖାଇରେ ହିଂସ୍ର ଜଳଜନ୍ତୁ କୁମ୍ଭୀର । ଗଡ଼ଖାଇର ବାହାରପଟେ ନିପଟ ହିଂସ୍ର ପଶୁ ପୂର୍ଣ୍ଣ ଜଙ୍ଗଲ, ଗଡ଼ ମଧ୍ୟରୁ ସମୁଦ୍ର ନଦୀ ବା ଅନ୍ୟ କୌଣସି ମୁକ୍ତ ସ୍ଥାନକୁ ନିର୍ବିଘ୍ନରେ ପଳାଇ ଯିବା ପାଇଁ ଆପାତ କାଳୀନ ଗୁପ୍ତ ନିଷ୍କ୍ରମଣ ଦ୍ୱାର । ଗଡ଼ ଗଡ଼ ମଧ୍ୟରେ ବହୁ ସମୟରେ ଯୁଦ୍ଧ ଲାଗି ରହୁଥିଲା । ବହୁ ଲୋକ ମୃତ୍ୟୁ ମୁଖରେ ପଡୁଥିଲେ । ରାଜାମାନେ ମଧ ପରାସ୍ତ ହୋଇ ପରାଧୀନତା ସ୍ୱୀକାର କରୁଥିଲେ । ଏହା ଥିଲା ସମଗ୍ର ଗଡ, ଗଡ଼ଜାତ ଅଞ୍ଚଳର ଚିତ୍ର କିନ୍ତୁ ସ୍ୱାଧୀନତାର ପରବର୍ତ୍ତୀ ଅବସ୍ଥାରେ ଭାରତବର୍ଷ ଏକ ଶାସନାଧୀନ ହେଲା । ଏହି ଗଡଗୁଡ଼ିକ ନିଜ ଅଧିକାର ଭାରତ ସରକାରଙ୍କଠାରେ ସମର୍ପଣ କଲେ । ଗଡ଼, ଗଡ଼ଜାତ ତଥା ରାଜରାଜୁଡ଼ା ଶାସନରେ ଭଙ୍ଗା ପଡ଼ିଲା । ରାଜ ରାଜ୍ୟ ଶାସନ ସିନା ରହିଲାନି କିନ୍ତୁ ଅତୀତର ଗଡ଼ଗୁଡ଼ିକ ଏଯାବତ୍ ଇତିହାସ ହୋଇ ରହିଆସିଛି । ଏହି ଜଉଗଡ଼ ପାଖାପାଖି ଆହୁରି ଅନେକ ଗଡ଼ ମଧ ଦେଖିବାକୁ ମିଳେ । ମହୁରୀ, ଚିକିଟି, ଖଲିକୋଟ, ଆଠଗଡ଼, ମାଳତୀଗଡ଼, କୁଲାଗଡ଼, ଜରଡ଼ା, ଧୁମା, ସୁରଙ୍ଗୀ, ଶେରଗଡ଼, ବଡ଼ଗଡ଼, ପୋଡାଗଡ଼ ଇତ୍ୟାଦି ଗଡ଼, ଏ ଅଞ୍ଚଳ କାହିଁକି ସମଗ୍ର ରାଜ୍ୟ ସାରା କେତେ ସୃଷ୍ଟି ହୋଇ ରହିଛି ।

ଜଉଗଡ଼ ଏକ ପୃଥିବୀ ପ୍ରସିଦ୍ଧ ଐତିହାସିକ ଗଡ଼ । ଓଡ଼ିଶାରେ କଳିଙ୍ଗ ଯୁଦ୍ଧର କିଛି ନିଦର୍ଶନ ଏହି ଗଡ଼ ବହନ କରିଛି । ମଗଧର ରାଜା ଅଶୋକ କଳିଙ୍ଗ ଆକ୍ରମଣ କରି ସଂଗ୍ରାମର ଋଷିକୁଲ୍ୟା ତୀର ଧଉଳିଆ ଓ ଦୟାନଦୀ କୂଳରେ କଳିଙ୍ଗ ସେନାଙ୍କୁ ଲକ୍ଷ ଲକ୍ଷ ସଂଖ୍ୟାରେ ମୃତାହତ କରିଦେଇଥିଲେ । କଳିଙ୍ଗ ପରାସ୍ତ ହେଲା । ଜନଶୂନ୍ୟ କଳିଙ୍ଗବାସୀଙ୍କର ଦୁଃଖ, ସମକ୍ଲିଷ୍ଟ ଯନ୍ତ୍ରଣାକୁ ଅଶୋକ ଅନୁଭବ କରି ନିଜକୁ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ କଲେ । ଏ ହେଉଛି କଳିଙ୍ଗ ସମରର ସାରକଥା । ଅଶୋକ ମଗଧ ସିଂହାସନ ଆରୋହଣ ଖ୍ରୀ.ପୂ. ୨୭୩ରେ କରିଥିଲାବେଳେ ଅଜେୟ କଳିଙ୍ଗ ସେନାଙ୍କୁ ଆକ୍ରମଣ କରିବା ପାଇଁ ସେ ବହୁ ପ୍ରସ୍ତୁତି ପରେ ଖ୍ରୀ.ପୂ ୨୬୧ କଳିଙ୍ଗରେ କଳିଙ୍ଗ ଆକ୍ରମଣ କରିଥିଲେ । ଏହି ଯୁଦ୍ଧର ଚାରିବର୍ଷ ପରେ ଅଶୋକ ମଥୁରାର ବୌଦ୍ଧ ସନ୍ନ୍ୟାସୀ ଉପଗୁପ୍ତଙ୍କଠାରୁ ଖ୍ରୀ.ପୂ ୨୫୭ରେ ଦୀକ୍ଷା ଗ୍ରହଣ କରିଥିବା ଐତିହାସିକମାନେ ମତ ଦିଅନ୍ତି । ଅଶୋକ ଧର୍ମାଶୋକରେ ପରିବର୍ତ୍ତିତ ହେଲା ପରେ ତାଙ୍କ ନାମ ସହ ଦେବାନାଂ ପ୍ରିୟ ପ୍ରିୟଦର୍ଶୀ, ଦେବ ପ୍ରିୟ ଆଦି ନାମରେ ପରିଚିତ ହେଲେ । ଏଣୁ ସମସ୍ତ ଅନୁଶାସନରେ ଦେବାନାଂପ୍ରିୟଙ୍କ ନିର୍ଦ୍ଦେଶ ବୋଲି ଲେଖାଯାଇଛି । ଅଶୋକଙ୍କ ପ୍ରଜା ଶାସନରେ ଅର୍ପଣ କରାଯାଇଥିବା ଯେଉଁ ସବୁ ଅନୁଶାସନ ଶିଳାଲିପି ଆକାରରେ ଭାରତ ସାରା ରହିଛି, ସେଥିରୁ କେତୋଟି ଅନୁଶାସନ ଏହି ଜଉଗଡ଼ଠାରେ ଲିପିବଦ୍ଧ ହୋଇ ରହିଛି । ଅତୀତର ସେହି ଜଉଗଡ଼ର ସ୍ଥିତି ମାଟିରେ ମିଶି ଯାଇଥିଲେ ମଧ ସେଥିର କେତେକ ଭଗ୍ନାବଶେଷ ମାଟି କାମୁଡ଼ିହୋଇ ପଡ଼ିଛି କିନ୍ତୁ ଜଉଗଡ଼ର ମଧ୍ୟକେନ୍ଦ୍ରାଂଶରେ ଏକ ବିସ୍ତୀର୍ଣ୍ଣ ଚିକ୍କଣ ପଥର ଦେହରେ ଶିଳାଲିପିଟିଏ ଏବେ ବି ଜାଜ୍ୱଲ୍ୟମାନ ହୋଇ ରହିଛି । ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ଏହି ଅନୁଶାସନର ସଂରକ୍ଷଣ ଦାୟିତ୍ୱ ନେଇଛନ୍ତି । ଏହିପରି ଆହୁରି ଅନେକ ଶିଳାଲିପି ଭାରତର ଆହ୍ଲାବାଦ (ପ୍ରୟାଗ), ଗୁଜରାଟ ଓ ଦେଶର ଗିର୍ନାର ବା ଗିରିନଗର, ମହୀଶୂର ତଥା କର୍ଣ୍ଣାଟକ ପ୍ରଦେଶର ସିଦ୍ଧପୁର, ଆନ୍ଧ୍ର, ହାଇଦ୍ରାବାଦ, ଓଡ଼ିଶାର ଭୁବନେଶ୍ୱର ନିକଟବର୍ତ୍ତୀ ଧଉଳିଗିରି, ନେପାଳର ତରାଇ, ପାକିସ୍ତାନର ରାଓଲପିଣ୍ଡି, ଭାରତର ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳ ହଜାରା ଓ ପେଶୱାର, ଉତ୍ତର ପ୍ରଦେଶର କାଲସି, ବମ୍ବେର ଥାଣା ଆଦି ସ୍ଥାନରେ ଦେଖିବାକୁ ମିଳେ । ଓଡ଼ିଶା ବାହାରର ଅନୁଶାସନଗୁଡ଼ିକରେ ଚଉଦଟି ନିର୍ଦ୍ଦେଶ ଥିବାବେଳେ କଳିଙ୍ଗ ଅନୁଶାସନ ନାମରେ ଧଉଳି ଓ ଜଉଗଡ଼ଠାରେ ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଅନୁଶାସନକୁ ଲିପିବଦ୍ଧ କରାଯାଇ ନାହିଁ । ତା ' ବ୍ୟତୀତ ପୃଥକ ଭାବରେ 'ସମାପା' ଓ ତୋଷାଳୀ (ଧଉଳୀ)ର ରାଜକର୍ମଚାରୀମାନଙ୍କ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ଦୁଇଟି ସ୍ୱତନ୍ତ୍ର କ୍ଷୁଦ୍ର ଅନୁଶାସନ ଲିପିବଦ୍ଧ ହୋଇଛି । ଐତିହାସିକମାନଙ୍କ ମତ ଯେ କଳିଙ୍ଗ ଯୁଦ୍ଧର ବିଭୀଷିକା ବିଷୟରେ ଉଲ୍ଲେଖ ଥିବା ତ୍ରୟୋଦଶଟି ଅନୁଶାସନ ଦେବାନାଂପ୍ରିୟ କଳିଙ୍ଗବାସୀଙ୍କ ମନରେ ଦୁଃଖ ହେବା ମନେ କରି କଳିଙ୍ଗ ବ୍ୟତୀତ ଅନ୍ୟତ୍ର ଲିପିବଦ୍ଧ କରିଛନ୍ତି ।

ଜଉଗଡ଼ର ପରିସୀମା ମଧ୍ୟରେ ଅନେକ ଛୋଟ ଛୋଟ ପାହାଡ଼ମାନ ରହିଛି । ଅଶୋକଙ୍କର ଶିଳିମାଳା ଏହି ପାହାଡ଼ସ୍ଥିତ ଅତି ମସୃଣ ଚିକ୍କଣ

ବୃହତ ଶିଳା (୧୬ ଓ ୨୦ ଫୁଟ ଦୈର୍ଘ୍ୟର) ଦେହରେ ତିନୋଟି ପର୍ଯ୍ୟାୟରେ ଖୋଦିତ । ପ୍ରତ୍ୟେକ ଲିପିର ଗୋଳେଇ ଦୁଇ ଇଞ୍ଚ । ଏଥିରେ ଅଶୋକଙ୍କର ଦଶଗୋଟି ଆଦେଶ ଏବଂ ପୃଥକ ଭାବରେ ଅନ୍ୟ ଦୁଇଗୋଟି କ୍ଷୁଦ୍ର ଶିଳାଲିପି ଖୋଦିତ । ଶିଳାଲିପି ସହ ସର୍ବାଙ୍ଗ ଆବୃତ ପୋଷାକରେ ଏକ ପୁରୁଷର ଛବି ମଧ ଖୋଦିତ । ପ୍ରଥମ ସାଧାରଣ ଦଶଗୋଟି (ଶିଳାଲିପି) ଅନୁଶାସନର ମର୍ମ ହେଲା; ଖାଦ୍ୟ କିମ୍ବା ବଳିଦାନ ପାଇଁ ପଶୁବଧ ନିଷେଧ, ପଶୁ ଚିକିତ୍ସା ବ୍ୟବସ୍ଥା କରିବା, ପିତାମାତା, ବନ୍ଧୁବର୍ଗ, ପୁରୋହିତଙ୍କୁ ସମ୍ମାନ ଓ ସେମାନଙ୍କ ପ୍ରତି କର୍ତ୍ତବ୍ୟ ପରାୟଣ ହେବା ଅଶୋକଙ୍କ ଶାସନଧାରା ସହ ପୂର୍ବ ରାଜାଙ୍କ ଦ୍ୱାରା ଶାସନ ଧାରାର ଏକ ତୁଳନାତ୍ମକ ବିଚାର ସହ ବିଭିନ୍ନ ଦେଶ ବିଦେଶରେ ବୌଦ୍ଧ ଧର୍ମର ପ୍ରଚାର ଓ ପ୍ରସାର କରିବା, ଗୃହସ୍ଥ ଜୀବନ ସମ୍ପର୍କରେ ଶିକ୍ଷାଦାନ ପାଇଁ ଶିକ୍ଷକ ନିଯୁକ୍ତି । ଧର୍ମ ସମ୍ବନ୍ଧେ ମତଦ୍ୱୈଧ ନିବାରଣ ଓ ଶାନ୍ତି ପ୍ରାପ୍ତିର ଉପାୟ, ଶାରୀରିକ ସୁଖଭୋଗ ସହ ପାରମାର୍ଥିକ ଓ ଆଧାତ୍ମିକ ସୁଖ ପ୍ରାପ୍ତିର ଜ୍ଞାନ ଚର୍ଚ୍ଚା, ସାଂସାରିକ ବିଷୟ ଜଡ଼ିତ କର୍ମ ଓ ଯଶକୁ ତୁଚ୍ଛ ଜ୍ଞାନ କରିବାଠି ବିଷୟରେ ଅଶୋକ ଏହି ଅନୁଶାସନ ମାଧ୍ୟମରେ ସାଧାରଣ ଜନତା ଓ ପ୍ରଶାସକମାନଙ୍କୁ ଆଦେଶ ଦେଇଛନ୍ତି ।

ଜଉଗଡ଼ର ପଥରରେ ପୃଥକ୍‌ଭାବେ ଖୋଦିତ ଅନ୍ୟ ଦୁଇଟି ଶିଳାଲିପି କ୍ଷୁଦ୍ର ଅନୁଶାସନ ଭାବରେ ପରିବର୍ଣ୍ଣିତ । ଏହା ସ୍ୱତନ୍ତ୍ର ଭାବରେ କଳିଙ୍ଗବାସୀଙ୍କ ପାଇଁ ଉଦ୍ଦିଷ୍ଟ । ଏଣୁ ଓଡ଼ିଶା ବାହାରେ ମିଳିଥିବା ଶିଳାଲିପିମାନଙ୍କରେ ଏହି କ୍ଷୁଦ୍ର ଅନୁଶାସନ ସ୍ୱତଃ ଦେଖିବାକୁ ମିଳେ ନାହିଁ । ବିଶେଷତଃ 'ସମାପ'ର ରାଜ୍ୟ ଅଧିକାରୀଙ୍କ ପାଇଁ ଏହି ଅନୁଶାସନ ଦ୍ୱୟ ପ୍ରଯୁଜ୍ୟ ଯଥା : 'ଦେବାନାଂ ପ୍ରିୟ' ଏପରି କହନ୍ତି : ସମାପରେ ଥିବା ଯେଉଁ ମହାପାତ୍ରମାନେ ସହରରେ ନ୍ୟାୟ ବିଚାର କାର୍ଯ୍ୟରେ ନିଯୁକ୍ତ ହୋଇଅଛନ୍ତି, ସେମାନଙ୍କୁ ଏହା କୁହାଯାଉଛି... ଏହି କ୍ଷୁଦ୍ରାନୁଶାସନର ମାର୍ମିକ ଅର୍ଥ ହେଲା ଅଶୋକ ପ୍ରଜାମାନଙ୍କୁ ଅପତ୍ୟ ରୂପକ ଶ୍ରଦ୍ଧା କରନ୍ତି, ସେମାନଙ୍କର ମଙ୍ଗଳ କାମନା କରି ମହାମାତ୍ର ଓ ନଗର ବ୍ୟବହାରିକମାନଙ୍କୁ ନ୍ୟାୟ ଧର୍ମର ସହ ପ୍ରଜାପାଳନ ପାଇଁ ଆଦେଶ କରିଛନ୍ତି । କ୍ଷମା ଯୋଗ୍ୟ ସମସ୍ତ ଅପରାଧକୁ କ୍ଷମା କରିଦେବା, ଐହଲୌକିକ ସୁଖ ଭୋଗ ସହ ପାରଲୌକିକ ସୁଖ ଭୋଗରେ ପ୍ରୟାସୀ କରାଇବା ପାଇଁ ମଧ ଉଲ୍ଲେଖ ରହିଛି । ଏହା ସହ ଏହି ଅନୁଶାସନକୁ ଚତୁର୍ମାସ୍ୟରେ ତିଷ୍ୟ(ପୁଷ୍ୟା) ନକ୍ଷତ୍ରରେ, ଅନ୍ୟ ଉତ୍ସବ ଦିନମାନଙ୍କରେ ମଧ ଶୁଣାଇବାର ବିଧି ରହିଛି ।

କଳିଙ୍ଗ ଅନୁଶାସନ ଭାବରେ ଭୁବନେଶ୍ୱର ନିକଟସ୍ଥ ଧଉଳିଗିରି ଓ ଗଞ୍ଜାମର ଜଉଗଡ଼ସ୍ଥ ଅନୁଶାସନକୁ ବୁଝାଏ । ଅନୁଶାସନରେ ଧଉଳି ପରିବର୍ତ୍ତେ ତୋଷାଳୀ ଏବଂ ଜଉଗଡ଼ ପରିବର୍ତ୍ତେ ସମାପ ଅନୁଶାସନ ବୋଲି କୁହାଯାଉଥିବା ଐତିହାସିକମାନଙ୍କର ମତ । 'ସମାପ' ସମ୍ପର୍କରେ ଜଣାଯାଉଛିଯେ, ପୂର୍ବେ ଏହି ଅଞ୍ଚଳକୁ ପୂର୍ବଖଣ୍ଡ ରାଜ୍ୟ ବୋଲି କୁହାଯାଉଥିଲା । ଋଷିକୁଲ୍ୟା ନଦୀରେ ବାଣିଜ୍ୟ ପୋତମାନ ଚଳାଚଳ ହୋଇ କୌବାଣିଜ୍ୟରୁ ବହୁ ସମ୍ପତ୍ତି ସଂଗ୍ରହ କରି ସାରା ଭାରତରେ ଏକ ସୁପରିଚିତ ସୁସମୃଦ୍ଧ ଅଞ୍ଚଳ ଭାବରେ ବିଖ୍ୟାତ ହୋଇ ପଡ଼ିଥିଲା । ଜଉଗଡ଼ ପାଖରେ ପୁରୁଷୋତ୍ତମପୁର ଏବଂ ପ୍ରତାପପୁର ଗ୍ରାମ । ଓଡ଼ିଶାର ରାଜା ପୁରୁଷୋତ୍ତମଦେବ ଏବଂ ପ୍ରତାପରୁଦ୍ର ଦେବଙ୍କ ଦ୍ୱାରା ସ୍ଥାପିତ ।

ଜଉଗଡ଼ଠାରୁ ମାତ୍ର ଦୁଇମାଇଲ ଦୂରରେ ଥିବା ଗୋବିନ୍ଦପୁର ଗ୍ରାମଠାରେ ଏହି ପୂର୍ବଖଣ୍ଡ ରାଜାମାନେ ରାଜଧାନୀ ପ୍ରତିଷ୍ଠା କରିଥିଲେ । କିଛି ଦିନ ଅନ୍ତେ ନିକଟସ୍ଥ 'ପାଣ୍ଡିଆ' ନାମକ ସ୍ଥାନକୁ ରାଜଧାନୀ ସ୍ଥାନାନ୍ତର କରି ତାରି ନିକଟରେ ଜଉଗଡ଼ ନିର୍ମାଣ କରାଯାଇଥିଲା । ଜଉଗଡ଼ ଏହି ପୂର୍ବଖଣ୍ଡ ରାଜାମାନଙ୍କର କୀର୍ତ୍ତି । ଜଉଗଡ଼ଠାରୁ ଅଳ୍ପ କିଛି ଦୂରରେ 'ସମା' ନାମକ ଗ୍ରାମଟିଏ ରହିଛି । ସେହି 'ସମା' ଅଶୋକଙ୍କ ଅନୁଶାସନ ଲିପିବଦ୍ଧ କାଳରେ (୨୫୦ ଖ୍ରୀ.ପୂ.) ଏହି ପୂର୍ବଖଣ୍ଡ ରାଜ୍ୟର ରାଜଧାନୀ ଥିଲା ଓ ସେଠାରେ ଜଣେ 'ମହାମାତ୍ର'(ମନ୍ତ୍ରୀ) ରହି ରାଜ୍ୟ ପରିଚାଳନା କରୁଥିଲେ । ଜଉଗଡ଼ ଅନୁଶାସନର 'ସମାପ'କୁ ଆମର ଏହି ସମା ଗ୍ରାମ ବୋଲି ଗବେଷକମାନେ ନିରୂପଣ କରିଛନ୍ତି । ଐତିହାସିକମାନେ ଶିଳାଲିପି ପଢ଼ି କହନ୍ତି, ଜଉଗଡ଼ ଅନୁଶାସନ କୁଆଡ଼େ ପ୍ରଥମେ ଖେପିଙ୍ଗଲ ପର୍ବତରେ ରହିଥିଲା । ଅନ୍ୟ କେତେକ ଗବେଷକ ଏହି 'ଖେପିଙ୍ଗଳ'କୁ ଖଲିତକ' ବୋଲି ମଧ ପାଠ କରି ଖଲିତକ ହିଁ ଆଜିର ଖଲ୍ଲିକୋଟ ନାମର ମୂଳାଧାର ବୋଲି ମତ ଦିଅନ୍ତି ।

ଜଉଗଡ଼ ସୀମା ମଧ୍ୟରୁ ପୁରାତନ ଗୃହମାନଙ୍କର ଭଗ୍ନାବଶେଷ, ସ୍ୱର୍ଣ୍ଣ ଓ ପୁରାତନ ତାମ୍ର ମୁଦ୍ରା, ପୁରାତନ ଅଳଙ୍କାର ବିଶେଷ ଏବଂ ଆଉ କେତେକ ପ୍ରତିମା ସହ ପୁରାତନ ଗୃହୋପକରଣ ଓ ମାଟିଇଟା ଖଣ୍ଡମାନ ପ୍ରାପ୍ତ ହୋଇଛି । ଏସବୁ ଅଧିକାଂଶ କଲିକତାସ୍ଥ ଜାତୀୟ ଯାଦୁଘରରେ ସଂରକ୍ଷିତ ଅଛି । ଏହି ମୁଦ୍ରାଗୁଡ଼ିକରେ ଥିବା ସର୍ବାଙ୍ଗ ଆବୃତ ପୁରୁଷର ଚିତ୍ର ରାହାଜର କାପ୍ତାନ ଭଳି ଦେଖାଯାଏ । ଏହାର ସାମଞ୍ଜସ୍ୟ ମଧ ଜଉଗଡ଼ ଶିଳାଲିପିରେ ଥିବା ପୁରୁଷର ପ୍ରତିକୃତି ସହ ସମାନ । ବିଶେଷରେ ଏହା ଚତୁର୍ଥ ବା ପଞ୍ଚମ ଖ୍ରୀ.ଅ.ର କଳିଙ୍ଗରେ ସମୃଦ୍ଧ ନୌବାଣିଜ୍ୟ କାଳର ପ୍ରଚଳିତ ମୁଦ୍ରାବୋଲି ମିଃ.ଭି.ଏ.ସ୍ମିଥ କହିଛନ୍ତି । କିଛି ବର୍ଷ ପୂର୍ବେ ଏ ଅଞ୍ଚଳରୁ ମିଳିଥିବା ସ୍ୱର୍ଣ୍ଣମୁଦ୍ରାରୁ ବୃଷଭର ଛବି ଅଙ୍କିତ ଥିବା ଦେଖି କଳିଙ୍ଗରେ ଶୈବଧର୍ମ-ଶୈବ ସମ୍ପ୍ରଦାୟର ଉନ୍ନତି କାଳ ବୋଲି ସିଦ୍ଧାନ୍ତ ନେଇ ଗବେଷକମାନେ କହନ୍ତି ଯେ ଜଉଗଡ଼ର ଚତୁର୍ଦ୍ଦିଗରେ ଶିବ ମନ୍ଦିରମାନଙ୍କ ସହ ଏହାର ସାଂସ୍କୃତିକ ସମ୍ବନ୍ଧ ଥିଲା । ଗୋବିନ୍ଦପୁର ନିକଟସ୍ଥ ସର୍ବପୁରାତନ ଗୁପ୍ତେଶ୍ୱର, ପାଣ୍ଡିଆର ଉତ୍ତରେଶ୍ୱର, ନୂଆଗାଁର ନୀଳକଣ୍ଠେଶ୍ୱର, ଦେଉଳ ପଲ୍ଲୀର ସଙ୍କଳେଶ୍ୱର, ଖରିଡ଼ାର କାଳେଶ୍ୱର ଆଦି ବହୁ ପୁରାତନ ଶିବଲିଙ୍ଗ ଏ ଅଞ୍ଚଳରେ ଶୈବଧର୍ମର ପ୍ରାଧାନ୍ୟକୁ ସ୍ୱୀକୃତି ଦିଏ । ସ୍ୱର୍ଣ୍ଣ ମୁଦ୍ରାର ଏକ ପାର୍ଶ୍ୱରେ ଶାୟିତ ବୃଷଭର ଛବି ଏବଂ ଅନ୍ୟ ପାର୍ଶ୍ୱରେ 'ସ' ଭଳି ଲିପି ରହିଛି । ମୁଖଲିଙ୍ଗ, କଳିଙ୍ଗ ପାଟଣା ଏବଂ ଅନ୍ୟାନ୍ୟ ପୁରାତନ ସ୍ଥାନମାନଙ୍କର ଖନନରୁ ମଧ ଏ ପ୍ରକାର କେତେକ ସ୍ୱର୍ଣ୍ଣମୁଦ୍ରା ପ୍ରାପ୍ତ ହୋଇଥିବା ଜଣାଯାଏ । ଐତିହାସିକମାନଙ୍କ ମତରେ ବୃଷଭର ଛବି ଶୈବଧର୍ମର ପ୍ରଚଳନ ଏବଂ 'ସ' ଭଳି ଲିପିର ଅର୍ଥ ଚତୁର୍ଥ ସମ୍ବତ୍ସର ବୋଲି ନିର୍ଦ୍ଧାରଣ କରାଯାଇଛି । ଓଡ଼ିଶାରେ ଏକାଦଶ ଶତାବ୍ଦୀର ଶେଷ ଭାଗରେ ରାଜତ୍ୱ କରୁଥିବା ଅନନ୍ତବର୍ମା ଚୋଳଗଙ୍ଗ ଦେବଙ୍କ ଚତୁର୍ଥ ସମ୍ବତ୍ସର, କାଳୀନ ମୁଦ୍ରାରୂପେ ଏହା ବିଦିତ ହୋଇଛି ।

ଜଉଗଡ଼ ବର୍ତ୍ତମାନ ପାଇଁ ଏକ ଭଗ୍ନାବଶେଷ । ଏହି ଗଡ଼ର କାନ୍ଥଗୁଡ଼ିକ ଜଉରେ ତିଆରି ହୋଇଥିଲା ବୋଲି ଏହାକୁ ଜଉଗଡ଼ କୁହାଯାଉଥିଲା । ଏହା ଚତୁଷ୍କୋଣ ବିଶିଷ୍ଟ । ଏହାର ଦୈର୍ଘ୍ୟ ଆଠଶହ

ଅଠାବନ ଗଜ ଏବଂ ଅନ୍ୟ ପଟେ ଆଠଶହ ଚଉଦଗଜ । ପାଚେରୀର ଉଚ୍ଚତା ଅଠର ଫୁଟରୁ ଅଧିକ । ପ୍ରତିଟି ପାର୍ଶ୍ୱରେ ଦୁଇଗୋଟି ଲେଖାଏ ଦ୍ୱାର ଗଡ଼ ମଧ୍ୟକୁ ପ୍ରବେଶ କରିବାକୁ ରହିଥିଲା ।

ଗଡ଼ର କାନ୍ଥଗୁଡ଼ିକ ଖୁବ୍ ମଜଭୁତ । ଚଉରେ ନିର୍ମାଣ ଯୋଗୁ କାନ୍ଥର ପୃଷ୍ଠ ଅତିଶୟ ମସୃଣ ଓ କଠିଣ ଥିଲା । ଅନ୍ୟ ଗଡ଼କୁ ଆରୋହଣ କରାଯାଇ ପାରିଲା ଭଳି ଏହି ଗଡ଼କୁ ଆରୋହଣ କରିବା ସମ୍ଭବ ନଥିଲା । ଏତେ ଚିକ୍କଣ କାନ୍ଥ ଥିଲା ଯେ, ମାଛି ମଧ ବସିଲେ ଖସି ପଡୁଥିଲା । ମଣିଷ ଆରୋହଣ କରି ଗଡ଼କୁ ଆୟତ୍ତ କରିବାର ପ୍ରଶ୍ନ ନାହିଁ । ଚଉର ନିଗଡ଼ରେ ଗଡ଼ଟି ଏତେ ନିବୁଜ ଥିଲା ଯେ, ବନ୍ଧୁକର ଗୁଳି ଗୁଳା ଆଦି ମଧ ତାକୁ ଭେଦ କରିପାରୁ ନଥିଲା । ଏହି ବିସ୍ତୀର୍ଣ୍ଣ ଗଡ଼ର ବାହାର ଚାରିକଡ଼ରେ ଗଡ଼ଖାଇ ନିର୍ମାଣ କରାଯାଇ ତନ୍ମଧ୍ୟରେ ହିଂସ୍ର କୁମ୍ଭୀରମାନଙ୍କୁ ଛାଡ଼ି ଦିଆଯାଇଥିଲା । ଗଡ଼ଖାଇ ଜଳର ଚାରିପଟେ ଘଞ୍ଚ ଜଙ୍ଗଲ । ଜଙ୍ଗଲରେ ହିଂସ୍ର ଜନ୍ତୁ ପୂର୍ଣ୍ଣ ହୋଇ ରହିଥିଲା । ଶତ୍ରୁପକ୍ଷ ଜଉଗଡ଼କୁ କରାୟତ୍ତ କରିବା ପାଇଁ ଅନେକ ପ୍ରୟାସ ଅନେକ ସମୟରେ କରିଥିଲେ ମଧ ସଫଳ ହୋଇ ପାରିନଥିଲେ । ପୂର୍ବଖଣ୍ଡ ରାଜାଙ୍କର ଏକ ନିରାପଦ ଗଡ଼ ଭାବରେ ଜଉଗଡ଼ ସୁରକ୍ଷା ପ୍ରଦାନ କରୁଥିଲା । ଆସିକା ନିକଟରୁ ଦଶମାଇଲ ଦୂରରେ ମାଳତୀ ପର୍ବତର ପାଦଦେଶରେ ମାଳତୀଗଡ଼ କେଶରପଲ୍ଲୀ ରାଜ୍ୟ । ମାଳତୀ ଗଡ଼ର ରାଜା ଜଉଗଡ଼କୁ ବହୁବାର ଆକ୍ରମଣ କରିଥିଲେ ହେଁ ଜଉଗଡ଼ର ଦୁର୍ଭେଦ୍ୟ ପାଚେରୀକୁ କୌଣସି ଉପାୟରେ ଭେଦ କରି ପାରୁନଥିଲେ କିନ୍ତୁ ଥରେ ଜଉଗଡ଼ର ଜଣେ ଗଉଡୁଣୀଠାରୁ ଗୁପ୍ତଚର ଦ୍ୱାରା ଗଡ଼କାନ୍ଥ ପଦ୍ମ ଚଉରେ ନିର୍ମିତ, ଏହା ଅଗ୍ନିରେ ଧ୍ୱଂସ ହୋଇପାରିବ ସମ୍ବାଦ ସଂଗ୍ରହ କରି ନିଶାର୍ଦ୍ଧରେ ଏହି ଗଡ଼ରେ ଅଗ୍ନି ସଂଯୋଗ କରିବାରୁ ଗଡ଼ଟି ଜଳିଗଲା । ମାଳତୀଗଡ଼ର ରାଜା ଏହାକୁ କରାୟତ୍ତ କରିପାରିଥିଲେ । ଏ ଘଟଣାରେ ଜଉଗଡ଼ର ଧର୍ମପ୍ରାଣ ରାଜାଙ୍କ ଅଭିଶାପରେ ଦେଶଦ୍ରୋହୀ ବିଶ୍ୱାସଘାତିନୀ ଗଉଡୁଣୀ ପଥର ପାଲଟି ଯାଇଥିବାର କିମ୍ବଦନ୍ତୀ ଏ ଅଞ୍ଚଳରେ ଶୁଣିବାକୁ ମିଳୁଛି । ଜଉଗଡ଼ର ଅନତି ଦୂରରେ ଗଉଡୁଣୀ ପଥରର ଅବସ୍ଥିତି ଆଡ଼କୁ ଲୋକେ ଅଙ୍ଗୁଳି ନିର୍ଦ୍ଦେଶ କରି ଚିହ୍ନେଇ ଦେଉଥିବା ଏବେ ବି ଦେଖାଯାଏ । ଏଥି ସହ ଅନ୍ୟ ଏକ ପ୍ରବାଦ ଅଛି ଯେ, ଜଉଗଡ଼ର ପାଦଦେଶରେ ବହୁ ଗୁପ୍ତ ସମ୍ପତ୍ତି ଲୌହଦଣ୍ଡର ଘେରରେ ସଂରକ୍ଷିତ ହୋଇ ମାଟିତଳେ ପୋତା ହୋଇ ରହିଛି । ଏହି ଭଳି ଅନେକ ତଥ୍ୟ ପତ୍ନତାତ୍ତ୍ୱିକ ଖନନ କଲେ ଲୋକଲୋଚନକୁ ଆସି ପାରନ୍ତା । ଅଶୋକଙ୍କ କଳିଙ୍ଗ ଆକ୍ରମଣ ତଥା ଅନୁଶାସନର ଶିଳାଲିପି ଉତ୍କୀର୍ଣ୍ଣର ବହୁ ବର୍ଷ ପରେ ପୂର୍ବଖଣ୍ଡ ରାଜାମାନେ ଏହି ଜଉଗଡ଼ଠାରେ ସେତେବେଳେ ଦନାଇନରୁ ସଂଗୃହୀତ ଚଉକୁ ନେଇ ନୂତନ ସାମରିକ କୌଶଳର ଏକ ଦୁର୍ଭେଦ୍ୟ ପାଚେରୀ ଗଢ଼ିଥିଲେ । ଜଉଗଡ଼ ମହାଭାରତର ଦୁର୍ଯ୍ୟୋଧନ ଦ୍ୱାରା ନିର୍ମିତ ଅବା ରାଜାଙ୍କ ଦ୍ୱାରା ନିର୍ମିତ ଗାଥା ତାହା ଗବେଷଣାର ବିଷୟ । ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିବା ପାଇଁ ଏବଂ ଗବେଷକମାନଙ୍କ ସୁବିଧା ପାଇଁ ସରକାରଙ୍କ ତରଫରୁ ଅଧିକା ଭିତ୍ତିଭୂମିର ସୁବିଧା ସୁଯୋଗ ଯୋଗାଇ ଦେବା ଆବଶ୍ୟକ ।

*ଗଞ୍ଜାମ ମହାବିଦ୍ୟାଳୟ, ଗଞ୍ଜାମ*

• • •

| | | |
|---|---|---|
| ୧୯୧୫ | : | ସେପ୍ଟେମ୍ବର ୯ -ବଡ଼ାଖଣ୍ଡ ସଂଘର୍ଷରେ ବାଘାଯତୀନଙ୍କ ମୃତ୍ୟୁ । |
| ୧୯୧୭ | : | ମୟୂରଭଞ୍ଜ ବିଦ୍ରୋହ । |
| ୧୯୧୮-୨୮ | : | ବାମଣ୍ଡା ପ୍ରଜା ଆନ୍ଦୋଳନ । |
| ୧୯୨୧ | : | ଅସହଯୋଗ ଆନ୍ଦୋଳନ । |
| ୧୯୨୧-୨୨ | : | କନିକା ପ୍ରଜା ଆନ୍ଦୋଳନ । ୧୯୨୨ ଏପ୍ରିଲ ୨୩- ପୋଲିସ ଗୁଳିରେ ବିସ୍ୱନି ମହୁଆଳ ଓ ବାସୁ ସେଠୀ ଶହୀଦ । |
| ୧୯୨୨ | : | ଢେଙ୍କାନାଳ ବିଦ୍ରୋହ । |
| ୧୯୨୮ | : | ନୀଳଗିରି ବିଦ୍ରୋହ । |
| ୧୯୩୦ | : | ଆଇନ ଅମାନ୍ୟ ଆନ୍ଦୋଳନ :ଏପ୍ରିଲ-୬- ଇଞ୍ଚୁଡ଼ି ଅଭିମୁଖେ କଟକରୁ ପଦଯାତ୍ରା- । ଏପ୍ରିଲ- ୧୩ ଇଞ୍ଚୁଡ଼ିରେ ଲବଣ ସତ୍ୟାଗ୍ରହରେ ଶୁଭାରମ୍ଭ । ଗୁଜରାଟର ଡାଣ୍ଡି ପରେ ଲବଣ ସତ୍ୟାଗ୍ରହ ଭାରତରେ ଦ୍ୱିତୀୟ ସ୍ଥାନ- ବାଲେଶ୍ୱର ଜିଲ୍ଲାରେ ସାର୍ଥା, କସବା, ରାଜମ, କଟକ ଜିଲ୍ଲାରେ କୁଜଙ୍ଗ, ପୁରୀ ଜିଲ୍ଲାରେ ଅସ୍ତରଙ୍ଗ, କୁହୁଡ଼ି, ଗଂଜାମ ଜିଲ୍ଲାରେ ଚିଲିକା, ହୁମା, ଗୋପାଳପୁରରେ ଲବଣ ଆଇନ ଭଙ୍ଗ । ଲବଣ ସତ୍ୟାଗ୍ରହରେ ଓଡ଼ିଶାରୁ ୧୧୯୬ଜଣ ଗିରଫ । |
| ୧୯୩୧ | : | ଜୁନ୍- କଟକରେ ଗଡ଼ଜାତ ପ୍ରଜା ସମ୍ମିଳନୀ । |
| ୧୯୩୪ | : | ଉତ୍କଳ କଂଗ୍ରେସ ସମାଜବାଦୀ ଦଳ ଗଠନ । |
| ୧୯୩୮ | : | ପ୍ରଜାମଣ୍ଡଳ ଗଠନ । |

# ଶହୀଦ ବଗା ପୂଜାରୀ

● ଶ୍ରୀ ବସନ୍ତ ଦାସ

୧୯୪୨ ମସିହା । ଭାରତ ମାଟିରେ କର ଅବା ମର ଧ୍ୱନିର ପ୍ରତିଧ୍ୱନି । ଚାଲିଥାଏ ସନ୍ତ୍ରାସବାଦୀ ଆନ୍ଦୋଳନ ମୁଣ୍ଡ ଟେକିଲା । ଡ଼ାକଘର , ଥାନା, ଖଜଣା ଖାନା ପୋଡ଼ିବା, ରେଳ ଲାଇନ୍ କାଢ଼ିନେବା ଥିଲା ମୁକ୍ତି ସଂଗ୍ରାମୀଙ୍କର କାମ । ଥାନା ଉପରେ ୟୁନିୟନ ଜ୍ୟାକ୍ ବଦଳରେ ତ୍ରିରଙ୍ଗା ଝଣ୍ଡା ଉଡ଼ାଇବା ଥିଲା ମୁଖ୍ୟ କାମ । ୧୯୪୨ ଅଗଷ୍ଟ ଆନ୍ଦୋଳନ ଯୋଗୁଁ ଗୋରା ସରକାର ଅଥୟ ହୋଇପଡ଼ିଲା । କର୍ମୀମାନଙ୍କୁ ଗିରଫ କରାଗଲା । ଜେଲ୍ ଜୋରିମାନା ଦିଆଗଲା ।

ଲୁହ ଲହୁ ଭରା ଅଗଷ୍ଟ ବିପ୍ଳବର ପ୍ରତିଧ୍ୱନି ଶୁଣାଗଲା ବଣ ପାହାଡ଼ ଘେରା କୋରାପୁଟ, ନବରଙ୍ଗପୁର ଓ ମାଲକାନାଗିରି ଜିଲ୍ଲାରେ । ଆଦିବାସୀମାନେ ଆଗୁଆ ହେଲେ । ପ୍ରକୃତି ପ୍ରେମୀ ଗିରିଜନ । ମାଟି ମଆର ପରମ ସନ୍ତାନ, ଚିର ସ୍ୱାଧୀନ । ପରାଧୀନତା କଣ ଜାଣନ୍ତି ନାହିଁ ।

ନବରଙ୍ଗପୁର ଜିଲ୍ଲାର ବଡ଼ ଉରଣ୍ଡି ବୋଲି ଗାଁ । ଉମରକୋଟଠାରୁ କିଛି ଦୂର । ସେହିଠାରେ ଜନ୍ମ ନେଇଥିଲେ ଦେଶପ୍ରେମୀ ବଗାପୂଜାରୀ । ଦେଶ ପାଇଁ ଜୀବନ ଦେଇ ସେ ଧନ୍ୟ ହେଲେ । ଓଡ଼ିଶାରେ ବାଷଠି ଜାତିର ଆଦିବାସୀ ଅଛନ୍ତି । ଭତରା ବା ଭତଡ଼ା ଆଦିବାସୀ ତା ଭିତରୁ ଗୋଟିଏ । ସେହି ଆଦିବାସୀ କୁଳରେ ୧୮୮୫ ମସିହାରେ ଜନ୍ମ ହୋଇଥିଲେ ବଗା ପୂଜାରୀ । ପୂଜାରୀ କାମ ଥିଲା କୌଳିକ ବୃତ୍ତି । ଗାଁ ଠାକୁରାଣୀ ମାଉଁଳୀ ଦେବୀଙ୍କ ପୂଜା ଅର୍ଚ୍ଚନା କରିବା ଓ ବୈଦ ହୋଇ ରୋଗୀମାନଙ୍କର ସେବା କରିବା ଥିଲା ପୂଜାରୀଙ୍କର ନିତି ଦିନିଆ କାମ । ଜମିବାଡ଼ି ମଧ ବହୁତ । ଅଭାବ ଅନାଟନ ଜଣାପଡୁ ନଥାଏ ।

୧୯୩୬ ମସିହା । ବଗାପୂଜାରୀ କଂଗ୍ରେସ୍‌ରେ ମିଶିଲେ । କଂଗ୍ରେସର ବାର୍ତ୍ତା ପ୍ରଚାର ଓ ପ୍ରସାର କଲେ । ବୟସ ସେତେବେଳକୁ ପଚାଶ । ସୂତା କାଟିଲେ, ଲୁଗା ବୁଣିଲେ । ନିଜ ଗାଁରେ 'ଠକ୍କୁର ବାପା' ଆଶ୍ରମ ଖୋଲି କର୍ମୀମାନଙ୍କୁ ତାଲିମ୍ ଦେଲେ । ଗାତିମତ ଗାଁ ସଫେଇ କରିବା, ଗଛ ଲଗେଇବା କାମ ଚାଲିଲା । ଅନ୍ଧାରି ମୁଲକରେ ଗୋଟାଏ ନୂଆ ଜାଗରଣ ଦେଖାଦେଲା । ଦେଶାତ୍ମବୋଧକ ଗୀତ ବୋଲା ଗଲା । ସ୍ୱାଧୀନତାର ମହାମନ୍ତ୍ର ପ୍ରଚାର କରାଗଲା ।

ପୋଲିସ୍ ଆଖିରେ ଏସବୁ ଡ଼ାକ କଣ୍ଟା ହେଲା । ବଗା ପୂଜାରୀଙ୍କୁ ଉମରକୋଟ ପୋଲିସ୍ ଗିରଫ କଲେ । ଥାନା ପିଣ୍ଡାରେ ତଳେ ପକାଇ ଦେଇ ସିପାହୀମାନେ ତାଙ୍କ ପିଠିକୁ ବୁଟ୍‌ରେ ଦଳି ଦେଇଗଲେ । ପୁଲିସ ସାହେବ ତାଙ୍କୁ ଧମକ୍ ଦେଇ କହିଲେ, ତୁ କର୍ମୀ କାମ ଛାଡ଼ି ଦେ । ଆମେ ତୋତେ ଛାଡ଼ିଦେବୁ ।

ହସି ହସି ବଗା ପୂଜାରୀ ପୋଲିସ୍‌କୁ କହିଥିଲେ– ମୁଁ ସାବରମତୀ ଆଶ୍ରମରେ ଗାନ୍ଧିଜୀଙ୍କ ପାଦଛୁଇଁ ହଲପ କରିଛି-ଜୀବନ ଯିବ ପଛକେ, ଦେଶ କାମ ଛାଡ଼ିବି ନାହିଁ । ତୁମେ ଯେତେ ମାରିବ ପଛେ ମାର । ମାରି ମାରି ମାରିଦିଅ ତଥାପି ମୋ ଗୋଡ଼ ପଛକୁ ଫେରାଇବି ନାହିଁ ।

ବଗାପୂଜାରୀ ଗଲେ ନବରଙ୍ଗପୁର ଜେଲ ଭିତରକୁ । ଆଉ ଘରକୁ ଫେରିନଥିଲେ । ୧୯୪୩ ଫେବୃୟାରୀ ମାସ । ମୁକ୍ତି ପାଇବାକୁ ଆଉ ମାତ୍ର ଦି'ଦିନ ବାକି ଥାଏ । ସେହି ଜେଲଖାନା ଭିତରେ ଜେଲ କର୍ମଚାରୀଙ୍କ ଅବହେଳା ଯୋଗୁଁ ସେ ମରଣ ପଥର ଯାତ୍ରୀ ହେଲେ ।

ଭାଇ ବନ୍ଧୁ କୁଟୁମ୍ବ କେହି ତାଙ୍କ ମୃତ୍ୟୁ ଖବର ପାଇଲେ ନାହିଁ । ଜେଲ ହତା ଭିତରେ ଶହୀଦ୍ ବଗାପୂଜାରୀଙ୍କୁ ସମାଧି ଦିଆଗଲା । ଓଡ଼ିଶାର ମୁକ୍ତି ସଂଗ୍ରାମ ଇତିହାସରେ ଶହୀଦ୍ ବଗାପୂଜାରୀଙ୍କ ନାଁ ଅଲଗା ଅକ୍ଷରରେ ଲେଖା ହୋଇ ରହିଲା । ଆଜି ବଡ଼ଉରଣ୍ଡି ଗାଁର ଶହୀଦ୍ ବଗାପୂଜାରୀ ସେବା ସଦନ ସେହି ପୁଣ୍ୟାତ୍ମାଙ୍କ ସ୍ମୃତି ଧାରଣ କରିଥାଏ ।

*ମଧୁବନ ଛକ, ପୋ : ଗୋଡ଼େଇପଶାଣି*
*ଭାୟା-ବାଲିପାଟଣା, ଜିଲ୍ଲା-ଖୋର୍ଦ୍ଧା ୭୫୨୧୦୨*

• • •

୧୯୩୮-୩୯ : ଢେଙ୍କାନାଳ, ତାଳଚେର, ନୟାଗଡ଼, ଖଣ୍ଡପଡ଼ା, ରଣପୁର, ଆଠଗଡ଼, ନୀଳଗିରି, ଗାଙ୍ଗପୁରରେ ବ୍ୟାପକ ପ୍ରଜା ଆନ୍ଦୋଳନ ।

ଅକ୍ଟୋବର– ଢେଙ୍କାନାଳ ଜିଲ୍ଲା ଭୁବନ ଗ୍ରାମରେ ପୋଲିସ ଗୁଳିରେ ୨ମୃତ । ନୀଳକଣ୍ଠପୁରରେ ୧୨ ବର୍ଷର ବାଳକ ବାଜି ରାଉତ ସମେତ ୬ ମୃତ । ୧୯୩୯ ଜାନୁଆରୀ- ରଣପୁରରେ ପଲଟିକାଲ ଏଜେଣ୍ଟ ବେଜେଲଗେଟଙ୍କୁ ହତ୍ୟା । ଏଥିପାଇଁ ବିପ୍ଳବୀ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ଭାଗଲପୁର ଜେଲ୍‌ରେ ଫାଶୀ । ୧୯୩୮ ଏପ୍ରିଲ-୨୫– ସୁନ୍ଦରଗଡ଼ ଜିଲ୍ଲା ଗାଙ୍ଗପୁରରେ ଆମ୍‌କୋ-ସିମ୍‌କୋ ଗୁଳିକାଣ୍ଡରେ ନିର୍ମଳ ମୁଣ୍ଡାଙ୍କ ସମେତ ୪୦ଜଣ ଶହୀଦ ।

# ଯୁଗେ ଯୁଗେ ଓଡ଼ିଶା

● ଶ୍ରୀ ବିଦ୍ୟାଧର ବାରିକ

**ପ୍ରାଚୀନ ଓଡ଼ିଶା :** ଓଡ଼ିଶାର ଇତିହାସ ଯେପରି ସୁପ୍ରାଚୀନ, ସେପରି ଗୌରବମୟ । ଓଡ଼ିଶାର ଭୌଗୋଳିକ ଅବସ୍ଥାନ, ପୌରାଣିକ ଏବଂ ଅନ୍ୟାନ୍ୟ ଐତିହାସିକ ବିବରଣୀ ଆଲୋଚନା କଲେ ଜଣାଯାଏ ଯେ ଆଧୁନିକ ଓଡ଼ିଶା ଏକ ବିରାଟ ଓ ଅଖଣ୍ଡ ପ୍ରଦେଶ ରୂପେ ଥିଲା । ଅବଶ୍ୟ ବେଦରେ କୌଣସିଠାରେ କଳିଙ୍ଗ, ଓଡ୍ର ବା ଉତ୍କଳ ନାମ ଉଲ୍ଲେଖ ନାହିଁ । ବେଦ ପରେ ସୃଷ୍ଟି ହୋଇଥିବା ବ୍ରାହ୍ମଣ୍ୟ ଗ୍ରନ୍ଥ ମଧ୍ୟରେ ମଧ୍ୟ ଉତ୍କଳର କୌଣସି ଉଲ୍ଲେଖ ନାହିଁ । ମାତ୍ର ମହାଭାରତରେ ଓଡ଼ିଶାର ପ୍ରାଚୀନତା ସମ୍ପର୍କରେ କେତେକ ବିବରଣୀ ମିଳେ । ଏଥିରୁ ଜଣାଯାଏ ମହାଭାରତ ଯୁଗରୁ ଓଡ଼ିଶା ପ୍ରସିଦ୍ଧି ଲାଭ କରି ଆସିଛି । ମହାଭାରତର ଆଦି ପର୍ବରୁ ଜଣାଯାଏ ଯେ ଦୀର୍ଘତମା ଋଷିଙ୍କ ଔରସରେ ସୁଦେଷ୍ଣାଙ୍କ ଗର୍ଭରୁ ଅଙ୍ଗ, ବଙ୍ଗ, କଳିଙ୍ଗ ଆଦି ପାଞ୍ଚ ପୁଅ ଜନ୍ମ ହୋଇଥିଲେ । ନିଜ ନିଜ ନାମ ଅନୁସାରେ ସେମାନଙ୍କର ରାଜ୍ୟର ନାମ ଥିଲା । ପ୍ରତ୍ନତତ୍ତ୍ୱବିତ୍‌ମାନେ ଅନୁମାନ କରନ୍ତି ଯେ ଏହି ପାଞ୍ଚଟି ରାଜ୍ୟ ପରସ୍ପର ନିକଟବର୍ତ୍ତୀ ଥିଲା । ପୁରାଣମାନଙ୍କରେ ମଧ୍ୟ ଅଙ୍ଗ, ବଙ୍ଗ,କଳିଙ୍ଗ ଏକ ସଙ୍ଗେ ବର୍ଣ୍ଣିତ ହୋଇଛି । ରାମାୟଣ ଓ ପରବର୍ତ୍ତୀ ଗ୍ରନ୍ଥ ମହାଭାରତରେ ଅନେକ ସ୍ଥାନରେ କଳିଙ୍ଗ ଓ ଉତ୍କଳର ନାମ ଉଲ୍ଲେଖ ଅଛି । କଳିଙ୍ଗର ଶାସକମାନଙ୍କର ସମ୍ବନ୍ଧରେ ବିବରଣୀମାନ ଅଛି ।

ମହାଭାରତରୁ ଜଣାଯାଏ, କଳିଙ୍ଗର ରାଜଧାନୀ ରାଜପୁର ଥିଲା । କର୍ଣ୍ଣ ପର୍ଶୁରାମଙ୍କଠାରୁ ଅସ୍ତ୍ର ଲାଭ କରି ଦୁର୍ଯ୍ୟୋଧନଙ୍କ ସହ କଳିଙ୍ଗ ରାଜା ଚିତ୍ରାଙ୍ଗଦଙ୍କ ସ୍ୱୟମ୍ବରରେ ଉପସ୍ଥିତ ଥିଲେ । ଶ୍ରୁତାୟୁ ନାମକ କଳିଙ୍ଗର ରାଜା ଦ୍ରୋଣଙ୍କ ସୈନ୍ୟ ବାହିନୀର ଦକ୍ଷିଣରେ ଥିଲେ । କଳିଙ୍ଗ ରାଜା କୌରବଙ୍କ ସପକ୍ଷରେ ଥିଲେ ମଧ୍ୟ ଓଡ୍ର ଦେଶର ରାଜା ପାଣ୍ଡବଙ୍କ ସପକ୍ଷରେ ଥିଲେ । ହରିବଂଶରେ ଉଲ୍ଲେଖ ରହିଛି ଯେ କଳିଙ୍ଗ ତାମ୍ରଲିପ୍ତ ନିକଟରେ ଅବସ୍ଥିତ । ଚୀନ ପରିବ୍ରାଜକ ହୁଏନ୍‌ସାଙ୍ଗ ମତରେ କଳିଙ୍ଗ ଗଞ୍ଜାମଠାରୁ ୨୦୦/୩୦୦ ମାଇଲ ଦୂରରେ ଅବସ୍ଥିତ । ରାମାୟଣରେ କଳିଙ୍ଗ ନାମ ବହୁବାର ଉଲ୍ଲେଖ ଅଛି । ଭରତ ମାମୁଁ ଘରକୁ ଗଲାବେଳେ କଳିଙ୍ଗ ବାଟ ଦେଇ ଯାଇଥିଲେ । ଶ୍ରୀରାମଚନ୍ଦ୍ରଙ୍କ ଯଜ୍ଞ ଅଶ୍ୱ କଳିଙ୍ଗ ଦେଶରେ ସମ୍ମାନିତ ହୋଇଥିଲା । ଗୋମତୀ ଓ ଅଯୋଧ୍ୟା ମଧ୍ୟରେ କଳିଙ୍ଗ ଅବସ୍ଥିତ ଥିଲା । ଅନ୍ୟ କେତେକ ପୁରାଣରେ ମଧ୍ୟ କଳିଙ୍ଗ ରାଜବଂଶ ଓ ଅନ୍ୟାନ୍ୟ ବିବରଣୀମାନ ବର୍ଣ୍ଣିତ ହୋଇଛି ।

ପୁରାଣରେ ବର୍ଣ୍ଣିତ ଯେ କଳିଙ୍ଗ ବଳୀ ରାଜାଙ୍କର ପୁତ୍ର ଥିଲେ ଓ ତାଙ୍କ ଅଧିକୃତ ରାଜ୍ୟ କଳିଙ୍ଗ ନାମରେ ଅଭିହିତ ଥିଲା । ମତ୍ସ୍ୟ ଓ ବାୟୁ ପୁରାଣରେ ଯେଉଁ ରାଜବଂଶାବଳୀ ଦିଆଯାଇଛି, ସେଥିରୁ ଜଣାଯାଏ ବୁଦ୍ଧଙ୍କ ପୁତ୍ର ପୁରୁରବା ଓ ଇଲାଙ୍କ ସହଯୋଗରେ କଳିଙ୍ଗ ରାଜବଂଶର ଉତ୍ପତ୍ତି ହୋଇଛି । କଳିଙ୍ଗ ରାଜ୍ୟର ପ୍ରତିଷ୍ଠାତା ରାଜା କଳିଙ୍ଗ ତିତିକ୍ଷୁ ବଂଶଧର ଥିଲେ । ଅନ୍ୟ ପୁରାଣ ବର୍ଣ୍ଣନା ଅନୁସାରେ ମନୁଙ୍କ ନାତି ଅର୍ଥାତ୍ ସୁଦ୍ୟୁମ୍ନଙ୍କ ପୁତ୍ର ଉତ୍କଳ ନାମକ ରାଜା ଥିଲେ । ସେ ଯେଉଁ ରାଜ୍ୟରେ ରାଜତ୍ୱ କରୁଥିଲେ, ତାର ନାମ ଉତ୍କଳ । କଳିଙ୍ଗ ସମ୍ବନ୍ଧରେ "ବୌଦ୍ଧ ଜାତକ"ରେ ଉଲ୍ଲେଖ ଅଛି ଯେ କଳିଙ୍ଗର ରାଜଧାନୀ ଦନ୍ତପୁର ଥିଲା । ଦନ୍ତପୁରରେ ବର୍ଷା ନହେବାରୁ କଳିଙ୍ଗ ରାଜା କୁରୁରାଜାଙ୍କ ଧଳାହାତୀଙ୍କୁ କିଛି ଦିନ ପାଇଁ ଆଣିବାକୁ ଅନୁରୋଧ କରି ବ୍ରାହ୍ମଣମାନଙ୍କୁ ପଠାଇଥିଲେ । ତ୍ରିପିଟକରୁ ମିଳିଥିବା ବିବରଣୀରୁ ଜଣାଯାଏ ଯେ ତଦାନୀନ୍ତନ ଉତ୍କଳର ରାଜା ତାଙ୍କର ଏକମାତ୍ର କନ୍ୟା ପଦ୍ମାବତୀଙ୍କୁ ମୃତ୍ୟୁ ମାର୍ତ୍ତଣ୍ଡଙ୍କ ସହ ବିବାହ ଦେଇଥିଲେ । ଯୁଆଁଇଁଙ୍କୁ ଉତ୍କଳଦେଶ ଯୌତୁକ ଦେଇଥିଲେ ।

ଉତ୍କଳ କଳିଙ୍ଗ ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ଏକ ସ୍ୱତନ୍ତ୍ର ରାଜ୍ୟ ରୂପେ ଥିଲା । ଯଯାତିଙ୍କ ଶାସନପତ୍ରରୁ ଜଣାଯାଏ ଯେ ଉତ୍କଳ, କୋଙ୍ଗଦ ଓ କଳିଙ୍ଗ ତିନି ରାଜ୍ୟକୁ ନେଇ କଳିଙ୍ଗ ରାଜ୍ୟ ଗଢ଼ା ହୋଇଥିଲା । ମରଞ୍ଜମୁରା ଦାନପତ୍ରରେ ଉତ୍କଳ, କୋଙ୍ଗଦ, କଳିଙ୍ଗ ଓ କୋଶଳ ଯଯାତିଙ୍କ ଅଧୀନରେ ଶାସିତ ହେଉଥିଲା । ଉତ୍କଳ କଳିଙ୍ଗ ରାଜ୍ୟର ଅନ୍ତର୍ଗତ ଥିଲା ବୋଲି ମହାଭାରତ ଯୁଦ୍ଧ ବର୍ଣ୍ଣନାରୁ ଜଣାଯାଏ । ଭୀଷ୍ମ ପର୍ବରେ କଳିଙ୍ଗ ରାଜାଙ୍କର ବହୁ ହାତୀ ଥିଲେ ଓ କଳିଙ୍ଗ ରାଜାଙ୍କ ସଙ୍ଗେ ମିଶି ନିଷାଦମାନେ ଯୁଦ୍ଧ କରୁଥିବାର ବର୍ଣ୍ଣିତ ଅଛି । ପୂର୍ବତନ ଗଡ଼ଜାତର ଆଦିମ ଅଧିବାସୀମାନଙ୍କୁ ନିଷାଦ ବୋଲି କୁହାଯାଉଛି । ବୈତରଣୀ ନଦୀ କଳିଙ୍ଗ ରାଜ୍ୟ ଭିତରେ ପ୍ରବାହିତ ହେଉଥିବା କଥା ମତ୍ସ୍ୟପୁରାଣରେ ବର୍ଣ୍ଣିତ ହୋଇଛି । ଏଥିରୁ ଅନୁମିତ ହୁଏ ଯେ ଉତ୍କଳ କଳିଙ୍ଗ ରାଜ୍ୟର ଅନ୍ତର୍ଗତ ଥିଲା । ଖାରବେଳଙ୍କ ଶିଳାଲିପିରୁ ଉତ୍କଳ କଳିଙ୍ଗର ଅନ୍ତର୍ଭୁକ୍ତ ଥିବାର ଜଣାଯାଏ । ମାତ୍ର ଉତ୍କଳ କେବେ କଳିଙ୍ଗ ରାଜ୍ୟରୁ ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେଲା, ତାହା ସଠିକ ଭାବେ ଜଣାଯାଏ ନାହିଁ । କାଳିଦାସଙ୍କ 'ରଘୁବଂଶ'ର ଏକ ବର୍ଣ୍ଣନାରୁ ଜଣାଯାଏ ସେସମୟରେ ଉତ୍କଳ କଳିଙ୍ଗଠାରୁ ବିଚ୍ଛିନ୍ନ ଥିଲା । ରଘୁଙ୍କ ସୈନ୍ୟମାନେ କପିଶାନଦୀ ଅର୍ଥାତ୍ ମେଦିନାପୁର ଜିଲ୍ଲାର କଂସାଇ ନଦୀ ପାର ହେବା ପରେ ଉତ୍କଳ ଜାତି ସେମାନଙ୍କୁ କଳିଙ୍ଗ ଆଡ଼କୁ ବାଟ ଦେଖାଇ ଥିଲେ । କାଳିଦାସ ପଞ୍ଚମ ଶତାବ୍ଦୀର ଲୋକ ବୋଲି ଅନୁମିତ । ତେଣୁ ପଞ୍ଚମ ଶତାବ୍ଦୀ ବେଳକୁ ଉତ୍କଳ କଳିଙ୍ଗ ରାଜ୍ୟରୁ ବିଚ୍ଛିନ୍ନ ହୋଇ ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହୋଇଥିଲା ବୋଲି କେତେକ ଅନୁମାନ କରନ୍ତି ।

ଏହାଛଡ଼ା ତ୍ରିକଳିଙ୍ଗ ବୋଲି ଆଉ ଏକ ରାଜ୍ୟର ନାମ ପୁରାତନ ଇତିହାସରୁ ଜଣାଯାଏ । କେତେକ ଐତିହାସିକ ଏହି ତ୍ରିକଳିଙ୍ଗ ଏକ ଅଞ୍ଚଳ ବିଶେଷ ବୋଲି ଅନୁମାନ କରିଅଛନ୍ତି । ସେମାନେ କହନ୍ତି ଯେ କଳିଙ୍ଗର ଉତ୍ତର ଅଂଶ, ପୂର୍ବଘାଟ ପର୍ବତମାଳାର ପଶ୍ଚିମ ଅଞ୍ଚଳ, ମାଲକାନଗିରି ଓ ବସ୍ତର ଅଞ୍ଚଳଗୁଡ଼ିକୁ ତ୍ରିକଳିଙ୍ଗ ବୋଲି କୁହାଯାଉଥିଲା । ବ୍ରହ୍ମଦେଶ ଇତିହାସରୁ ଜଣାଯାଏ ଯେ ଖ୍ରୀଷ୍ଟ ପୂର୍ବରୁ କଳିଙ୍ଗ ଜାତି ଯେତେବେଳେ ସେ ଦେଶକୁ ଯାଉଥିଲେ, ସେଠାରେ

ସେମାନେ ତ୍ରିକଳିଙ୍ଗ ରାଜ୍ୟ ସ୍ଥାପନ କରିଥିଲେ । ଏହି ତ୍ରିକଳିଙ୍ଗ ରାଜ୍ୟ ତିନୋଟି ଜିଲ୍ଲା ନେଇ ଗଢ଼ାଯାଇଥିଲା । ଉତ୍କଳ, କଙ୍ଗୋଦ ଓ କଳିଙ୍ଗକୁ ନେଇ ତ୍ରିକଳିଙ୍ଗ ରାଜ୍ୟ ଗଠିତ ହୋଇଥିଲା । ଗଙ୍ଗବଂଶୀ ରାଜାମାନଙ୍କର ଶାସନପତ୍ରରୁ ଜଣାଯାଉଛି ଯେ ଦନ୍ତ ହସ୍ତଙ୍କ ପୂର୍ବବର୍ତ୍ତୀ ରାଜାମାନେ କଳିଙ୍ଗ ରାଜ୍ୟ ଜୟ କରି ଥିଲେ ମଧ୍ୟ ଉତ୍କଳ ଅଧିକାର କରି ନଥିବାରୁ ସେମାନେ ତ୍ରିକଳିଙ୍ଗ ଉପାଧି ଗ୍ରହଣ କରି ନଥିଲେ । ଓଡ଼ିଶା ଅଧିକାର କରିବାକୁ ଯାଇ ସେମାନେ 'ତ୍ରିକଳିଙ୍ଗାଧିପତି' ଉପାଧି ଧାରଣ କଲେ ।

**ଓଡ଼ିଶାର ସୀମା :** ଓଡ଼ିଶାର ସୀମା ବିଶିଷ୍ଟ ଭାଷାତତ୍ତ୍ୱବିତ୍ ଶ୍ରୀ ଅରସେନ୍ ତାଙ୍କ ଭାଷାସର୍ଭେ ରିପୋର୍ଟରେ ଉଲ୍ଲେଖ କରିଛନ୍ତି ଯେ ଓଡ଼ିଆଭାଷା ପ୍ରଦେଶ ସୀମା ପୂର୍ବରେ ବଙ୍ଗୋପସାଗର, ଉତ୍ତରରେ କାନିଡାଇପାଇଠାରୁ ବାଙ୍କୁଡ଼ା ପର୍ଯ୍ୟନ୍ତ, ସିଂହଭୂମିର ସାଧାରଣସୀମା ମୟୂରଭଞ୍ଜ ଓ ସରେଇକଳା, ରାଞ୍ଚି ଜିଲ୍ଲାର ଦକ୍ଷିଣସୀମା ପର୍ଯ୍ୟନ୍ତ, ଯଶପୁରର ଦକ୍ଷିଣାଂଶ ଏବଂ ଉଦୟପୁର ମଧ୍ୟ ଦେଇ ରାଏଗଡ଼, ସାରଙ୍ଗଗଡ଼, ଜୟପୁର ଭାଇଜାଗପଟ୍ଟାମ, ବସ୍ତର ଓ ଚିଚିକ୍ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଷ୍ଟର୍ଲିଙ୍ଗ୍ ସାହେବ ତାଙ୍କ ଓଡ଼ିଶା ଇତିହାସରେ ଓଡ଼ିଶାର ସୀମା ଉତ୍ତରରେ ତ୍ରିବେଣୀଠାରୁ ବିଶନପୁର ଦେଇ ପାଟକୁମ ପର୍ଯ୍ୟନ୍ତ, ଦକ୍ଷିଣରେ ଗୋଦାବରୀ, ପୂର୍ବରେ ହୁଗୁଳି ଓ ସମୁଦ୍ର ଏବଂ ପଶ୍ଚିମରେ ସିଂହଭୂମିଠାରୁ ସୋନପୁର, ଗାଙ୍ଗପୁର ଓ ସମ୍ବଲପୁର ପର୍ଯ୍ୟନ୍ତ ବିସ୍ତୃତ ଥିଲା ବୋଲି ଉଲ୍ଲେଖ କରିଛନ୍ତି ।

## ଐତିହାସିକ ଯୁଗ

ନନ୍ଦବଂଶ କଳିଙ୍ଗର ପ୍ରଥମ ରାଜବଂଶ ବୋଲି ଐତିହାସିକମାନେ ମତ ଦିଅନ୍ତି । ଏମାନେ ପ୍ରାୟ ଏଗାର ଶହ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ନନ୍ଦବଂଶ ରାଜାମାନେ ଦୁର୍ବଳ ହୋଇ ପଡ଼ିବାରୁ ଓଡ଼ିଶା ପୁଣି ସ୍ୱାଧୀନ ହୋଇଯାଇଥିଲା । ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଗ୍ରୀକ୍‌ମାନଙ୍କୁ ପରାସ୍ତ କରି ଭାରତରେ ଏକ କେନ୍ଦ୍ରୀଭୂତ ଶାସନ ପ୍ରତିଷ୍ଠା କରିବାକୁ ଇଚ୍ଛା କରିଥିଲେ ମଧ୍ୟ କଳିଙ୍ଗ ତାଙ୍କ ଅଧୀନତା ସ୍ୱୀକାର କରି ନଥିଲା । ଅଶୋକ ଖ୍ରୀ.ପୂ. ୨୬୧ରେ କଳିଙ୍ଗ ବିଜୟ କରିଥିଲେ । ଏହି ସମୟରେ ଓଡ଼ିଶାର ସୀମା ଉତ୍ତରରେ ମହାନଦୀଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବା ମହାନଦୀଠାରୁ ଋଷିକୁଲ୍ୟା ପର୍ଯ୍ୟନ୍ତ ବିସ୍ତୃତ ଥିଲା । କଳିଙ୍ଗ ଯୁଦ୍ଧରେ ଓଡ଼ିଶାର ଏକଲକ୍ଷ ଲୋକ ପ୍ରାଣ ହରାଇ ଥିଲେ ଓ ଦେଢ଼ ଲକ୍ଷ ଲୋକ ଅଶୋକଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ ବୋଲି ଅଶୋକଙ୍କ ଶିଳାଲିପିରୁ ଜଣାଯାଏ । କଳିଙ୍ଗ ଯୁଦ୍ଧ ପରେ ଅଶୋକଙ୍କର ଅଦ୍ଭୁତ ପରିବର୍ତ୍ତନ ଘଟିଲା ଏବଂ ସେ ବୌଦ୍ଧ ଧର୍ମ ଗ୍ରହଣ କଲେ । ଉତ୍କଳର ସୁପ୍ରସିଦ୍ଧ ବୌଦ୍ଧଭିକ୍ଷୁ ଉପଗୁପ୍ତ ଅହିଂସା ମନ୍ତ୍ର ଦାନ କରି ଅଶୋକଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିଥିଲେ । ଅଶୋକଙ୍କ ୧୪ଟି ଅନୁଶାସନ ମଧ୍ୟରୁ ୧୩ଟି ହେଉଛି କଳିଙ୍ଗ ବିଜୟ ସମ୍ପର୍କରେ ।

## କଳିଙ୍ଗ-ସମ୍ରାଟ-ଖାରବେଳ

ମୌର୍ଯ୍ୟ ସାମ୍ରାଜ୍ୟ ପତନ ପରେ ଜୈନ ସମ୍ରାଟ ଖାରବେଳ ଏକ ଶକ୍ତିଶାଳୀ ସାମ୍ରାଜ୍ୟ ଭାରତରେ ସ୍ଥାପନ କରିଥିଲେ । ସେ ୧୪ ବର୍ଷ ରାଜତ୍ୱ କରିଥିଲେ ଓ ୨୫ ବର୍ଷ ବୟସରେ ତାଙ୍କର ସାମରିକ ଜୀବନ ଆରମ୍ଭ ହୋଇଥିଲା । ତାଙ୍କ ଶାସନର ଶିଳାଲିପି ଓଡ଼ିଶାର ଖଣ୍ଡଗିରି ପାହାଡ଼ରେ ଖୋଦିତ କରିଛନ୍ତି । ତାଙ୍କର ରାଜ୍ୟ ଶାସନ ବିବରଣୀ ଏହି ଶିଳାଲିପିରୁ ଜଣାଯାଏ । ସେ ଚେଦିବଂଶର ରାଜା ଥିଲେ । ତାଙ୍କ ଶାସନ ସମୟରେ କଳିଙ୍ଗରେ ଝଡ଼ ତୋଫାନ ହୋଇ ରାଜଧାନୀର କାନ୍ଥ, ଫାଟକ, ଘରଦ୍ୱାର ଭାଙ୍ଗି ଯାଇଥିଲା । ରାଜ୍ୟ ଶାସନର ତୃତୀୟ ବର୍ଷରେ ସେ ନୃତ୍ୟ, ଗୀତ ଓ ଅନ୍ୟାନ୍ୟ ଉତ୍ସବ ପ୍ରଦର୍ଶନ ପାଇଁ ବ୍ୟବସ୍ଥା କରି ଥିଲେ । ସେ ସନ୍ନ୍ୟାସୀମାନଙ୍କ ପାଇଁ ଗୁମ୍ଫା ଓ ବାସସ୍ଥାନ ନିର୍ମାଣ କରି ଥିଲେ ଓ ଜୈନ ସନ୍ନ୍ୟାସୀମାନଙ୍କୁ ଅନ୍ନବସ୍ତ୍ର ଦେଇ ଆଶ୍ରୟ ଦେଉଥିଲେ । ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀଠାରୁ ପ୍ରାୟ ୨୪ ଶହ ବର୍ଷ ପର୍ଯ୍ୟନ୍ତ ଓଡ଼ିଶା ଇତିହାସ ସମ୍ବନ୍ଧରେ ବିଶେଷ ବିବରଣୀ ମିଳେ ନାହିଁ ।

**ସମୁଦ୍ରଗୁପ୍ତ-** ଖ୍ରୀଷ୍ଟାବ୍ଦ ୩୪୨-୪୩ରେ ଚନ୍ଦ୍ରଗୁପ୍ତଙ୍କ ପୁତ୍ର ସମୁଦ୍ରଗୁପ୍ତ କଳିଙ୍ଗର କେତେକ ସ୍ଥାନ ଦଖଲ କରି ନେଇଥିଲେ । ଏହି ସମୟରେ ଓଡ଼ିଶାରେ କୌଣସି ଉଲ୍ଲେଖଯୋଗ୍ୟ ଘଟଣା ଘଟି ନଥିଲା । ମାତ୍ର ୩୯୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଶୈଳୋଦ୍ଭବ ବଂଶ ରାଜତ୍ୱ କଲା ପରେ ବହୁ ଗୌରବମୟ ଘଟଣା ଘଟିଲା । ସେତେବେଳେ ଓଡ଼ିଆମାନେ ଓଡ଼ିଶା ବାହାରେ ସୁଦୂର ଜାଭା, ବାଲି, ବୋର୍ଣ୍ଣିଓ ଓ ସିଂହଳରେ ବାଣିଜ୍ୟ କରିବା ଉଦ୍ଦେଶ୍ୟରେ ଯାଇଥିଲେ । ସିଂହଳରେ ଓଡ଼ିଆ ବଣିକମାନେ ବାଣିଜ୍ୟ କରିବା ଅବସରରେ ସେଠାରେ ଉତ୍କଳୀୟ ସଭ୍ୟତା ବିସ୍ତାର କରିଥିଲେ । ଏପରିକି ସିଂହଳରେ "ମେଘବାହାନ" ଉପାଧିଧାରୀ ଓଡ଼ିଆ ରାଜା ଥିଲେ ବୋଲି ଐତିହାସିକମାନେ ମତ ଦିଅନ୍ତି । ଓଡ଼ିଆ ବଣିକମାନେ ପାରାଦୀପ ଓ ଚାନ୍ଦବାଲିରୁ ବୋଇତଯାତ୍ରା କରୁଥିଲେ । ଶୈଳେନ୍ଦ୍ର ସାମ୍ରାଜ୍ୟ ବା ଶ୍ରୀ ବିଜୟ ତାଙ୍କ ସାମ୍ରାଜ୍ୟ ମାଲେସିଆ ବା ସୁବର୍ଣ୍ଣଦ୍ୱୀପରେ କି ଜଳ କି ସ୍ଥଳରେ ପ୍ରଭୁତ୍ୱ ବିସ୍ତାର କରିଥିଲା । ଦାକ୍ଷିଣାତ୍ୟର ଚୋଳବଂଶୀୟ ରାଜାମାନେ ସମୁଦ୍ରରେ ଆଧିପତ୍ୟ ବିସ୍ତାର କରି ଶୈଳେନ୍ଦ୍ରମାନଙ୍କୁ ପରାସ୍ତ କରିଥିଲେ । ପ୍ରାୟ ୬୪୩ ଖ୍ରୀ.ଅ.ରେ ହର୍ଷବର୍ଦ୍ଧନ ଓଡ଼ିଶା ଆକ୍ରମଣ କରିଥିଲେ । ବୌଦ୍ଧ ଧର୍ମ ପ୍ରଚାର ତାଙ୍କର ଉଦ୍ଦେଶ୍ୟ ଥିଲା । ସେଥିପାଇଁ ସେ ବୌଦ୍ଧବିରୋଧୀ ଶଶାଙ୍କଠାରୁ ଓଡ଼ିଶାକୁ ଜୟ କରି ନେବାକୁ ଚାହିଁଥିଲେ ।

**ଭୌମବଂଶ ଓ ଓଡ଼ିଶା :** ଷଷ୍ଠ ଶତାବ୍ଦୀ ମଧ୍ୟ ଭାଗରେ ଓଡ଼ିଶାରେ ଭୌମବଂଶ ଶକ୍ତିଶାଳୀ ହୋଇ ଉଠିଲା । ଓଡ଼ିଶାର ସଭ୍ୟତା ଓ ସଂସ୍କୃତି ଭାରତ ପାର ହୋଇ ଚୀନ ପର୍ଯ୍ୟନ୍ତ ଭୌମ ରାଜତ୍ୱରେ ବ୍ୟାପି ଯାଇଥିଲା । ଭୌମବଂଶୀୟ ରାଜାମାନଙ୍କର ରାଜଧାନୀ ବର୍ତ୍ତମାନର ଯାଜପୁରଠା[illegible]ଲା । ସେ ସମୟରେ ଯାଜପୁରରେ ବୌଦ୍ଧ ବିହାର ଓ ବିଖ୍ୟାତ ଶିକ୍ଷାକେନ୍ଦ୍ର ଥିଲା । ଯାଜପୁର ଅନ୍ତର୍ଗତ ପ୍ରାଚୀନ ଉତ୍କଳର ପୃଥିବୀ ବିଖ୍ୟାତ ଶିକ୍ଷାପୀଠ(ପୁ-ସୋ-ଗିରି) 'ପୁଷ୍ପ ଗିରି' ତଥା ଲଳିତଗିରି ଓ ରତ୍ନଗିରି ଥିଲା । ଭୌମବଂଶୀୟ ରାଜାମାନଙ୍କ ରାଜତ୍ୱର ପ୍ରଥମରୁ 'ବିରଜା' ନାମ ପ୍ରସିଦ୍ଧ ଥିଲା । ଚୀନ ଇତିହାସ ଓ ସିଭିଲଥାନ ଲେଭିଙ୍କ ଏକ ବିବରଣୀରୁ ଜଣାଯାଏ, ଓଡ଼ିଶାର ଭୌମବଂଶୀୟ ରାଜା ଶୁଭଙ୍କର ଦେବ ନିଜ ହାତ ଲେଖା ଗୋଟିଏ ବୌଦ୍ଧଗ୍ରନ୍ଥ ପ୍ରଜ୍ଞା ନାମକ ଜଣେ ବୌଦ୍ଧ ଭିକ୍ଷୁଙ୍କ ହାତରେ ଚୀନ ରାଜାଙ୍କ ନିକଟକୁ ପଠାଇ ଥିଲେ । ଏହି ଗ୍ରନ୍ଥ ଏବେ ମଧ୍ୟ ଚୀନର ଗ୍ରନ୍ଥାଗାରରେ ଅଛି । ଭୌମବଂଶ ରାଜତ୍ୱ

ସମୟରୁ ଓଡ଼ିଶାରେ ଶୈବ ଧର୍ମ ପ୍ରଚାର ଆରମ୍ଭ ହୋଇଥିଲା । କଳା ଓ ସ୍ଥାପତ୍ୟରେ ଓଡ଼ିଶା ଉତ୍କର୍ଷତା ଲାଭ କରିଥିଲା । ଓଡ଼ିଶାର ବହୁ ସ୍ଥାନରେ ମନ୍ଦିର ଓ ବିହାର ନିର୍ମିତ ହୋଇଥିଲା । ରତ୍ନଗିରି ଓ ଉଦୟଗିରି ପ୍ରଭୃତିରେ ଚାରୁକାର୍ଯ୍ୟର ନିଦର୍ଶନ ଏହି ସମୟରେ ଦେଖିବାକୁ ମିଳିଥିଲା । ଏହି ସମୟରେ ଓଡ଼ିଶାରେ ଉତ୍ତର-ତୋଷାଳୀ, ଦକ୍ଷିଣ-ତୋଷାଳୀ ଓ କଙ୍ଗୋଦ ବୋଲି ତିନୋଟି ପ୍ରଦେଶ ଥିବାର ଜଣାଯାଏ । ଏହା ସାଙ୍କୁଡ଼ା, ମେଦିନୀପୁରଠାରୁ ଗଞ୍ଜାମ ଓ ପଶ୍ଚିମରେ ସମ୍ବଲପୁର ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

## କେଶରୀବଂଶ ଓ ଗଙ୍ଗବଂଶଙ୍କ ଓଡ଼ିଶା ଶାସନ

ଦୁର୍ଗବଂଶ ଓ ଭଉମବଂଶ କିଛି ଦିନ ରାଜତ୍ୱ କରିବା ପରେ ବିଖ୍ୟାତ କେଶରୀବଂଶ ଓଡ଼ିଶାରେ ଏକଛତ୍ରାଧିପ ହୋଇଥିଲେ । ମାଦଳା ପାଞ୍ଜିରେ ଏହି ବଂଶର ସୁଖ୍ୟାତି ବର୍ଣ୍ଣନା କରାଯାଇଛି । ସେମାନେ ନିଜ ସାମ୍ରାଜ୍ୟକୁ ଉତ୍ତରରେ କାଂଶବାସ ନଦୀଠାରୁ ଦକ୍ଷିଣରେ ଋଷିକୁଲ୍ୟା ନଦୀ, ପୂର୍ବରେ ସମୁଦ୍ରଠାରୁ ପଶ୍ଚିମରେ ତାଲଚେର ଓ ବୌଦ୍ଧ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । କେଶରୀ ବଂଶୀୟ ରାଜାମାନଙ୍କ ମଧ୍ୟରୁ ଜନ୍ମେଜୟ, ଯଯାତି ଓ ଲଲାଟେନ୍ଦୁ କେଶରୀ ଅଧିକ ପରାକ୍ରମଶାଳୀ ଥିଲେ । ସେ ଚଉଦ୍ୱାରରେ ରାଜଧାନୀ କରିଥିଲେ । ସେମାନେ ଅଷ୍ଟମ ଶତାବ୍ଦୀ ଶେଷ ଭାଗରୁ ଦଶମ ଶତାବ୍ଦୀ ମଧ୍ୟରେ ଓଡ଼ିଶା ଶାସନ କରୁଥିଲେ । ଉତ୍କଳରେ ବ୍ରାହ୍ମଣ୍ୟ ଧର୍ମକୁ ପ୍ରାଧାନ୍ୟ ଦେଉଥିଲେ । ଯଯାତି କେଶରୀ ବୈଦିକ କ୍ରିୟାକାଣ୍ଡ ଜାଣିଥିବା ୧୦ ହଜାର ବ୍ରାହ୍ମଣଙ୍କୁ କାନ୍ୟକୁବ୍ଜରୁ ଆଣି ଯାଜପୁର ବୈତରଣୀ ଦଶାଶ୍ୱମେଧ ଘାଟରେ ଯଜ୍ଞ କରିଥିଲେ । ଯଯାତି କେଶରୀ ଶୈବ ଧର୍ମର ପୃଷ୍ଠପୋଷକତା କରି ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । ଲଲାଟେନ୍ଦୁ କେଶରୀଙ୍କ ସମୟରେ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ମର୍କତ କେଶରୀଙ୍କ ସମୟରେ କଟକରେ କାଠଯୋଡ଼ି ବନ୍ଧ ଓ ମହାନଦୀ ବନ୍ଧ ମଧ୍ୟ ନିର୍ମିତ ହୋଇଥିଲା ।

୧୧ଶ ଶତାବ୍ଦୀ ବେଳକୁ କେଶରୀବଂଶ ଦୁର୍ବଳ ହୋଇ ପଡ଼ିଲା । ଗଙ୍ଗବଂଶୀୟ ରାଜାମାନେ ସକ୍ରିୟ ହୋଇ ଓଡ଼ିଶା ଶାସନ କଲେ । ଋଷିକୁଲ୍ୟା ନଦୀ ଦକ୍ଷିଣରେ ଥିବା ଦକ୍ଷିଣ-କଳିଙ୍ଗକୁ ଗଙ୍ଗବଂଶୀ ରାଜାମାନେ ଓଡ଼ିଶା ଅନ୍ତର୍ଭୁକ୍ତ କରିଥିଲେ । ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ, ପୂର୍ବରେ ସମୁଦ୍ରଠାରୁ ଆରମ୍ଭ କରି ପଶ୍ଚିମରେ ମହାରାଷ୍ଟ୍ର ଦେଶ ପର୍ଯ୍ୟନ୍ତ ବିସ୍ତାରିତ କରିଥିଲେ । ଚୋଡ଼ଗଙ୍ଗ ଦେବ ଜଣେ ପ୍ରସିଦ୍ଧ ରାଜା ଥିଲେ । ତାଙ୍କ ସମୟରେ ଓଡ଼ିଶାର ସୀମା ଉତ୍ତରରେ ମିଦ୍ନାପୁର(ମେଦିନୀପୁର) ଦକ୍ଷିଣରେ ଗୋଦାବରୀ ନଦୀ, ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ପୂର୍ବଘାଟ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ତାଙ୍କ ସମୟରେ ପୃଥିବୀ ବିଖ୍ୟାତ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ହୋଇଥିଲା । ସେ ବିଷ୍ଣୁ ପୂଜାର ପ୍ରବର୍ତ୍ତକ ଥିଲେ । କଟକକୁ ରାଜଧାନୀ ଉଠାଇ ଆଣିଥିଲେ ।

ଅନଙ୍ଗଭୀମଦେବଙ୍କ ସମୟରେ ମୁସଲମାନମାନେ ଭାରତ ଆକ୍ରମଣ କରିଥିଲେ । ବଙ୍ଗର ଶେଷ ରାଜା ଲକ୍ଷ୍ମଣ ସେନଙ୍କୁ ଅନଙ୍ଗ ଭୀମଦେବ ଆଶ୍ରୟ ଦେବାରୁ ମୁସଲମାନମାନେ ବାରମ୍ବାର ଓଡ଼ିଶା ଆକ୍ରମଣ କରିଥିଲେ । ମାତ୍ର ପ୍ରବଳ ପରାକ୍ରମଶାଳୀ ଅନଙ୍ଗଭୀମଦେବ ସେମାନଙ୍କୁ ବାରମ୍ବାର ପରାସ୍ତ କରିଥିଲେ । ସେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ଭୋଗମଣ୍ଡପ ନିର୍ମାଣ କରିଥିଲେ । ଗଙ୍ଗବଂଶର ଶ୍ରେଷ୍ଠ ସମ୍ରାଟ ନରସିଂହଦେବଙ୍କ ସମୟରେ ଓଡ଼ିଶାରେ ମୁସଲମାନ ସୈନ୍ୟମାନେ ଶକ୍ତିଶାଳୀ ହୋଇ ଉଠିଥିଲେ । ନରସିଂହଦେବ ମୁସଲମାନଙ୍କ ବିରୁଦ୍ଧରେ ଆକ୍ରମଣ କରି ଥିଲେ । ମଲ୍ଲିକ ଇଜୁଦିନଙ୍କ ଅଧୀନରେ ପରିଚାଳିତ ମୁସଲମାନ ସୈନ୍ୟ ଓ ଓଡ଼ିଶା ସୈନ୍ୟଙ୍କ ଭିତରେ ଯେଉଁ ଭୀଷଣ ଯୁଦ୍ଧ ହେଲା, ସେଥିରେ ମୁସଲମାନ ସୈନ୍ୟମାନେ ସଂପୂର୍ଣ୍ଣ ପରାସ୍ତ ହୋଇଥିଲେ । ତାଙ୍କ ସମୟରେ ବଙ୍ଗଳାର ମେଦିନୀପୁର, ହାଓଡ଼ା ଓ ହୁଗୁଳି ପ୍ରଭୃତି ଜିଲ୍ଲାଗୁଡ଼ିକ ଓଡ଼ିଶାର ଅନ୍ତର୍ଭୁକ୍ତ ହୋଇଥିଲା । ନରସିଂହ ଦେବ ବିଶ୍ୱ ବିଖ୍ୟାତ କୋଣାର୍କ ମନ୍ଦିର ନିର୍ମାଣ କରି ପ୍ରସିଦ୍ଧ ହୋଇଥିଲେ । ସେ ସମୟରେ କୋଣାର୍କ ମନ୍ଦିର ନିର୍ମାଣରେ ସେ ୪୦ କୋଟି ଟଙ୍କା ବ୍ୟୟ କରିଥିଲେ ।

ଗଙ୍ଗବଂଶ ସମ୍ରାଟଙ୍କ ଶାସନ କାଳରେ ଚୋଳ ସଂସ୍କୃତିର ପ୍ରଭାବ ଓଡ଼ିଶା ଉପରେ ପଡ଼ିଥିଲା । ଗଙ୍ଗବଂଶ ଦୁର୍ବଳତାର ସୁଯୋଗ ନେଇ ଚୋଳବଂଶର ରାଜାମାନେ ଓଡ଼ିଶା ଅଧିକାର କରିଥିଲେ । ସେମାନେ ଓଡ଼ିଆ ସଂସ୍କୃତି ଦ୍ୱାରା ସମ୍ପୂର୍ଣ୍ଣ ପ୍ରଭାବିତ ହୋଇ ପଡ଼ିଥିଲେ । ଏହି ସମୟରେ ଓଡ଼ିଶାରେ ବିଭିନ୍ନ ପ୍ରକାରର ମୁଦ୍ରା ପ୍ରଚଳିତ ହୋଇଥିଲା ।

## ସୂର୍ଯ୍ୟବଂଶ ଓ ଓଡ଼ିଶାରେ ମୁସଲମାନଙ୍କ ଆକ୍ରମଣ

ଗଙ୍ଗ ରାଜତ୍ୱର ଅନ୍ତିମ ଭାଗକୁ ଓଡ଼ିଶାର ରାଜନୈତିକ ଅବସ୍ଥା ଜଟିଳ ହୋଇପଡ଼ିଲା । ଉତ୍ତରରେ ବଙ୍ଗର ସ୍ୱାଧୀନ ମୁସଲମାନ ସୁଲତାନ ଓ ଦକ୍ଷିଣ-ପଶ୍ଚିମରେ ବାହାମନି ସୁଲତାନ ଓଡ଼ିଶାକୁ ଦୃଢ଼ ଆକ୍ରମଣ ଚାପ ଦେଉଥିଲେ । ସୂର୍ଯ୍ୟବଂଶର ବିଖ୍ୟାତ ସମ୍ରାଟ୍ କପିଳେନ୍ଦ୍ର ଦେବ ଅତି ଦରିଦ୍ର ଅବସ୍ଥାରୁ ଓଡ଼ିଶାର ଶାସକ ହୋଇ ଥିଲେ । ନିଜ ରାଜ୍ୟକୁ ସୁଦୃଢ଼ କରିବା ପାଇଁ ସେ ବହୁ ବିଦ୍ରୋହ ଦମନ କରି ଶେଷରେ ପ୍ରତି ଆକ୍ରମଣ ଆରମ୍ଭ କରି ଦେଉଥିଲେ । ସେ ବଙ୍ଗଳାର ମୁସଲମାନ ଶାସକ ଓ ମାଳବାର ମୁସଲମାନ ଶାସକଙ୍କୁ ପରାସ୍ତ କରି ୧୪୫୬ ଖ୍ରୀ.ରେ ପ୍ରବଳ ପରାକ୍ରାନ୍ତ ହିନ୍ଦୁ ସାମ୍ରାଜ୍ୟ ବିଜୟ ନଗରକୁ ଦଖଲ କରି ବିଜୟ ଗୌରବ ଅର୍ଜନ କରିଥିଲେ ।

କପିଳେନ୍ଦ୍ର ଦେବଙ୍କ ପରେ ପୁରୁଷୋତ୍ତମଦେବ ଓଡ଼ିଶାର ଶାସକ ହେଲେ । ସେ ଦକ୍ଷିଣରେ କାଞ୍ଚିରାଜ୍ୟର ରାଜା ସାଲୁ ନରସିଂହ ଦେବ ଓ ବାହାମନି ସୁଲତାନଙ୍କୁ ପରାସ୍ତ କରିଥିଲେ । ସେ କାଞ୍ଚି ରାଜ୍ୟର ରାଜଜେମା ପଦ୍ମାବତୀଙ୍କୁ ବିବାହ କରି ଶ୍ରୀଜଗନ୍ନାଥଙ୍କ ସେବା ପୂଜାରେ ନିଜକୁ ହଜାଇ ଦେଉଥିଲେ ।

ସୂର୍ଯ୍ୟବଂଶର ଅନ୍ୟତମ ସମ୍ରାଟ୍ ପ୍ରତାପରୁଦ୍ରଦେବ ଇତିହାସରେ ଅମର ହୋଇଛନ୍ତି । ତାଙ୍କ ରାଜତ୍ୱର ପ୍ରଥମ ଭାଗରେ ଓଡ଼ିଶା ସାମ୍ରାଜ୍ୟକୁ ଉତ୍ତରରେ ହୁଗୁଳୀ ନଦୀଠାରୁ ଦକ୍ଷିଣରେ ଉଦୟଗିରି ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ଏକ ତାମ୍ର ଶାସନରୁ ଜଣାଯାଏ ପ୍ରତାପରୁଦ୍ର କର୍ଣ୍ଣାଟକ, ବେରାର ଓ ବଙ୍ଗର ରାଜାମାନଙ୍କୁ ପରାସ୍ତ କରିଥିଲେ । ଦକ୍ଷିଣରେ ଉଦୟଗିରି ଦକ୍ଷିଣ ଅଞ୍ଚଳ ଚନ୍ଦ୍ରଗିରି ରାଜ୍ୟ ଜୟ କରିଥିଲେ । ସେସମୟରେ ବଙ୍ଗର ସୁଲତାନଙ୍କ ସେନାପତି ଇସମାଇଲଗାଜି ଓଡ଼ିଶା

ଆକ୍ରମଣ କରି ଅନେକ ହିନ୍ଦୁ ଦେବା-ଦେବୀଙ୍କ ମନ୍ଦିର ଭାଙ୍ଗି ଦେଇଥିଲେ । ପୁରୀ ସହର ଲୁଣ୍ଠନ କରି ଅନେକ ମୂର୍ତ୍ତି ଓ ମନ୍ଦିର ଭାଙ୍ଗିଦେବା ଫଳରେ ପଣ୍ଡାମାନେ ଶ୍ରୀଜଗନ୍ନାଥ ବିଗ୍ରହକୁ ନେଇ ଚିଲିକା କୂଳରେ ଚଢ଼େଇଗୁହା ପାହାଡ଼ରେ ଲୁଚାଇ ରଖିଥିବା କିମ୍ବଦନ୍ତୀ ଅଛି । ପ୍ରତାପରୁଦ୍ର ମୁସଲମାନଙ୍କ ଆକ୍ରମଣକୁ ପ୍ରତିହତ କରିବାକୁ ବହୁଚେଷ୍ଟା କଲେ ମଧ ତାଙ୍କର ଜଣେ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧରର ବିଶ୍ୱାସଘାତକତା ଯୋଗୁଁ ସଫଳ ହୋଇ ପାରିନଥିଲେ । ଅନ୍ୟ ପକ୍ଷରେ ପ୍ରତାପରୁଦ୍ରଙ୍କୁ ବିଜୟନଗର ସମ୍ରାଟ୍ କୃଷ୍ଣଦେବ ଆକ୍ରମଣ କଲେ । ୧୫୫୩ ଖ୍ରୀ.ଅ.ରେ କୃଷ୍ଣଦେବ ରାୟ ଉଦୟଗିରି ଦୁର୍ଗ ଦଖଲ କରି ନେଲେ । ଏହାପରେ ସେ କୋଣ୍ଡବିଡୁ ଦୁର୍ଗ ଆକ୍ରମଣ କଲେ । କୃଷ୍ଣ ଦେବରାୟଙ୍କ ସଙ୍ଗେ ଯୁଦ୍ଧ ଲାଗିଥିବାବେଳେ ପ୍ରତାପରୁଦ୍ରଦେବ ଜଣେ ମୁସଲମାନ ଶାସକଙ୍କ ସାହାଯ୍ୟ ଲୋଡ଼ିଥିଲେ ବୋଲି ଐତିହାସିକମାନେ ତାଙ୍କୁ ସମାଲୋଚନା କରନ୍ତି । ମାତ୍ର ଡ଼ଃ ହରେକୃଷ୍ଣ ମହତାବ ତାଙ୍କ "ଓଡ଼ିଶା ଇତିହାସ"ରେ ତାହା ଖଣ୍ଡନ କରି କହିଛନ୍ତି, "ପ୍ରତାପରୁଦ୍ର ଦେବ ଓ ବିଜାପୁର ସୁଲତାନଙ୍କ ଭିତରେ ସାମର୍ଥ୍ୟ ଯୋଗରେ ରାଜନୈତିକ ବନ୍ଧୁତା ସ୍ଥାପିତ ହୋଇଥିଲା ଏବଂ ନିଜ ରାଜ୍ୟର ହିତ ଦୃଷ୍ଟିରୁ ସବୁ ଯୁଗରେ ଶାସକମାନେ ଏହା କରିଛନ୍ତି, ଏଥିରେ ପ୍ରତାପରୁଦ୍ରଙ୍କ କାର୍ଯ୍ୟ ଦୋଷାବହ ନୁହଁ ।"

ପ୍ରତାପରୁଦ୍ରଙ୍କ ସମୟରେ ଚୈତନ୍ୟଦେବ ଓଡ଼ିଶାରେ ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । ଓଡ଼ିଶା ମଧରେ ମଧ ଅଚ୍ୟୁତାନନ୍ଦ ଦାସ, ଅନନ୍ତ ଦାସ, ଜଗନ୍ନାଥ ଦାସ, ଯଶୋବନ୍ତ ଦାସ ଓ ବଳରାମ ଦାସ ବୈଷ୍ଣବ ଧର୍ମର ଧର୍ମଗ୍ରନ୍ଥ ରଚନା କରିଥିଲେ । ପ୍ରତାପରୁଦ୍ରଙ୍କ ସମୟରେ ଓଡ଼ିଶାର ଯେଉଁ ପରାଜୟ ଘଟିଲା, ତାହା ବୈଷ୍ଣବ ଧର୍ମ ପ୍ରଚାର ଯୋଗୁଁ ହୋଇଥିଲା ବୋଲି କେତେକ ମନ୍ତବ୍ୟ କରିଥାନ୍ତି । ଗୃହ ବିବାଦ ଓ ବୈଷ୍ଣବ ଧର୍ମ ପ୍ରଚାର ପାଇଁ ସୂର୍ଯ୍ୟ ବଂଶର ଶାସନ ଦୁର୍ବଳ ହୋଇ ତାର ପତନ ହେଲା । କପିଳେନ୍ଦ୍ର ଦେବଙ୍କ ରାଜତ୍ୱକାଳରେ ଶୂଦ୍ରମୁନି ଶାରଳାଦାସ ଓଡ଼ିଆରେ ମହାଭାରତ ରଚନା କରି ଥିଲେ ଓ ପରବର୍ତ୍ତୀକାଳରେ ଜଗନ୍ନାଥ ଦାସ ଓଡ଼ିଆରେ ଶ୍ରୀମଦ୍ ଭାଗବତ ରଚନା କରି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଥିଲେ ।

## ଭୋଇବଂଶ

ସୂର୍ଯ୍ୟବଂଶ ପରେ ଭୋଇବଂଶ ଓଡ଼ିଶା ଶାସନ କଲେ । ସେନାପତିଭାବେ ତେଲଙ୍ଗା ମୁକୁନ୍ଦଦେବ ସୂର୍ଯ୍ୟ ବଂଶକୁ ପରାସ୍ତ କରି ଉତ୍କଳର ଶାସକ ହେଲେ । ସେ କଟକଠାରେ ବାରବାଟି ଦୁର୍ଗ ନିର୍ମାଣ କରିଥିଲେ । ଓଡ଼ିଶାରେ ଗୃହ ବିବାଦର ସୁବିଧା ନେଇ ବଙ୍ଗର ସୁଲତାନ ଜଲ୍ଲାଲ ସାହ ଯାଜପୁର ପର୍ଯ୍ୟନ୍ତ ଓଡ଼ିଶା ଅଧିକାର କରି ସେଠାରେ ଟଙ୍କାଶାଳା ବସାଇଲେ । ଏହି ସମୟରେ ମୋଗଲ ଓ ପଠାଣଙ୍କ ମଧରେ ଯେଉଁ ସଂଘର୍ଷ ଲାଗିଲା, ସେଥିରେ ଘଟଣାକ୍ରମେ ମୁକୁନ୍ଦଦେବ ସାମିଲ ହୋଇଯାଇଥିଲେ । ମୋଗଲମାନଙ୍କୁ ମୁକୁନ୍ଦ ଦେବ ସାହାଯ୍ୟ କରିବାରୁ ସୁଲେମାନ କୌଶଳରେ ଦୁର୍ଗାଭଞ୍ଜକୁ ହତ୍ୟା କରି ଓଡ଼ିଶାର ଅଧିପତି ହେଲେ । ମୁକୁନ୍ଦଦେବ କିଛି ଦିନ ବନ୍ଦୀ ହୋଇ ରହିଲେ । ୧୫୬୮ ଖ୍ରୀ.ଅ.ରେ ଓଡ଼ିଶା ଆଫଗାନଙ୍କ ଦ୍ୱାରା ଅଧିକୃତ ହେଲା । ମୁକୁନ୍ଦ ଦେବ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ଥିଲେ । କୁଖ୍ୟାତ କଳାପାହାଡ଼ ଓଡ଼ିଶାର ହିନ୍ଦୁ ମନ୍ଦିର ଓ ଦେବାଳୟ ଧ୍ୱଂସ ବିଧ୍ୱଂସ କଲା । କଳାପାହାଡ଼ ଭୁବନେଶ୍ୱର ଓ ଯାଜପୁରରେ କେତେକ ଦେବା-ଦେବୀ ଓ ମନ୍ଦିର ଭାଙ୍ଗି ପୁରୀର ଶ୍ରୀଜଗନ୍ନାଥଙ୍କୁ ନେଇଯାଇ ଗଙ୍ଗାକୂଳରେ ପୋଡ଼ି ଦେଇଥିବା ବେଳେ ବିଶ୍ୱେଶ୍ୱର ମହାନ୍ତି ଜଗନ୍ନାଥଙ୍କ ନାଭିକମଳକୁ କୌଣସି ମତେ ନେଇ ଆସିଥିଲେ ।

## ଆଫଗାନ ଶାସନ

ଆଫଗାନର ଶାସନକର୍ତ୍ତା ସୁଲେମାନ କରାଣି ଦିଲ୍ଲୀ ବାଦଶାହାଙ୍କ ଅଧୀନତା ସ୍ୱୀକାର କରି ବଙ୍ଗ ଓ ଓଡ଼ିଶାର ଶାସକ ନିଯୁକ୍ତ ହେଲେ । ଓଡ଼ିଶା ଶାସନ ପାଇଁ ଜାହାନ ଲୋଦି ଓ କଲେଖାଁଙ୍କୁ କଟକ ଓ ପୁରୀର ଶାସନ କର୍ତ୍ତା ରୂପେ ନିଯୁକ୍ତ କଲେ । ୧୫୭୩ ଖ୍ରୀ: ରେ ସୁଲେମାନଙ୍କର ମୃତ୍ୟୁ ହେଲା । ତାଙ୍କ ପରେ ତାଙ୍କ ଭାଇ ଦାଉଦ ଓଡ଼ିଶାର ଶାସକ ହେଲେ । ହିନ୍ଦୁ ରାଜତ୍ୱରେ ଓଡ଼ିଶା ବିଭିନ୍ନ ସରକାରରେ ବିଭକ୍ତ ହୋଇ ନଥିଲା । ଆଫଗାନମାନେ ଓଡ଼ିଶାକୁ ଜଳେଶ୍ୱର, ଭଦ୍ରକ ଓ କଟକ ଏହି ତିନୋଟି ସରକାରରେ ବିଭକ୍ତ କରିଥିଲେ । ଦାଉଦ, ମନିଖାଁ ଓ ତୋଡ଼ର ମଲ୍ଲଙ୍କ ଭିତରେ ଯେଉଁ ସନ୍ଧି ହୋଇଥିଲା, ସେଥିରେ କଟକ ସରକାର ଦାଉଦଙ୍କ ଅଧୀନରେ ଏବଂ ଜଳେଶ୍ୱର ଓ ଭଦ୍ରକ ମୋଗଲଙ୍କ ଅଧୀନକୁ ଗଲା । ରାମଚନ୍ଦ୍ର ଦେବ ଓଡ଼ିଶାର ରାଜା ଥିଲେ ଓ ସେ ଆଫଗାନ ଶାସକଙ୍କ ଅଧୀନତା ସ୍ୱୀକାର କରିନଥିଲେ । ମାତ୍ର କେତେକ ଅଞ୍ଚଳକୁ ନେଇ ଶାସନ କରୁଥିଲେ । ଡ଼ମୋଇ ନାମକ ଜଣେ ବ୍ୟକ୍ତି ଖୋର୍ଦ୍ଧା ଓ ସାରଙ୍ଗଗଡ଼ ଆଦିରେ ଆଫଗାନମାନଙ୍କ ସାହାଯ୍ୟରେ ଉତ୍ତରାଧିକାରୀ ହେବାକୁ ଚେଷ୍ଟା କଲେ । ସେତେବେଳେ ଓଡ଼ିଶାର ରାଜପଦ କିଏ ପାଇବ, ତାହା ଏକ ସମସ୍ୟା ହେଲା । ୧୫୭୮ ଖ୍ରୀ.ରେ ଦାଉଦଙ୍କ ମୃତ୍ୟୁ ହେଲା । ମୋଗଲମାନେ କ୍ରମେ ସକ୍ରିୟ ହୋଇ ଓଡ଼ିଶା ଅଧିକାର କଲେ । ମୋଗଲ ବାଦସାହା ରାମଚନ୍ଦ୍ରଦେବଙ୍କୁ ଓଡ଼ିଶାର ରାଜାଭାବେ ସ୍ୱୀକୃତି ଦେବାରୁ ଜଗନ୍ନାଥଙ୍କ ସେବାପୂଜାରେ ଉନ୍ନତିହେଲା ।

## ମୋଗଲ ଶାସନ

ଆକବରଙ୍କ ମୃତ୍ୟୁ ପରେ ଓଡ଼ିଶାରେ ବିଧିବଦ୍ଧ ଭାବରେ ମୋଗଲ ଶାସନ ଚାଲିଲା । ହସିମ ଖାଁ ଓଡ଼ିଶାରୁ ସୁବାଦାର ହେଲେ । ହସିମ ଖାଁଙ୍କ ଶାସନ କାଳରେ ଓଡ଼ିଶାରେ ବହୁ ଲୁଣ୍ଠନ ଓ ଅତ୍ୟାଚାର ହେଲା । ଓଡ଼ିଶା ଇତିହାସରେ ଏହା ଏକ କଳଙ୍କ ଭାବେ ରହିଗଲା । ଓଡ଼ିଶାର ଜାୟଗିରଦାର କିଶୋର ଦାସ ନାମକ ଜଣେ ରାଜପୁତ୍ ପ୍ରଜାମାନଙ୍କ ଉପରେ ଲୁଣ୍ଠନ ଲୀଳା ଚଳାଇଲା । ସେ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଲୁଣ୍ଠନ କଲା । ତତ୍କାଳୀନ ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବ ଜଗନ୍ନାଥ ମନ୍ଦିରକୁ ରକ୍ଷା କରି ପାରିଲେ ନାହିଁ । ପୁରୁଷୋତ୍ତମଦେବ ହତାଶ ହୋଇ ସନ୍ଧି କଲେ । ସନ୍ଧି ସର୍ତ୍ତ ଅନୁଯାୟୀ ନିଜର ଗୋଟିଏ ଭଉଣୀକୁ କିଶୋରୀ ଦାସଙ୍କୁ ବିବାହ ଦେଇ ଘୋଡ଼ା, ହାତୀ ଉପହାର ଦେଇଥିଲେ ।

ଶାହାଜାହାନଙ୍କ ପର୍ଯ୍ୟନ୍ତ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ପରିଗଣିତ ହେଉଥିଲା । ଓଡ଼ିଶା ଶାସନ ପାଇଁ ଦିଲ୍ଲୀ ସମ୍ରାଟମାନେ ସୁବାଦାର ନିଯୁକ୍ତ କରୁଥିଲେ । ମାତ୍ର ଶାହାଜାହାନଙ୍କ ପୁଅ ଶାହାସୁଜା ୧୬୪୮ ଖ୍ରୀ.ରୁ ୧୬୫୮ ଖ୍ରୀ. ପର୍ଯ୍ୟନ୍ତ ବଙ୍ଗ,ବିହାର ଓ ଓଡ଼ିଶାରେ

ଶାସକ ହେବାରୁ ଓଡ଼ିଶା ବଙ୍ଗଳା ଅଧୀନରେ ରହିଲା । ଟୋଡ଼ର ମଲ୍ଲ ଏହି ସମୟରେ ଓଡ଼ିଶାରେ ବନ୍ଦୋବସ୍ତ କଲେ । ଏହି ବନ୍ଦୋବସ୍ତ ଫଳରେ ଗଜପତି ରାଜାଙ୍କ ଅଧିକାଂଶ ଅଞ୍ଚଳ ମୋଗଲ ସମ୍ରାଟଙ୍କ ଅଧୀନକୁ ଚାଲିଗଲା ।

୧୬୩୩ଖ୍ରୀ.ରେ ମୋଗଲ ସୁବାଦାର ଇଂରେଜମାନଙ୍କୁ ଓଡ଼ିଶାରେ ବାଣିଜ୍ୟ କରିବାକୁ ଅନୁମତି ଦେଲେ । ପ୍ରଥମେ କ୍ୟାପଟେନ୍ କାଟ୍ରାଇଟ୍ ୮ ଜଣ ଇଂରେଜ ବ୍ୟବସାୟୀଙ୍କ ସହ ମହାନଦୀ ମୁହାଣ ହରିଶପୁରଠାରେ ପହଞ୍ଚିଲେ ଓ ହରିଶପୁର ରାଜା ସେମାନଙ୍କୁ ସ୍ୱାଗତ୍ କଲେ । ପରେ ସେମାନେ ବାଲେଶ୍ୱରରେ ଆଉ ଏକ କାରଖାନା ବସାଇଲେ ।

## ମରହଟ୍ଟା ଶାସନ

୧୭୦୭ ଖ୍ରୀ.ଅ:ରୁ ୧୭୧୩ ପର୍ଯ୍ୟନ୍ତ ଔରଙ୍ଗଜେବଙ୍କ ମୃତ୍ୟୁ ପରେ ଓଡ଼ିଶା ବଙ୍ଗ ନାଜିମଙ୍କ ଅଧୀନରେ ରହିଲା । ମୁର୍ସିଦ କୁଲିଖାଁ ବଙ୍ଗର ନବାବ ହେଲେ । ଉତ୍ତର ଓଡ଼ିଶାରେ ଯେଉଁ ଯେଉଁ ସରକାର ମାନ ଶାହା ସୁଜାଙ୍କ ଅମଳରେ ମିଶିଥିଲା, ସେ ଦୁଇଟି ବଙ୍ଗଳା ମଧ ବଙ୍ଗ ନବାବଙ୍କ ଅଧୀନରେ ଶାସିତ ହେଲା । ମୁର୍ସିଦ କୁଲିଖାଁ ବଙ୍ଗ, ବିହାର ଓ ଓଡ଼ିଶାରେ ନୂତନ କର ବସାଇ ଲୁଣ୍ଠନ କଲେ । ତାଙ୍କ ଜ୍ୱାଁଇ ସୁଜାଉଦ୍ଦିନଙ୍କ ଶାସନ ଶାନ୍ତିପୂର୍ଣ୍ଣ ଥିଲା । ସେ ୧୭୧୨ ଖ୍ରୀ.ଅରେ କଟକଠାରେ କଦମ ରସୁଲ ନିର୍ମାଣ କରାଇଥିଲେ । ଓଡ଼ିଶାରେ ସତ୍ୟ ନାରାୟଣ ପାଲା ପ୍ରଚଳିତ କରିଥିଲେ । କବିକର୍ଣ୍ଣ ସେହି ସମୟରେ ସତ୍ୟନାରାୟଣ ପାଲାର ୧୬ ଗୋଟି ପାଲା ଓ ବନ୍ଦନା ରଚନା କରିଥିଲେ । ଶେଷରେ ଅଲିବର୍ଦ୍ଦିଖାଁ ବିଦ୍ରୋହ ଦମନ କରୁଥିବାବେଳେ ମରହଟ୍ଟାମାନେ ଓଡ଼ିଶା ଦଖଲ କରି ନେଲେ ।

ମରହଟ୍ଟାମାନେ ପ୍ରଥମେ ପଶ୍ଚିମ ବଙ୍ଗ ଅଧିକାର କରି ଶେଷରେ ଓଡ଼ିଶାରେ ପ୍ରବେଶ କଲେ । ଓଡ଼ିଶାର ତତ୍କାଳୀନ ନାଏବ ନାଜିମ ମାସୁମଖାଁ ବାରବାଟି ଦୁର୍ଗରେ ଅବସ୍ଥାନ କରୁଥିଲେ । କିନ୍ତୁ ମରହଟ୍ଟାମାନଙ୍କୁ ପ୍ରତିରୋଧ କଲେ ନାହିଁ । ମରହଟ୍ଟାମାନଙ୍କ ମଧ୍ୟରେ ଗୃହ ବିବାଦ ଦେଖା ଦେବାରୁ ଶିବାଜୀଙ୍କ ପରେ ତାଙ୍କପୁତ୍ର ନଷ୍ଟ ଚରିତ୍ର ଶମ୍ଭୁଜୀ ଉତ୍ତରାଧିକାରୀ ହେଲେ । ରଘୁଜୀ ଭୌଁସଲେ ଗୃହ ବିବାଦ କରିବାରୁ ଓଡ଼ିଶା ଶାସନରେ ଲୁଣ୍ଠନ ଓ ଅତ୍ୟାଚାର ଲାଗି ରହିଲା । ରଘୁଜୀ ଅଲ୍ଲିବର୍ଦ୍ଦିଖାଁଙ୍କ ଦ୍ୱାରା ପରାସ୍ତ ହେଲେ । କଟକ ପ୍ରଦେଶ ନାଏବ ନାଜିମ ରୂପେ ଅଲିବର୍ଦ୍ଦି ମିର ହବିବଙ୍କୁ ନିଯୁକ୍ତ କଲେ । ୧୭୫୧ ଖ୍ରୀ.ଅ.ରେ ଏକ ସନ୍ଧି ସ୍ୱାକ୍ଷରିତ ହେଲା ଓ ମିରହବିବ୍ ଓଡ଼ିଶାର ଶାସକ ହେଲେ । ୧୮୦୩ ଖ୍ରୀ.ଅ.ରେ ବାଳାଜି କନ୍ହେୟାଙ୍କ ସମୟରେ ମରହଟ୍ଟା ଶାସନ ଲୋପ ପାଇଲା ।

## ଇଂରେଜ ଶାସନ

ଇଂରେଜମାନଙ୍କୁ ଓଡ଼ିଶା ଅଧିକାର ପାଇଁ ବିଶେଷ ଅସୁବିଧା ନଥିଲା । ଇଂରେଜମାନେ ଓଡ଼ିଶାରେ ବାଣିଜ୍ୟ କରିବାର ଅଧିକାର ପାଇବା ପରେ ଓଡ଼ିଶାକୁ ଭଲ ଭାବେ ଦେଖିନେଇଥିଲେ । ସେମାନେ ଓଡ଼ିଶାକୁ ତିନି ଆଡୁ ଦଖଲ କଲେ । ଦକ୍ଷିଣରୁ ମାନ୍ଦ୍ରାଜ୍ ସୈନ୍ୟ ଅଗ୍ରସର ହୋଇ ପୁରୀ ଜିଲ୍ଲାର ମାଣିକପାଟଣାଠାରେ ପହଞ୍ଚିଲେ । ସେତେବେଳେ ଖୋର୍ଦ୍ଧାରାଜା ମୁକୁନ୍ଦ ଦେବ ଇଂରେଜମାନଙ୍କୁ ସ୍ୱାଗତ କଲେ । ସେମାନେ ଜଗନ୍ନାଥ ମନ୍ଦିର ଦଖଲ କରି କଟକକୁ ଅଗ୍ରସର ହେଲେ । ୧୮୦୫ ଅକ୍ଟୋବର ୧୪ ତାରିଖରେ ଇଂରେଜମାନେ କଟକର ବାରବାଟି ଦୁର୍ଗ ଦଖଲ କଲେ । ଅନ୍ୟ ଗୋଟିଏ ବାହିନୀ ମେଦିନୀପୁର ସୀମାରୁ ବାଲେଶ୍ୱରରେ ପହଞ୍ଚିଲେ । ସେମାନେ ପରେ କଟକ ବାହିନୀ ସହିତ ଯୋଗଦେଲେ । ପରେ ସମ୍ବଲପୁର ଓ ଅନ୍ୟାନ୍ୟ ଅଞ୍ଚଳ ଅଧିକାର କରିନେଇ ଓଡ଼ିଶାକୁ ସମ୍ପୂର୍ଣ୍ଣଭାବେ ଶାସନ କଲେ । ଇଂରେଜମାନେ କଟକରେ ଦୁଇଜଣ କମିଶନଙ୍କୁ ନିଯୁକ୍ତ କରିଥିଲେ । ସେମାନେ କିରାପତ୍ତା ପାଇଁ ଓଡ଼ିଶାର ଜମିଦାରଙ୍କଠାରୁ ବଶ୍ୟତାପତ୍ର ଲେଖାଇ ନେଲେ । ଜଗନ୍ନାଥ ମନ୍ଦିର ପରିଚାଳନା ନିଜ ହାତକୁ ନେଇ ଯିବାରୁ ମୁକୁନ୍ଦ ଦେବ ବିଦ୍ରୋହ କଲେ । ଏହି ବିଦ୍ରୋହରେ ପାଇକମାନେ ଗୋଟିଏ ଗାଁ ପୋଡ଼ିଦେଲେ । ଇଂରେଜମାନେ ରାଜା ଆଶ୍ରୟ ନେଇଥିବା ଖୋର୍ଦ୍ଧା ଦୁର୍ଗକୁ ଅଧିକାର କରି ନେଲେ ଓ କିଛି ଦିନ ପରେ ମୁକୁନ୍ଦ ଦେବ ଆତ୍ମ ସମର୍ପଣ କଲେ ।

## ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହ

ଓଡ଼ିଶାରେ ବାରମ୍ବାର ବନ୍ଦୋବସ୍ତ କରାଇ ଇଂରେଜମାନେ କରବୃଦ୍ଧି କରିବାରୁ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ପଡ଼ିଲା । ରାଜସ୍ୱ ଦେଇ ନପାରିବାରୁ ଜମିଜମା ନିଲାମ ହେଲା । ଜମିଦାରୀଗୁଡ଼ିକ କଲିକତା କେନ୍ଦ୍ର ଅଫିସରେ ନିଲାମ ହେଉଥିବାରୁ ଜମିଦାରମାନେ ଠିକ ସମୟରେ ସମ୍ବାଦ ପାଇପାରୁ ନଥିଲେ । ଫଳରେ ଜମିଦାରୀ ନିଲାମ ହୋଇଯାଉଥିଲା । କଲିକତାର ବଙ୍ଗାଳିମାନେ କମ ପଇସାରେ ଜମିଦାରୀ ନିଲାମ ଧରି ନେଉଥିଲେ । ଇଂରେଜମାନେ ଲଣ୍ଡନ ତିଆରି ଜିନିଷଗୁଡ଼ିକ ବିକ୍ରି କରି ଓଡ଼ିଶାରେ କୁଟୀର ଶିଳ୍ପକୁ ଧ୍ୱଂସ କରି ଦେଲେ । ଓଡ଼ିଶାର ବସ୍ତ୍ର ଶିଳ୍ପର ଅବନତି ହେଲା । ଲୁଣମରା ପାଇଁ ବିରୋଧ ହେବାରୁ ଓଡ଼ିଶାରେ କ୍ରମେ ବିଦ୍ରୋହ ମୁଣ୍ଡ ଟେକିଲା । ସର୍ବୋପରି ଗଜପତି ରାଜା ମୁକୁନ୍ଦ ଦେବଙ୍କୁ ଅପମାନଜନକ ବ୍ୟବହାର ପାଇଁ ଜନସାଧାରଣ ଉତ୍କ୍ଷିପ୍ତ ହୋଇଗଲେ । ୧୮୦୪ଖ୍ରୀରେ ଇଂରେଜମାନେ ମୁକୁନ୍ଦ ଦେବଙ୍କୁ ବନ୍ଦୀ କରି ନେଲେ । ୧୮୦୭ ଖ୍ରୀ.ରେ ତାଙ୍କୁ ଛାଡ଼ି ଦିଆଯାଇ ତାଙ୍କ ଗଡ଼ଜାତକୁ ଛଡ଼ାଇ ନିଆଗଲା । ତାଙ୍କୁ ମାସିକ ଭତ୍ତା ଦିଆଗଲା । ଏହାପରେ ପାଇକ ବିଦ୍ରୋହ ପ୍ରବଳ ଭାବେ ସଂଘଟିତ ହେଲା ।

ଘୁମୁସରର କନ୍ଧ ବିଦ୍ରୋହ ଓଡ଼ିଶାର ପାଇକ ବିଦ୍ରୋହର ମୂଳଦୁଆ । ପାଇକମାନେ ଓଡ଼ିଶାର ସ୍ଥାୟୀ ସୈନ୍ୟବାହିନୀ ଥିଲେ । ସେମାନଙ୍କର ଜାଗିରି ଜମିକୁ ଇଂରେଜମାନେ ନେଇଯିବାରୁ ପାଇକମାନେ ବାଣ୍ଟର ଭିକାରୀ ହୋଇଗଲେ । ପ୍ରଥମେ ଘୁମୁସର ପାଇକମାନେ ଖୋର୍ଦ୍ଧା ପାଇକମାନଙ୍କ ସହିତ ମିଶି ବିଦ୍ରୋହ କଲେ । ପରେ ସାରା ଓଡ଼ିଶା ତଥା ଭାରତରେ ବିଦ୍ରୋହର ଅଗ୍ନି ଜଳିଲା । କନିକା ଓ କୁଜଙ୍ଗ ରାଜା ବିଦ୍ରୋହରେ ସାହାଯ୍ୟ କରିଥିଲେ । ବକ୍ସି ଜଗବନ୍ଧୁ ଓ ମୁକୁନ୍ଦ ଦେବ ଏହି ବିଦ୍ରୋହକୁ ବାଟ ଦେଖାଇ ଥିଲେ । ୧୮୩୨ ଖ୍ରୀ.ଅରେ ସିଂହଭୂମି ରାଜାଙ୍କ ପ୍ରେରଣାରେ କୋହ୍ଲମାନେ ବିଦ୍ରୋହ କଲେ । ୧୮୪୭ ଖ୍ରୀ.ଅ.ରେ ଅନୁଗୁଳରାଜା ବିଦ୍ରୋହ କରିବାରୁ ତାଙ୍କ ରାଜ୍ୟକୁ ଇଂରେଜ ସରକାର ଖାସ୍ ଦଖଲକୁ ନେଇ ଗଲେ । ୧୮୫୭ ଖ୍ରୀ:ରେ ସମଗ୍ର ଭାରତରେ ସିପାହୀ ବିଦ୍ରୋହ ବ୍ୟାପିଗଲା । ଏହା ଓଡ଼ିଶାର ବିଦ୍ରୋହକୁ ଆହୁରି ତ୍ୱରାନ୍ୱିତ କରି ଚଳଚଞ୍ଚଳ କଲା ।

ସମ୍ବଲପୁର ରାଜା ଅପୁତ୍ରିକ ଥିବାରୁ ଇଂରେଜମାନେ ରାଜ୍ୟକୁ ଖାସ କରି ଦେଲେ । ଏଥିପାଇଁ ସୁରେନ୍ଦ୍ର ସାଏ ବିଦ୍ରୋହ କରି ଇଂରେଜଙ୍କ ଦ୍ୱାରା ବନ୍ଦୀ ହେଲେ । ସିପାହୀମାନେ ହାଜାରିବାଗ ଜେଲକୁ ଭାଙ୍ଗି ଦଖଲ କରି ନେଲେ ଓ ସୁରେନ୍ଦ୍ର ସାଏ ଜେଲରୁ ମୁକ୍ତି ପାଇଲେ । ପୁନର୍ବାର ସିଂହାସନ ଦାବୀ କରି ବିଦ୍ରୋହ କରିବାରୁ ଇଂରେଜମାନେ ସୁରେନ୍ଦ୍ରଙ୍କୁ ବନ୍ଦୀ କଲେ । ଜେଲ ମଧ୍ୟରେ ସେ ପ୍ରାଣ ହରାଇଲେ ।

**ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ**-ପୂର୍ବରୁ ଓଡ଼ିଶା ବଙ୍ଗଳା ଅଧୀନରେ ଶାସିତ ଥିଲା । ଗଡ଼ଜାତଗୁଡ଼ିକ ଜଣେ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ଏଣୁ ଏହାକୁ ଛତିଶିଗଡ଼ଜାତ କୁହାଯାଉଥିଲା । କେବଳ ଉପକୂଳବର୍ତ୍ତୀ ଜିଲ୍ଲା କଟକ, ପୁରୀ ଓ ବାଲେଶ୍ୱର ସ୍ୱତନ୍ତ୍ରଭାବେ କଟକରେ ଅବସ୍ଥାପିତ କିଲଟର, ମାଜିଷ୍ଟ୍ରେଟ ଓ ଜଜଙ୍କ ଅଧୀନରେ ରଖାଯାଉଥିଲା । ଏହି ସବୁ ଗଡ଼ଜାତଗୁଡ଼ିକ ମିଶାଇ ଦେବା ପାଇଁ ଓ ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ମଧୁସୂଦନଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, କନିକା ରାଜା ଓ ପାରଳାଖେମୁଣ୍ଡି ରାଜା ସାହେବ ଅଗ୍ରଣୀଭାବେ ଆନ୍ଦୋଳନ ଚଳାଇଲେ । ବ୍ରହ୍ମପୁର ଓ କଟକଠାରେ ଉତ୍କଳ ସମ୍ମିଳନୀ ହେଲା । ତତ୍‌କାଳୀନ ମୟୂରଭଞ୍ଜ ରାଜା ରାମଚନ୍ଦ୍ରଭଞ୍ଜ ଦେଓ ସମ୍ମିଳନୀର ସଭାପତି ହେଲେ । ୧୯୧୨ଖ୍ରୀ.ରେ ଓଡ଼ିଶାକୁ ବଙ୍ଗଳାରୁ ଅଲଗା କରି ବିହାର ସହିତ ବ୍ରିଟିଶ ସରକାର ମିଶାଇ ଦେଲେ ।୧୯୨୦ ଖ୍ରୀ. ଚକ୍ରଧରପୁରରେ ଉତ୍କଳ ସମ୍ମିଳନୀରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରି ଓଡ଼ିଶାକୁ ସ୍ୱତନ୍ତ୍ର କରିବାକୁ ପ୍ରସ୍ତାବ ଗୃହୀତ ହେଲା । ଓଡ଼ିଶାର କଂଗ୍ରେସ ତଥା ବେକଂଗ୍ରେସ ଲୋକଙ୍କ ସହିତ ଜନସେବୀ ଗୌରୀ ଶଙ୍କର ରାୟ, ରାମଶଙ୍କର ରାୟ, ବିଚ୍ଛନ୍ଦ ପଟ୍ଟନାୟକ, ବ୍ରଜବନ୍ଧୁ ଦାସ, ବ୍ରଜସୁନ୍ଦର ଦାସ, ଗଞ୍ଜାମର ହରିହରପଣ୍ଡା ଓ ପାରଳାଖେମୁଣ୍ଡି ରାଜା ସାହେବ, କନିକାରାଜା, ଶ୍ୟାମସୁନ୍ଦର ରାଜଗୁରୁ, ପଣ୍ଡିତ ନୀଳକଣ୍ଠଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଯଦୁମଣି ମଙ୍ଗରାଜ, ହରିହର ମିଶ୍ର, ବିଶ୍ୱନାଥଦାସ ଓ ରାଧାନାଥ ରଥ ପ୍ରମୁଖ ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ସକ୍ରିୟ ହୋଇ ଉଠିଲେ ।

ଓଡ଼ିଶାବାସୀଙ୍କ ସଙ୍ଗଠିତ ଉଦ୍ୟମ ଏବଂ ଗୋଲଟେବୁଲ ବୈଠକରେ ଦୃଢ଼ଦାବୀ ଫଳରେ ବ୍ରିଟିଶ ସରକାର ୧୮୩୧ ଖ୍ରୀ.ରେ ଓଡ଼ନେଲ କମିଟି ନିଯୁକ୍ତ କଲେ । ଓଡ଼ନେଲ କମିଟି ସୁପାରିଶ ମତେ ଓଡ଼ିଶା ୧୯୩୬ ମସିହା ଏପ୍ରିଲ ପହିଲାରେ ଏକ ସ୍ୱତନ୍ତ୍ର ପ୍ରଦେଶଭାବେ ସ୍ୱୀକୃତି ଲାଭ କଲା ।ଓଡ଼ିଶାରେ ଜଣେ ସ୍ୱତନ୍ତ୍ର ଲାଟ ନିଯୁକ୍ତ ହେଲେ । ସାରଜନ୍ ହବାକ୍ ଓଡ଼ିଶାର ପ୍ରଥମ ଲାଟ୍ ଭାବେ କାର୍ଯ୍ୟଭାର ଗ୍ରହଣ କଲେ ।

୧୯୩୫ ଖ୍ରୀ.ଭାରତ ଶାସନ ଆଇନ ଅନୁଯାୟୀ ସାଧାରଣ ନିର୍ବାଚନ ହେଲା । ଲାଟ ସାହେବ ହାତରେ କ୍ଷମତା ରହି ମନ୍ତ୍ରିମଣ୍ଡଳ ଗଢ଼ାଗଲା । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଦେବଙ୍କ ନେତୃତ୍ୱରେ ଏକ ଅସ୍ଥାୟୀ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଲାଟସାହେବଙ୍କର କ୍ଷମତା ସଙ୍କୁଚିତ କରିବାକୁ ବ୍ରିଟିଶ ସରକାର ପ୍ରତିଶ୍ରୁତି ଦେବାରୁ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଓଡ଼ିଶାର ପ୍ରଥମ କଂଗ୍ରେସ ପ୍ରଧାନମନ୍ତ୍ରୀଭାବେ ବିଶ୍ୱନାଥ ଦାସଙ୍କୁ ନିର୍ବାଚିତ କରାଗଲା । ମନ୍ତ୍ରିମଣ୍ଡଳରେ ନିତ୍ୟାନନ୍ଦ କାନୁନଗୋ, ବୋଧିରାମ ଦୁବେ ମନ୍ତ୍ରୀଭାବେ, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ ଓ ଜଗନ୍ନାଥ ମିଶ୍ର ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ରୂପେ କାର୍ଯ୍ୟ କଲେ । ୧୯୩୯ ଖ୍ରୀ. ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇଦେଲେ । ଓଡ଼ିଶାର ଲାଟ ୯୩ ଧାରା ଜାରିକରି ଶାସନ ଭାର ନିଜ ହାତକୁ ନେଇଗଲେ । ୧୯୪୧ ଖ୍ରୀ.ରେ ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା । ପଣ୍ଡିତ ଗୋଦାବରୀଶ ମିଶ୍ର, ମୌଲବୀ ଶୋଭନ ଖାଁ ମନ୍ତ୍ରୀ ଓ ପ୍ୟାରୀଶଙ୍କର ରାୟ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ହେଲେ । ୧୯୪୨ ଖ୍ରୀ ଅଗଷ୍ଟ ବିପ୍ଳବରେ ଆନ୍ଦୋଳନ କରି କଂଗ୍ରେସର ବହୁ ସଭ୍ୟ କାରାବରଣ କଲେ । ୧୯୪୪ ଖ୍ରୀ.ରେ ମିଳିତ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା । ପୁଣି ଶାସନକ୍ଷମତା ଲାଟଙ୍କ ହାତକୁ ଗଲା । ଭାରତୀୟମାନଙ୍କ ହାତକୁ ଶାସନ କ୍ଷମତା ଦେବା ସମ୍ବନ୍ଧରେ ବ୍ରିଟିଶ ସରକାରଙ୍କ ସଙ୍ଗେ କଂଗ୍ରେସ ତଥା ଅନ୍ୟାନ୍ୟ ରାଜନୈତିକ ଦଳ ଓ ମହାତ୍ମାଗାନ୍ଧୀଙ୍କ ଆଲୋଚନା ଚାଲି ସଫଳ ରୂପ ନେଲା । ୧୯୪୬ ରେ ଓଡ଼ିଶା ଆସେମ୍ବ୍ଲି ପାଇଁ ନିର୍ବାଚନ ହେଲା । ହରେକୃଷ୍ଣ ମହତାବ ଦ୍ୱିତୀୟ କଂଗ୍ରେସ ମନ୍ତ୍ରିମଣ୍ଡଳର ପ୍ରଧାନମନ୍ତ୍ରୀ ହେଲେ । ଏହି ମନ୍ତ୍ରିମଣ୍ଡଳରେ ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଲିଙ୍ଗରାଜ ମିଶ୍ର ଓ ରାଧାକୃଷ୍ଣ ବିଶ୍ୱାସ ରାଏ ଏବଂ ପରେ ରାଜକୃଷ୍ଣ ବୋଷ ଯୋଗ ଦେଲେ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତୀୟଙ୍କ ହାତକୁ ପୂର୍ଣ୍ଣ ଶାସନ କ୍ଷମତା ଆସିଲା ଓ ଭାରତ ବିଦେଶୀ କବଳରୁ ମୁକ୍ତି ଲାଭ କରି ତାର ସ୍ୱାଧୀନ ପତାକା ଉଡ଼ାଇଲା ।

**ସହାୟକ ଗ୍ରନ୍ଥସୂଚୀ**


୧-ଓଡ଼ିଶା ଇତିହାସ-ଡ଼ଃ ହରେକୃଷ୍ଣ ମହତାବ
୨-ଦଶବର୍ଷରେ ଓଡ଼ିଶା-୰ଜଗବନ୍ଧୁ ସିଂହ
୩-ପ୍ରାଚୀନ ଉତ୍କଳ-୰ ପଣ୍ଡିତ କୃପାସିନ୍ଧୁ ମିଶ୍ର
୪- ଅଳ୍ପ ଦିନର କଳିଙ୍ଗ ଇତିହାସ -ମନ୍ମଥନାଥ ଦାସ
୫-ଓଡ଼ିଆ ଭାଷାର ଇତିହାସ-ପଣ୍ଡିତ ବିନାୟକ ମିଶ୍ର
୬-ଓଡ଼ିଆ ସାହିତ୍ୟ ଓ ସମାଜ-ଡ଼ଃ ବି.ଏନ୍.ସାହୁ
୭-ଲୋକ ସମ୍ପର୍କ ବିଭାଗ ପ୍ରକାଶିତ ଓଡ଼ିଶା ୧୯୪୮-୪୯/ ୧୯୫୦-୫୧ ।



ସମ୍ପାଦକ, 'ମହାବୀର ହନୁମାନଦର୍ଶନ'
ସା : ଜଗିମାବାଦ, ପୋ : ଜଟଣିଆ
ଭା : ଦେବୋତ୍ତାଳ-୭୫୫୦୦୨
ଜି : ଯାଜପୁର


• • •

# ଖୋର୍ଦ୍ଧା ରାଜବଂଶର ଐତିହାସିକ ଗଡ଼

● ଅଧ୍ୟାପକ ଡକ୍ଟର ଜନ୍ମେଜୟ ଚୌଧୁରୀ

ଖୋର୍ଦ୍ଧା ଶବ୍ଦ ସଂସ୍କୃତ କ୍ଷୁରଧାର ଶବ୍ଦରୁ ଆନୀତ । ଏହି ଖୋର୍ଦ୍ଧା ଏକଦା ଓଡ଼ିଶା ରାଜ୍ୟକୁ ବୁଝାଉଥିଲା । ଖୋର୍ଦ୍ଧା ଇତିହାସ ମୁଖ୍ୟତଃ ଖୋର୍ଦ୍ଧା ଭୋଇ ରାଜବଂଶର ରାଜତ୍ୱ କାଳ । ଯେଉଁ ବୀର ପୁରୁଷମାନଙ୍କର ଗୌରବ ଗାଥାକୁ ନେଇ ଖୋର୍ଦ୍ଧା ଇତିହାସ ସମୃଦ୍ଧ, ସେମାନଙ୍କ ମଧ୍ୟରେ ଭୋଇ ରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବ, ସେହି ବଂଶର ଦ୍ୱାଦଶ ରାଜା ମୁକୁନ୍ଦ ଦେବଙ୍କ ସେନାପତି ବକ୍ସି ଜଗବନ୍ଧୁ, ଜୟୀ ରାଜଗୁରୁ ଏବଂ ଦେୱାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କ ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ସୂର୍ଯ୍ୟବଂଶ ପରେ ୧୫୪୦ ଖ୍ରୀ.ଅ.ରୁ ୧୫୬୦ ଖ୍ରୀ.ଅ. ପର୍ଯ୍ୟନ୍ତ ଭୋଇ ବଂଶ ଏବଂ ୧୫୬୦ ରୁ ୧୫୬୮ ଖ୍ରୀ.ଅ. ପର୍ଯ୍ୟନ୍ତ ଚାଲୁକ୍ୟ (ତେଲେଙ୍ଗା) ମୁକୁନ୍ଦ ଦେବ କଟକର ବାରବାଟୀ ଦୁର୍ଗ ଉପରେ ଓଡ଼ିଶାର ସ୍ୱାଧୀନ ଧ୍ୱଜା ଉଡ଼ାଇଥିଲେ । ମୁକୁନ୍ଦ ଦେବ ଜଣେ ଅତ୍ୟନ୍ତ ପରାକ୍ରମଶାଳୀ ରାଜା ଓ ବିଚକ୍ଷଣ ଶାସକ ଭାବରେ ମାତ୍ର ୮ ବର୍ଷ ମଧ୍ୟରେ ଓଡ଼ିଶାର ଗୌରବ ବୃଦ୍ଧି କରିଥିଲେ । କିନ୍ତୁ ୧୫୬୮ ଖ୍ରୀ.ଅ.ରେ ଓଡ଼ିଶାର ଏହି ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁପରେ ଓଡ଼ିଶାରେ ଅରାଜକତା ଦେଖାଦେଲା । ଏହାର ସୁଯୋଗ ନେଇ କଳାପାହାଡ଼ ଓଡ଼ିଶାର ବହୁ ହିନ୍ଦୁ ମନ୍ଦିର ସମେତ ବହୁ ଦେବ ବିଗ୍ରହ ଉପରେ ବାରମ୍ବାର ଆକ୍ରମଣ କରି ଏକ ଆତଙ୍କ ସୃଷ୍ଟି କଲା । ଏହିପରି ବର୍ବରୋଚିତ ମୁହୂର୍ତ୍ତରେ ଓଡ଼ିଶାର ଆରାଧ୍ୟ ଦେବତା ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ କଳାପାହାଡ଼ କବଳରୁ ରକ୍ଷା କରିବା ପାଇଁ ପଣ୍ଡାମାନେ ଜଗନ୍ନାଥଙ୍କୁ ଚିଲିକା ମୁହାଣ ପାରି କରି ଛପଲିହାଡୀ ପଡ଼ାରେ ଗୁପ୍ତରେ ରଖାଇ ଥିଲେ । ମାତ୍ର ଶ୍ରୀଜଗନ୍ନାଥ ମନ୍ଦିରର ଜଣେ ରାଜକର୍ମଚାରୀ ତଥା କୋକଲ ଗଡ଼ର ନାୟକ ଦାମପାତ୍ର କଳାପାହାଡ଼କୁ ପଣ୍ଡାମାନେ ଲୁଚାଇ ରଖିଥିବା ଶ୍ରୀଜଗନ୍ନାଥଙ୍କ ଗୁପ୍ତ ସ୍ଥାନର ସନ୍ଧାନ ଦେବାରୁ କଳାପାହାଡ଼ ଉକ୍ତ ଗୁପ୍ତ ସ୍ଥାନରେ ପହଞ୍ଚି ଶ୍ରୀଜଗନ୍ନାଥଙ୍କ ବିଗ୍ରହକୁ ଗଙ୍ଗାକୂଳକୁ ନେଇ ସେଠାରେ ପୋଡ଼ି ଦେଇଥିଲା ଓ ଏହାର ବ୍ରହ୍ମାଂଶକୁ ନଦୀରେ ଫିଙ୍ଗି ଦେଇଥିଲା । ଫଳରେ ଓଡ଼ିଶାର ସାଧାରଣ ଜନତା ନିଜକୁ ଅସହାୟ ମଣିବା ସହ ଓଡ଼ିଶାର ସାଧାରଣ ଜୀବନ ବିପନ୍ନ ହେଲା । ଦେବାଶୀର୍ବାଦ ସ୍ୱରୂପ ଏହି ଘୋର ଦୁର୍ଦ୍ଦିନ ମୁହୂର୍ତ୍ତରେ ସେହି ଦାରୁଣ ଜାତୀୟ ସଙ୍କଟର ତ୍ରାଣକର୍ତ୍ତା ଭାବେ ଖୋର୍ଦ୍ଧା ମାଟି ଉପରେ ଆବିର୍ଭୂତ ହୋଇଥିଲେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ଦ୍ୱାରା ବନ୍ଦୀ ହୋଇ ବନ୍ଦୀଶାଳାରେ ମୃତ୍ୟୁ ବରଣ କରିଥିବା ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର ତଥା ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରତିଷ୍ଠାତା ରାମଚନ୍ଦ୍ର ଦେବ (ଦମେଇ ରାଉତରା) ସେସମୟରେ ସେ ଗଞ୍ଜାମ ଜଙ୍ଗଲରେ ଆତ୍ମଗୋପନ କରିଥିଲେ । ରାମଚନ୍ଦ୍ର ଦେବ ଖୋର୍ଦ୍ଧାର ପାଇକବୀରମାନଙ୍କର ସହାୟତାରେ ସ୍ୱତନ୍ତ୍ର ଖୋର୍ଦ୍ଧା ରାଜ୍ୟ ଗଠନ କରି ବରୁଣେଇ ପାହାଡ଼ ଘାଟୀ ତଳେ ନିଜର ରାଜଧାନୀ ପ୍ରତିଷ୍ଠା କରିଥିଲେ । ସେଥିପାଇଁ ଗଜପତି ରାମଚନ୍ଦ୍ର ଦେବ ଖୋର୍ଦ୍ଧା ରାଜବଂଶର ପ୍ରତିଷ୍ଠାତା ଏବଂ ସ୍ୱତନ୍ତ୍ର ଖୋର୍ଦ୍ଧା ଇତିହାସର ସୃଷ୍ଟିକର୍ତ୍ତା ଭାବେ ଓଡ଼ିଆ ଜାତିର ସ୍ମରଣୀୟ । ୧୫୭୨ ଖ୍ରୀ.ଅ.ରୁ ୧୮୦୩ ଏହି ଦୀର୍ଘ ୨୩୧ ବର୍ଷ ଧରି ଖୋର୍ଦ୍ଧା ଭୋଇ ରାଜବଂଶର ଶାସନକାଳ ମଧ୍ୟରେ ଓଡ଼ିଶା ୧୫୬୮ ରୁ ୧୫୯୨ ଖ୍ରୀ.ଅ. ପର୍ଯ୍ୟନ୍ତ ଆଫଗାନ, ୧୫୯୨ ରୁ ୧୭୫୧ ଖ୍ରୀ.ଅ. ପର୍ଯ୍ୟନ୍ତ ମୋଗଲ ଓ ୧୭୫୧ ରୁ ୧୮୦୩ ଖ୍ରୀ.ଅ. ପର୍ଯ୍ୟନ୍ତ ମରହଟ୍ଟା ଶାସନ ଅଧୀନରେ ଥିଲେ ହେଁ, ୧୫୯୨ରେ ମୋଗଲ ସମ୍ରାଟ ଆକବରଙ୍କ ନିର୍ଦ୍ଦେଶରେ ତାଙ୍କ ସେନାପତି ମାନସିଂହ ସହିତ ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବଙ୍କ ମୈତ୍ରୀ ଚୁକ୍ତି ମତେ ଖୋର୍ଦ୍ଧା ରାଜ୍ୟରେ ମୁଖ୍ୟ ୨୧ଟି ଗଡ଼ ସମେତ ବାଙ୍କୀ, ଡମପଡ଼ା, ଅଠି, କାଲୁପଡ଼ା, ବଡ଼ମ୍ବା, ତିଗିରିଆ, ନରସିଂହପୁର, ଅନୁଗୁଳ, ତାଳଚେର, ବୈଦେଶ୍ୱର, ଢେଙ୍କାନାଳ, ଆଠଗଡ଼, ସଗଣା, ଅଳାରୀ, ବଜ୍ରକୋଟ, ଅଚଳକୋଟ, ନୟାଗଡ଼, ଖଣ୍ଡପଡ଼ା, ରଣପୁର, ଦଶପଲ୍ଲା, ବାଣପୁର, ଘୁମୁସର, ଖଲ୍ଲିକୋଟ, କୋଦଳା-ଆଠଗଡ଼, ଚିକିଟି, ପାରୁଲ, ମହୁରି, ସେରଗଡ଼ ଓ ଚିକାଟି ରଘୁନାଥପୁର ଆଦି ୨୯ଟି ଜମିଦାରୀ ଖୋର୍ଦ୍ଧା ରାଜାଙ୍କ ଅଧୀନରେ ଥିଲା । (ଓଡ଼ିଶା କମିଶନରଙ୍କ ସେକ୍ରେଟାରୀ ଷ୍ଟର୍ଲିଙ୍ଗ ସାହେବ ୧୮୨୨ ଖ୍ରୀ.ଅ.ରେ କଟକରେ ଥିବା ପାର୍ସି କାଗଜପତ୍ରରୁ ସଂଗ୍ରହ କରି ସ୍ୱପୁସ୍ତକରେ ଲିପିବଦ୍ଧ କରିଛନ୍ତି ଯେ ଖୋରଧା ରାଜ୍ୟରେ ୭୩ଟି ଗଡ଼ ଥିଲା ଓ ଏହା ବ୍ୟତୀତ ଖୋରଧା ରାଜାଙ୍କ ଅଧୀନସ୍ଥ ୩୧ଟି ଜମିଦାରୀରେ ୧୨୯ଟି କିଲା ବା ଗଡ଼ ଥିଲା) । ଏହି ୨୯ଟି ଜମିଦାରୀରେ ହିନ୍ଦୁ ସରଦାରମାନେ ଶାସନ କରୁଥିଲେ । ସେମାନଙ୍କ ଅଧୀନରେ ମଧ୍ୟ ୧୨୯ଟି ଗଡ଼ ଥିଲା ।

**ଖୋର୍ଦ୍ଧା:** ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ଦ୍ୱାରା ବନ୍ଦୀ ହୋଇ ବନ୍ଦୀଶାଳାରେ ମୃତ୍ୟୁବରଣ କରିଥିବା ଜନାର୍ଦ୍ଦନ ବିଦ୍ୟାଧରଙ୍କ ଗଞ୍ଜାମ ଜଙ୍ଗଲରେ ଆତ୍ମଗୋପନ କରିଥିବା ପୁତ୍ର ରାମଚନ୍ଦ୍ର ଦେବ (ଦମେଇ ରାଉତରା) ମୁକୁନ୍ଦ ଦେବଙ୍କ ମୃତ୍ୟୁପରେ ଖୋର୍ଦ୍ଧାର ପାଇକ ସର୍ଦ୍ଦାରମାନଙ୍କ ସହାୟତାରେ ୧୫୭୨ ଖ୍ରୀ.ଅ.ରେ ଓଡ଼ିଶାର ରାଜଗାଦି ଅଧିକାର କଲେ ଓ ଖୋର୍ଦ୍ଧାରେ ନିଜର ରାଜଧାନୀ ପ୍ରତିଷ୍ଠା କରି ତାହାର ନାମ ଦେଲେ ଜଗନ୍ନାଥପୁର କଟକ । ଉଭୟ 'ମାଦଳା ପାଞ୍ଜି' ଓ 'ଚକଡ଼ା ପୋଥି'ରୁ ଜଣାଯାଏ ଯେ, ରାମଚନ୍ଦ୍ର ଦେବ ନବ ପ୍ରତିଷ୍ଠିତ ରାଜ୍ୟର ରାଜଧାନୀ ସ୍ୱରୂପ କଟକ ଓ ପୁରୀ ଅଞ୍ଚଳ ମଧ୍ୟରେ ବାରୁଣୀ ବା ବରୁଣେଇ ପର୍ବତର ପାଦଦେଶରେ ଖୋରାପଲା ନିକଟସ୍ଥ ଖୋରଧା ନାମକ ପଲ୍ଲୀ ଗ୍ରାମରେ ଏକ ସୁଦୃଢ଼ ଦୁର୍ଗ ପ୍ରତିଷ୍ଠା କରିଥିଲେ । କାରଣ ଅନଙ୍ଗଭୀମ ଦେବଙ୍କ ସମୟରୁ ମୁକୁନ୍ଦ ଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଓଡ଼ିଶାର ରାଜଧାନୀ ଥିବା କଟକର ବାରବାଟୀ ଦୁର୍ଗ ମୁସଲମାନ ରାଜତ୍ୱ ଆରମ୍ଭରୁ ସେମାନଙ୍କ ରାଜଧାନୀରେ ପରିଣତ ହେଲା । ତେଣୁ ରାମଚନ୍ଦ୍ର ଦେବ ବାରବାଟୀ ଉଦ୍ଧାରରେ ନିଜର ଶକ୍ତି ଓ ସମୟ ବ୍ୟୟ ନକରି ପୁରୀ ଜିଲ୍ଲାର ଉତ୍ତମ ବରୁଣେଇ ପର୍ବତର ପାଦ ଦେଶରେ ଘନ ଅରଣ୍ୟାନୀ ପରିବେଷ୍ଟିତ ଓ

ଚତୁର୍ଦ୍ଦିଗରେ କ୍ଷୁଦ୍ର କ୍ଷୁଦ୍ର ଦୁର୍ଗ ଦ୍ୱାରା ସୁରକ୍ଷିତ ଖୁରୁଧା ଦୁର୍ଗ ପ୍ରତିଷ୍ଠା କରି ନିଜର ରଣକୌଶଳ ଓ ଦୂରଦୃଷ୍ଟିର ପରିଚୟ ଦେଇଥିଲେ । ରାମଚନ୍ଦ୍ର ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ସୁଦୃଢ଼ ଆୟତାକୃତି ଗଡ଼ର ଭିତର ଓ ବାହାର ଦୁଇ ବିରାଟ ପ୍ରାଚୀର ସମେତ ଗଭୀର ଗଡ଼ଖାଇ ଓ ଗଡ଼ର ଚତୁଃଦ୍ୱାର ଆଦି ଥିଲା । ଫଳରେ ହଠାତ୍ ଶତ୍ରୁ ଆକ୍ରମଣକୁ ପ୍ରତିରୋଧ କରାଯାଇ ପାରୁଥିଲା । ପୂର୍ବଦ୍ୱାର ହିଁ ଥିଲା ମୁଖ୍ୟ ବା ଖୋଲାଦ୍ୱାର, ଯାହା ପ୍ରବେଶ ପାଇଁ କେବଳ ଉଦ୍ଦିଷ୍ଟ ଥିଲା । ଏହି ମୁଖ୍ୟ ଦ୍ୱାର ସହିତ ସଂଯୁକ୍ତ ଥିଲା ଦୁଇ ପ୍ରହରୀ କୋଠରୀ । ପୂର୍ବ ବା ମୁଖ୍ୟ ଦ୍ୱାର ବରୁଣେଇ ପର୍ବତର ପୂର୍ବ ପାର୍ଶ୍ୱରେ ଅବସ୍ଥିତ ଥିଲା ଓ ଏହାକୁ ଲାଗି କରି ଥିବା ଆୟତାକୃତି କୋଠରୀଗୁଡ଼ିକ ଅସ୍ତ୍ର ସରଞ୍ଜାମ ତିଆରି ଓ ରହିବା ପାଇଁ ନିର୍ମିତ ହୋଇଥିଲା । ଏହି ଦୁର୍ଗର ସୁନ୍ଦର କେନାଲ ପ୍ରଣାଳୀ ସହ ଦୁର୍ଗ ମଧ୍ୟରେ ଏକ ଚତୁଃପାର୍ଶ୍ୱ ପାହାଚ ବନ୍ଧା ପୁଷ୍କରିଣୀ ଥିଲା । ତାର ନାମ ରାଣୀ ପୁଷ୍କରିଣୀ । ଦୁର୍ଗରେ ଥିବା ଠାକୁରାଣୀ ହରେଶ୍ୱରୀଙ୍କୁ ରାଜା ନିଜେ ପୂଜା ଅର୍ଚ୍ଚନା କରୁଥିଲେ । ପୂର୍ବ ଦ୍ୱାର ପରେ ଏକ ଶୈବ ମନ୍ଦିର ଅବସ୍ଥିତ ଥିଲା ଓ ଏହାର ପାର୍ଶ୍ୱରେ ' ଧର୍ମସାଗର ନାମକ ଏକ ପୁଷ୍କରିଣୀ ମଧ୍ୟ ଥିଲା । ଏହା ବର୍ତ୍ତମାନର ଖୁଦୁପୁର ଗ୍ରାମର ଶେଷରେ ଅବସ୍ଥିତ । ଏହି ଗଡ଼ର ଧ୍ୱଂସାବଶେଷ ଏବେ ବି ପରିଲକ୍ଷିତ ହୁଏ । ଏଠାରେ ବ୍ୟବହୃତ ହୋଇଥିବା ଲୌହସମ୍ଭାର ନିକଟସ୍ଥ ସିପାଲିଆ ଗ୍ରାମର ବିଭିନ୍ନ ଗୃହରେ ବ୍ୟବହୃତ ହୋଇଥିବାର ଦେଖାଯାଏ ।

୧୮୦୪ ମସିହା ଡିସେମ୍ବର ମାସ ଶେଷ ସପ୍ତାହରୁ ବ୍ରିଟିଶ ବାହିନୀ ପକ୍ଷରୁ ଘନ ଘନ ତୋପ କମାଣର ପ୍ରଚଣ୍ଡ ଆକ୍ରମଣକୁ ଦୀର୍ଘ ତିନି ସପ୍ତାହ ଧରି ପ୍ରତିହତ କରି ଆସିଥିବା ଦୁର୍ଦ୍ଧର୍ଷ ବୀର ଓଡ଼ିଆ ପାଇକ ବାହିନୀର ପ୍ରାଣମୂର୍ଚ୍ଛା ଶେଷ ସଂଗ୍ରାମ ଉପରେ କ୍ରୁର ଯମଯାତନାର ଯବନିକାପାତ କରି ଦୁର୍ଗମ ଦୁର୍ଭେଦ୍ୟ ଖୋର୍ଦ୍ଧା ଦୁର୍ଗର ସ୍ୱାଧୀନତା ସୂର୍ଯ୍ୟକୁ ଚିରଦିନ ପାଇଁ ଗ୍ରାସ କରି ଦେଇଥିଲା ସେହି କାଳ ମୁହୂର୍ତ୍ତ । କ୍ରମାଗତ ତିନି ସପ୍ତାହ ଧରି ଓଡ଼ିଶାର ଶେଷ ସ୍ୱାଧୀନ ଦୁର୍ଗ 'ଖୋର୍ଦ୍ଧା ଘାଟୀ ଗଡ଼'କୁ ଉତ୍ତର, ପୂର୍ବ, ପଶ୍ଚିମ ତିନି ଦିଗରୁ ଅବରୋଧ କରି ତୋପ, କମାଣ ଓ ବନ୍ଧୁକ ମୁହଁରୁ ଅବିରତ ଗୁଳିଗୋଳା ବର୍ଷଣ ସତ୍ତ୍ୱେ ଶକ୍ତିଶାଳୀ ଫିରିଙ୍ଗି ଫଉଜ ସେହି ଦୁର୍ଭେଦ୍ୟ ଦୁର୍ଗକୁ ଭେଦ କରି ପାରି ନଥିଲା, କିମ୍ବା ଦୁର୍ଗମ ବରୁଣେଇ ପାହାଡ଼ର ସୁରକ୍ଷା ବଳୟ ଭେଦ କରି ଦୁର୍ଗର ଦକ୍ଷିଣ ପାର୍ଶ୍ୱକୁ ଅବରୋଧ କରିବା ପାଇଁ ସକ୍ଷମ ହୋଇ ପାରିନଥିଲା । ଖୋର୍ଦ୍ଧାର ଦୁର୍ବାର ପାଇକ ବାହିନୀର ନେତୃତ୍ୱ ନେଇ ଦୁର୍ଗ ପୂର୍ବଦ୍ୱାରର ରକ୍ଷା ଦାୟିତ୍ୱରେ ଅବସ୍ଥାପିତ ଥିଲେ ଅସାଧାରଣ ସାହସୀ ବୀର ତଥା ଖୋର୍ଦ୍ଧା ରାଜବଂଶର ରାଜଗୁରୁ ଜୟକୃଷ୍ଣ ମହାପାତ୍ର, ଉତ୍ତର ଦ୍ୱାରର ରକ୍ଷା ଦାୟିତ୍ୱରେ ଥିଲେ ଖୋର୍ଦ୍ଧା ରାଜ୍ୟର ସ୍ୱନାମଧନ୍ୟ ଦୁର୍ଦ୍ଧର୍ଷ ସେନାପତି ବୀର ଶ୍ରେଷ୍ଠ ବକ୍ସି ଜଗବନ୍ଧୁ ଏବଂ ପଶ୍ଚିମ ଦ୍ୱାରର ରକ୍ଷକ ଥିଲେ ଦେୱାନ ହରିହର ଭ୍ରମରବର ରାୟ । ମାତ୍ର କ୍ରମେ ଦୁର୍ଗର ପୂର୍ବପାଖ ପ୍ରାଚୀର ଉପରେ ହିଁ ଇଂରେଜ ଫୌଜର ବହୁମୁଖୀ ଆକ୍ରମଣ କେନ୍ଦ୍ରୀଭୂତ ହେବାକୁ ଲାଗିଲା । ବହୁ ସଂଖ୍ୟକ ତୋପ କମାଣରୁ କ୍ରମାଗତ ଗୁଳି ବର୍ଷଣ ଚାଲିଥାଏ । ପ୍ରତ୍ୟେକ ମୁହୂର୍ତ୍ତରେ ତୋପ ନାଦରେ ଥରି ଉଠୁଥାଏ ଗଡ଼ ପ୍ରାଚୀର । କମ୍ପି ଉଠୁଥିଲା ବରୁଣେଇ ଗିରି ଗହ୍ୱର । ହଠାତ୍ ଏକ ଦୁଃଖକର ଶବ୍ଦ ସହ ଗଡ଼ର ପୂର୍ବ ପାଖ ପ୍ରାଚୀର ବାହାରେ ପ୍ରକାଣ୍ଡ ଫାଟ ସୃଷ୍ଟି ହେବା ସହ ପ୍ରାଚୀରର ଏକ ଅଂଶ ଭାଙ୍ଗି ପଡ଼ିଲା । ଗଡ଼ର ପତନ ନିଶ୍ଚିତ ମନେ କରି ଗଡ଼ ମଧ୍ୟରେ ଥିବା ରାଜା, ରାଜଗୁରୁ, ସେନାପତି, ପ୍ରହରୀ, ପାଇକ ଯୋଦ୍ଧାମାନେ ଚାଲିଗଲେ ଅନ୍ୟତ୍ର । ପରେ ଏହି ଦୁର୍ଗମ ଦୁର୍ଭେଦ୍ୟ ଦୁର୍ଗ ଧ୍ୱଂସ ବିଧ୍ୱସ୍ତ ହୋଇଗଲା ଓ ଏହାର ଧ୍ୱଂସାବଶେଷ ଏବେ ବି ସ୍ପଷ୍ଟ ପରିଲକ୍ଷିତ ହୁଏ ।

**ରାମେଶ୍ୱର ଗଡ଼ :** ଭୋଇ ବଂଶର ପ୍ରଥମ ରାଜା ରାମଚନ୍ଦ୍ର ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ଯେଉଁ ଖୋର୍ଦ୍ଧା ରାଜ୍ୟକୁ ୧୫୯୨ ଖ୍ରୀ.ଅ.ରେ ସମ୍ରାଟ ଆକବରଙ୍କ ନିର୍ଦ୍ଦେଶକ୍ରମେ ତାଙ୍କର ସେନାପତି ରାଜା ମାନସିଂହ ସ୍ୱୀକୃତି ପ୍ରଦାନ କରିଥିଲେ, ତହିଁରେ ୭୧ଟି ଗଡ଼ ଥିଲା । ତନ୍ମଧ୍ୟରୁ ପ୍ରଧାନ ୮ଟି ଗଡ଼ ନାମରେ ସମସ୍ତ ଖୋର୍ଦ୍ଧା କିଲ୍ଲାକୁ ୮ଟି କିଲ୍ଲାରେ ବିଭକ୍ତ କରାଯାଇଥିଲା । ସେହି ୮ଟି କିଲ୍ଲା ମଧ୍ୟରେ ରାମେଶ୍ୱର କିଲ୍ଲା ଥିଲା ଅନ୍ୟତମ । ରାମେଶ୍ୱରଗଡ଼ ରାମେଶ୍ୱର କିଲ୍ଲାର ସଦର ମହକୁମା ଥିଲା । ରାମେଶ୍ୱର କିଲ୍ଲା ଅଧୀନରେ ସର୍ବମୋଟ ୯ଟି ଗଡ଼ ଥିଲା, ଯଥା– ରାମେଶ୍ୱର, ଲାଲସିଂ, ଛଣଗିରି, ଟିକାତଳ, ମୂଳଘର, ବଡ଼ପୋଖରିଆ, ସିକୋ, ପରିଛିଳ ଓ କୋତଲାଙ୍ଗ । ଓଡ଼ିଶାରେ ମୋଗଲ, ମରହଟ୍ଟା ଓ ବ୍ରିଟିଶ ରାଜତ୍ୱ ସମୟରେ ଖୋର୍ଦ୍ଧାର ଜମିଜମା ସ୍ୱତ୍ୱଲିପି ବନ୍ଦୋବସ୍ତମାନଙ୍କରେ 'କିଲା ଖୋର୍ଦ୍ଧା କିଲ୍ଲା ରାମେଶ୍ୱର' ଉଲ୍ଲେଖ ରହିଛି । ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ, ତ୍ରେତୟା ଯୁଗରେ ପ୍ରଭୁ ଶ୍ରୀରାମ ଅନୁଜ ଲକ୍ଷ୍ମଣ ଓ ସୀତାଙ୍କ ସହ ବନବାସ କାଳରେ ଅପୂର୍ବ ପ୍ରାକୃତିକ ଶୋଭା ସମ୍ଭାର ପରିପୂର୍ଣ୍ଣ ମନ୍ଦାକିନୀ ତଟବର୍ତ୍ତୀ ଏହି ସୁରମ୍ୟ ପାହାଡ଼ର ପାଦ ଦେଶରେ ଭ୍ରମଣ କରୁ କରୁ ଦୈବାତ୍ ଏକ ଶିବଲିଙ୍ଗ ଦେଖିବାକୁ ପାଇଲେ । ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ ସେହି ନିଧି ଲିଙ୍ଗ ହିଁ ରାମନିଧି ଦେବ ନାମରେ ଖ୍ୟାତ । ଏହିଠାରେ ରାମ ଈଶ୍ୱରଙ୍କ ପୂଜା କରିଥିବାରୁ ପରବର୍ତ୍ତୀ କାଳରେ ଏଠାରେ ପ୍ରତିଷ୍ଠିତ ଗ୍ରାମର ନାମ ରାମେଶ୍ୱର । ରାମେଶ୍ୱର ପାହାଡ଼ର ଦକ୍ଷିଣ ପାର୍ଶ୍ୱର କିଛି ଦୂରରେ ଅନ୍ୟ ଏକ ସୁଦୃଶ୍ୟ ପାହାଡ଼ ଚିତ୍ରକୁଟ ଅବସ୍ଥିତ । ରାମାୟଣ ବର୍ଣ୍ଣିତ ଚିତ୍ରକୁଟ ପର୍ବତ ହିଁ ଏହି ପର୍ବତ ବୋଲି ଏଠାରେ ଜନଶ୍ରୁତି ଅଛି ।

ଇଂରେଜମାନେ ଖୋର୍ଦ୍ଧା ଦୁର୍ଗ ଅବରୋଧ କରିବା ପରେ ମୁକୁନ୍ଦ ଦେବ ତାଙ୍କର ଚାରି ମାସର ଶିଶୁ ପୁତ୍ର ରାମଚନ୍ଦ୍ର ଓ ରାଣୀଙ୍କୁ ବିଶ୍ୱସ୍ତ ପାଇକମାନଙ୍କ ଦ୍ୱାରା ଏହି ରାମେଶ୍ୱର ଗଡ଼କୁ ପଠାଇ ଦେଇଥିଲେ । ଇଂରେଜମାନଙ୍କ ଦ୍ୱାରା ଖୋର୍ଦ୍ଧା ଦୁର୍ଗ ଧ୍ୱଂସ ବିଧ୍ୱସ୍ତ ହେବା ପରେ ମହାରାଜା ମୁକୁନ୍ଦ ଦେବ, ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ ଓ ଦେୱାନ ହରିହର ପ୍ରମୁଖ ବିଶ୍ୱସ୍ତ ରକ୍ଷୀମାନେ ଗୁପ୍ତ ଭାବରେ ଆସି ରାମେଶ୍ୱର ଗଡ଼ରେ ଅବସ୍ଥାନ କଲେ । ସେହି ଦୁର୍ଦ୍ଦିନ ମୁହୂର୍ତ୍ତରେ ରାମେଶ୍ୱର ଗଡ଼ ହିଁ ମୁକୁନ୍ଦ ଦେବଙ୍କ ପରିବାରବର୍ଗଙ୍କ ପାଇଁ ନିରାପଦ ଆଶ୍ରୟସ୍ଥଳ ଥିଲା ।

**ବରପଦା ଗଡ଼ :** ଖୋର୍ଦ୍ଧାଠାରୁ ପ୍ରାୟ ସାତକୋଶ ଦୂର ଦକ୍ଷିଣ ଦିଗରେ ବରପଦା ଗଡ଼ ଅବସ୍ଥିତ । ଏହି ଗଡ଼ର କୌଣସି ପ୍ରାକୃତିକ ପରିବେଷ୍ଟନୀ ପରିଦୃଷ୍ଟ ହେଉ ନଥିଲେ ହେଁ ଖୋର୍ଦ୍ଧା ଭୋଇ ବଂଶର ରାଜତ୍ୱ କାଳରେ ଏହି ଗଡ଼ ମନ୍ଦାକିନୀ ନଦୀ ତୀରବର୍ତ୍ତୀ ଘଞ୍ଚ ଅରଣ୍ୟ ବେଷ୍ଟିତ ହୋଇ ରହିଥିଲା । ଏହି ଗଡ଼ ସଂଲଗ୍ନ ଶ୍ରୀ ମୁକୁନ୍ଦପୁର ଶାସନର ପ୍ରାଚୀନ ନାମ ଥିଲା ଉଷ୍ଣୁନା ବା ଓଷଣା । ତେଣୁ ଭୋଇ ବଂଶ ପ୍ରତିଷ୍ଠା ପୂର୍ବରୁ ଏହି ଗଡ଼କୁ 'ଉଷ୍ଣୁନା ବରପଦା' କୁହାଯାଉଥିଲା । ଏହା ଖୋର୍ଦ୍ଧାର ୭୧ ଗଡ଼ ମଧ୍ୟରୁ ଅନ୍ୟତମ ଥିଲା ; କିନ୍ତୁ ଭୋଇ ବଂଶର ପ୍ରତିଷ୍ଠା ପରେ ଏହି ଗଡ଼ର ପ୍ରାଧାନ୍ୟ ଯଥେଷ୍ଟ ବୃଦ୍ଧି ପାଇଥିଲା । କାରଣ ଭୋଇ ବଂଶର ପ୍ରତିଷ୍ଠାତା ରାମଚନ୍ଦ୍ର

ରାମଚନ୍ଦ୍ର ଦେବ ଖୋର୍ଦ୍ଧାରେ ନିଜର ରାଜଧାନୀ ପ୍ରତିଷ୍ଠା କରିବା ପରେ ଏହି ଗଡ଼ ସଂଲଗ୍ନ ରଥପୁରା ଗ୍ରାମରେ ରାଜଗୁରୁ ବଳଦେବ ମହାପାତ୍ରଙ୍କୁ ରଖାଇଥିଲେ । ରାଜଗୁରୁ ବଳଦେବ ମହାପାତ୍ରଙ୍କ ଅଗାଧ ପାଣ୍ଡିତ୍ୟ, ଅସାଧାରଣ ପ୍ରତିଭା ଓ ଅଲୌକିକ ସାଧନା ବଳରେ ସେ ଯେ କେବଳ ରାମଚନ୍ଦ୍ର ଦେବଙ୍କୁ ଆକୃଷ୍ଟ କରି ପାରିଥିଲେ, ସେତିକି ନୁହେଁ ବରଂ ତାଙ୍କର ଓ ତାଙ୍କ ପରବର୍ତ୍ତୀ ବଂଶଧରମାନଙ୍କ ସହିତ ଗଜପତି ରାମଚନ୍ଦ୍ର ଦେବ ଏବଂ ତାଙ୍କ ପରବର୍ତ୍ତୀ ବଂଶଧରମାନଙ୍କର ଘନିଷ୍ଠ ସମ୍ପର୍କ ଓ ସୌହାର୍ଦ୍ଦ୍ୟ ହେତୁ ଖୋର୍ଦ୍ଧାର ରାଜା ଓ ଯୁବରାଜମାନେ ଅନେକ ସମୟରେ ବରପଦା ଗଡ଼କୁ ଆସୁଥିଲେ । ସେଠାରେ ସାମୟିକ ଅବସ୍ଥାନ କରୁଥିଲେ । ଫଳରେ ଏହି ବରପଦା ଗଡ଼ର ଚାରିପାଖରେ ଇଛାପୁର, ଶ୍ରୀମୁକୁନ୍ଦପୁର, ରାଘବୁରୁପୁର, ଦିବ୍ୟସିଂହପୁର, ପଞ୍ଚଯୋଶୀପୁର, ମୈତ୍ର ତ୍ରିଲୋଚନପୁର ଓ ବୀରକେଶରପୁରକୁ ନେଇ ସିରାଇ ସାତଶାସନ ପ୍ରତିଷ୍ଠା କରାଯାଇଥିଲା ।

**ଖାରଦଗଡ଼ :** ଖଜୁରିଆ ଗଡ଼ର ଦକ୍ଷିଣ-ପୂର୍ବ ଦିଗରେ ବା ନିରାକାରପୁର ନିକଟରେ ଏହି ଗଡ଼ ଅବସ୍ଥିତ । ଏହା ଗଜପତି ଗୋପୀନାଥ ଦେବଙ୍କ ପୁତ୍ର ଜେନାମଣି ଭ୍ରମରବର ରାଉତରାୟଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ମାଦଳା ପାଞ୍ଜିରେ ବର୍ଣ୍ଣିତ ହୋଇଛି– ଏକଦା ଗଜପତି ଗୋପୀନାଥ ଦେବ କାମାନ୍ଧ ହୋଇ ବାଙ୍କୀ ରାଜ୍ୟର ରାଣୀ ଶୁକଦେଈଙ୍କୁ ପାଇବା ଲକ୍ଷ୍ୟରେ ବାଙ୍କୀ ରାଜ୍ୟ ଆକ୍ରମଣ କରି ବାଙ୍କୀ ରାଜାଙ୍କୁ ହତ୍ୟା କରିବା ପରେ ରାଣୀ ଶୁକଦେଈ ବୈଧବ୍ୟ ଦୁଃଖରେ ଜର୍ଜରିତ ହୋଇ ମଧ୍ୟ ଅସୀମ ସାହସ ଓ ବୀରତ୍ୱର ସହିତ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଗୋପୀନାଥ ଦେବଙ୍କୁ ପରାସ୍ତ ଓ ଉପଯୁକ୍ତ ଶାସ୍ତି ଦେଇଥିଲେ । ପରେ ଗୋପୀନାଥ ଦେବ ମାନସିକ ଚିନ୍ତାଗ୍ରସ୍ତ ହୋଇ ଦୁଃସାଧ୍ୟ ଶୋଥ ରୋଗରେ ଆକ୍ରାନ୍ତ ହୋଇ ଇଛାପୁର ତାଲୁକାରେ ଚିକିତ୍ସିତ ହେଉଥିବା ସମୟରେ ନିଜର ସାନଭାଇ କେଶବ ରାଏଙ୍କୁ ଖୋର୍ଦ୍ଧା ରାଜ୍ୟଭାର ଅର୍ପଣ କରିଥିଲେ । ତେଣୁ ଗୋପୀନାଥ ଦେବଙ୍କ ପୁତ୍ର ଜେନାମଣି ଭ୍ରମରବର ରାଉତରାୟ ପିତାଙ୍କ ଏହି ଅନୀତି ସହ୍ୟ କରି ନପାରି ଖୋର୍ଦ୍ଧା ତ୍ୟାଗ କରି ସସୈନ୍ୟ ଯାଇ ଚିଲିକା କୂଳସ୍ଥ ଖାରଦ ଗ୍ରାମରେ ଗଡ଼ ନିର୍ମାଣ କରି ରହିଥିଲେ ।

**ବଳଭଦ୍ରପୁର ଗଡ଼ :** ଏହି ଗ୍ରାମର ପୂର୍ବଦିଗରେ ଦୟା, ଦକ୍ଷିଣ-ପଶ୍ଚିମ ଦିଗରେ ମଲାଗୁଣି ଏବଂ ଉତ୍ତର-ପଶ୍ଚିମ ଦିଗରେ ରାଜୁଆ ନଦୀର ସ୍ରୋତଧାର ବହିଯାଇଛି । ମାତ୍ର ପ୍ରାଚୀନ ବଳଭଦ୍ରପୁର ଦୁର୍ଗର ଉତ୍ତର ଦିଗରେ କୌଣସି ନଦୀ ନଥିଲା । କେବଳ ଥିଲା ଖାଲୁଆ ପାଟ ଜମି । ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ରାଜତ୍ୱ କାଳରେ ବଳଭଦ୍ର ପ୍ରସାଦ ଦୁର୍ଗ ପରଗଣା ଦଣ୍ଡପାଟର ଅନ୍ତର୍ଭୁକ୍ତ ଥିଲା । ମାଦଳା ପାଞ୍ଜିରେ ଉଲ୍ଲେଖ ଥିବା ପରଗଣା 'ଦଣ୍ଡପାଟ'କୁ ମୋଗଲ ରାଜତ୍ୱ କାଳରେ 'ଆଇନ୍-ଇ-ଆକବରୀ'ରେ ବରଙ୍ଗ ମାହାଲ ନାମରେ ନାମିତ କରାଯାଇ ଉକ୍ତ ମାହାଲକୁ ଛଅଗୋଟି ବିଶି ବା ଖଣ୍ଡରେ ବିଭକ୍ତ କରାଯାଇଥିଲା । ଅନୁମାନ କରାଯାଏ, ବଳଭଦ୍ର ପ୍ରସାଦ ନାମରେ ଏକ ବିଶି ବା ଖଣ୍ଡ ଥିଲା । ଏହିପରି କହିବାର ଦୁଇଟି କାରଣ ଅଛି– ପ୍ରଥମତଃ ବଳଭଦ୍ରପୁର ବା ବଳଭଦ୍ରପ୍ରସାଦ ଦୁର୍ଗ ନଦୀ ଦ୍ୱାରା ବେଷ୍ଟିତ ହୋଇଥିବାରୁ ଏବଂ ଏହାର ଉତ୍ତର ଦିଗରେ ବାସଭୂମି ପାଇଁ ଅନୁପଯୁକ୍ତ ଅତି ଖାଲୁଆ ପାଟ ଜମି ରହିଥିବାରୁ ଉତ୍ତର ଓ ପଶ୍ଚିମ ଦିଗରୁ ଏହି ଦୁର୍ଗ ପ୍ରତି ଶତ୍ରୁ ଆକ୍ରମଣ ଆଶଙ୍କା ଦୂର କରିବା ଅଭିପ୍ରାୟରେ ପ୍ରାୟ ଏକ ମାଇଲ ଉତ୍ତରକୁ ଦୟାନଦୀ କୂଳରେ ଏକ ଦେହରା ବସ୍ତି ବସାଇ ସେଠାରେ ଗଡ଼ର ଦଳବେହେରାଙ୍କୁ ଅବସ୍ଥାପିତ କରାଯାଇଥିଲା । ସେହି ଦେହରା ବସ୍ତିଟି ଦୁର୍ଗର ଦ୍ୱିତୀୟ ଖଣ୍ଡ ବା ଦୋଖଣ୍ଡ ଥିଲା, ଯାହା ଏବେ ଦୋଇନ୍ଦା ନାମରେ ପରିଚିତ । ଦ୍ୱିତୀୟତଃ ମୋଗଲ ସମ୍ରାଟ ଆକବରଙ୍କ ଆଦେଶକ୍ରମେ ତାଙ୍କର ସେନାପତି ତୋଡ଼ରମଲ୍ଲ ୧୫୮୦ ଖ୍ରୀ.ଅ.ରେ ପ୍ରଥମେ ପରଗଣା ବା ବରଙ୍ଗ ମାହାଲର ଜମିଜମା ବନ୍ଦୋବସ୍ତ କରାଇଥିଲେ ଏବଂ ୧୫୯୨-୯୩ ଖ୍ରୀ.ଅ.ରେ ଆକବରଙ୍କ ଅନ୍ୟତମ ସେନାପତି ରାଜା ମାନସିଂହ ସେହି ବନ୍ଦୋବସ୍ତକୁ ପକ୍କା କରାଇ ଆକବରଙ୍କ ନିର୍ଦ୍ଦେଶ କ୍ରମେ ରାମଚନ୍ଦ୍ର ଦେବଙ୍କୁ ଖୋର୍ଦ୍ଧାରେ ରାଜା ରୂପେ ସ୍ୱୀକୃତି ପ୍ରଦାନ କରିଥିଲେ । ଖୋର୍ଦ୍ଧା କିଲା ଅଧୀନରେ ଖୁର୍ଦ୍ଧା, ରଥପୁର, ଟାପଙ୍ଗ, ନାଳଗିଁ, ରାମେଶ୍ୱର, କୋକଳା, ରୋଡ଼ଙ୍ଗ ଇତ୍ୟାଦି ୭୧ଟି ଗଡ଼ ମଧ୍ୟରେ ବଳଭଦ୍ର ପ୍ରସାଦ ଅନ୍ୟତମ ଗଡ଼ ଥିଲା । କିନ୍ତୁ ପ୍ରଶାସନିକ ସୁବିଧା ଦୃଷ୍ଟିରୁ ରାମଚନ୍ଦ୍ର ଦେବ ୧ ଖୋର୍ଦ୍ଧା ରାଜ୍ୟକୁ ଯେଉଁ ୯ଟି ଜିଲ୍ଲାରେ ବିଭକ୍ତ କରିଥିଲେ, ତା' ମଧ୍ୟରେ ବଳଭଦ୍ର ପ୍ରସାଦକୁ ବଳଭଦ୍ରପୁର ନାମରେ ଅନ୍ୟତମ ଜିଲ୍ଲା ଭାବେ ସ୍ଥାନ ଦିଆଯାଇଥିଲା । ବଳଭଦ୍ରପୁର ଜିଲ୍ଲା ଅଧୀନରେ ୩୪ଟି ମୌଜା ବା ରାଜସ୍ୱ ଗ୍ରାମ ଥିଲା । ଏଠାରେ ଜନଶ୍ରୁତି ଅଛି, ବଳଭଦ୍ରପୁର ଗଡ଼ରେ ଖୋର୍ଦ୍ଧା ରାଜାଙ୍କର ଖମାର ଇତ୍ୟାଦି ଥିଲା । ଖୋଦ୍ ରାଜା ଏଠାରେ ସାମୟିକ ଭାବେ ଅବସ୍ଥାନ କରୁଥିଲେ ଏବଂ ୧୮୧୭ରେ ଖୋର୍ଦ୍ଧା ପାଇକ ବିଦ୍ରୋହ ସମୟରେ ଗଡ଼ର ଅଧିଷ୍ଠାତ୍ରୀ ଦେବୀ ଭୁବନେଶ୍ୱରୀ ଠାକୁରାଣୀଙ୍କୁ ଏଠାରୁ ନେଇ କଣାସର କୃଷ୍ଣନଗରରେ ରଖାଇବା ପରେ ନିଜେ ଗଡ଼ ତ୍ୟାଗ କରି ପଳାଇଥିଲେ । ସମ୍ପ୍ରତି ବଳଭଦ୍ରପୁର ଗଡ଼ରେ ରାଜ-ପ୍ରତିଷ୍ଠିତ ଠାକୁର ଗୋପୀନାଥ ଦେବଙ୍କ ମନ୍ଦିର ରହିଛି । ଠାକୁରଙ୍କ ପଥଦୋଳ ମେଳଣରେ ଏହି ଗୋପୀନାଥ ଦେବ ହେଉଛନ୍ତି ସ୍ଥାନପତି ।

**ପଲ୍ଲାଗଡ଼ :** ଏହି ଗଡ଼ ଖୋର୍ଦ୍ଧା ସହିତ ସଂଯୁକ୍ତ । ଖୋର୍ଦ୍ଧା ଦୁର୍ଗ ରକ୍ଷକ ଗଡ଼ମାନଙ୍କ ମଧ୍ୟରେ ଦକ୍ଷିଣ କୋଣରେ ଏହି ଗଡ଼ ଅବସ୍ଥିତ । ଏହି ଗଡ଼ରେ ଶୁଦ୍ଧ ସୋରା, ବଳି ବିକ୍ରମ ସିଂହର ଏକ ଜମି ଥିଲା । ରାମେଶ ରାଉତରା ଯେକି ଖୋର୍ଦ୍ଧା ରାଜବଂଶର ପ୍ରତିଷ୍ଠାତା, ସେ ବଳି ବିକ୍ରମ ସିଂହର ମୁଣ୍ଡ କାଟି କରି ତା'ର ମୁଣ୍ଡ ପୋତି ଖୋର୍ଦ୍ଧା ଗଡ଼ ପ୍ରତିଷ୍ଠା କରିଥିଲେ । ଏ ଗ୍ରାମର ଦକ୍ଷିଣ ଦିଗରେ ପଲ୍ଲା ପାହାଡ଼ ପାର୍ଶ୍ୱରେ ପଲ୍ଲାଗଡ଼ ନିର୍ମିତ ହୋଇଥିଲା । ପରେ ନାଉସିଂହ ଗଡ଼କୁ ତାହା ସ୍ଥାନାନ୍ତରିତ ହୋଇଥିଲା । ବର୍ତ୍ତମାନ ମଧ୍ୟ ଗଡ଼ର ଧ୍ୱଂସାବଶେଷ ଦେଖାଯାଏ । ପଲ୍ଲାଗଡ଼ ଅଧୀନସ୍ଥ ୬ ମୌଜା ଥିଲା ଯଥା– ପଲ୍ଲା- ତୋଟାପଡ଼ା, ବନାସପୁଟ, ଜଗିପୁଟ, ରଙ୍ଗନାପାଡ଼ି, ଛୋଟରାୟପୁର ଓ ନାଉସିଂହ ।

**ମଳିପଡ଼ା ଗଡ଼ :** ଏହା ଖୋର୍ଦ୍ଧାର ଦକ୍ଷିଣରେ ଅବସ୍ଥିତ । ଜାତୀୟ ରାଜପଥର ପଶ୍ଚିମ ପାର୍ଶ୍ୱରେ ଗଡ଼ର ଧ୍ୱଂସାବଶେଷ ଦୃଷ୍ଟିଗୋଚର ହୁଏ । ଗଡ଼ର ଗର୍ଭ ଭିତରେ ଗଡ଼ର ଇଷ୍ଟଦେବତା ଶ୍ରୀ ବେଲେଶ୍ୱର ଶିବଲିଙ୍ଗ ଏବଂ ଅଧିଷ୍ଠାତ୍ରୀ ଦେବୀ ଦଶଭୁଜାଙ୍କ ମନ୍ଦିର ରହିଛି । ଏହି ଗଡ଼ର ଅଧିକାଂଶ କଂପୁର ମୌଜାରେ ଅବସ୍ଥିତ ହୋଇଥିବାରୁ, କଂପୁର ଓ ମଳିପଡ଼ା ଉଭୟ ମୌଜାର ଅଧିବାସୀଙ୍କୁ ମଳିପଡ଼ାବାସୀ କୁହାଯାଏ । ଏହି ଗଡ଼ର ପୂର୍ବ-ଉତ୍ତର କୋଣରେ ଶାମୁକା ଓ ହାତୀଖମା, ଗଡ଼ର ବାହାରେ ଶମ୍ଭୁକା ଓ ନରସିଂହ ନାମକ ପୁଷ୍କରିଣୀ, ହାତୀଶାଳ, ଘୋଡ଼ାଶାଳ ଓ ଅଖଡ଼ାମାନ ଆଦି ବିଦ୍ୟମାନ ।

**ନରଣଗଡ଼ :** ଖୋର୍ଦ୍ଧାର ଦକ୍ଷିଣ-ପୂର୍ବ କୋଣରେ ଏହି ଗଡ଼ ଅବସ୍ଥିତ । ନାରାୟଣ ରାଉତରାୟଙ୍କ ନାମାନୁସାରେ ଏପରି ହୋଇଛି । ମୋଗଲ ସମ୍ରାଟ ଆଉରଙ୍ଗଜେବ ଦିଲ୍ଲୀରେ ରାଜତ୍ୱ କରୁଥିବା ସମୟରେ କଟକ ସୁବେଦାରଙ୍କୁ ନିର୍ଦ୍ଦେଶ ଦେଲେ, ଜଗନ୍ନାଥ ମନ୍ଦିର ଧ୍ୱଂସ କରି ମୂର୍ତ୍ତିଙ୍କୁ ଦିଲ୍ଲୀ ପଠାଇବା ପାଇଁ । ସୁବାଦାର ଖୋର୍ଦ୍ଧା ଆକ୍ରମଣ କରନ୍ତେ, ନାରାୟଣ ରାଉତରାୟ ଗଜପତିଙ୍କ ନିର୍ଦ୍ଦେଶକ୍ରମେ ମୋଗଲମାନଙ୍କ ସହ ସମ୍ମୁଖୀନ ହୋଇ ସେମାନଙ୍କୁ ପରାସ୍ତ କରିଥିଲେ । ତେଣୁ ଗଜପତି ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କ ନାମରେ ଏହି ଗଡ଼ ପ୍ରତିଷ୍ଠା କରିଥିଲେ ।

**ତାପଙ୍ଗ ଗଡ଼ :** ଏହି ଗଡ଼ ଖୋର୍ଦ୍ଧାର ଦକ୍ଷିଣ ପୂର୍ବ କୋଣରେ ଅବସ୍ଥିତ । ନରଣଗଡ଼ର ପ୍ରଥମ ଦଳବେହେରା ନାରାୟଣ ରାଉତରାୟଙ୍କ କନିଷ୍ଠ ଭ୍ରାତା ନରସିଂହ ରାଉତରାୟ ପୁରୀ ନିକଟସ୍ଥ ବାଙ୍କମୁକୁନ୍ଦପୁର ଠାରେ ମୋଗଲମାନଙ୍କୁ ପ୍ରତିହତ କରିଥିବାରୁ ଗଜପତି ତାଙ୍କୁ ତାପଙ୍ଗ ଗଡ଼ର ଅଧୀଶ୍ୱର କରାଇଥିଲେ । ନିକଟରେ ହାତିଆ ପର୍ବତ ବିଦ୍ୟମାନ ଯାହାର ପାଦ ଦେଶରେ ଏହି ଗଡ଼ ଅବସ୍ଥିତ । ଗଡ଼ର ଚତୁଃପାର୍ଶ୍ୱରେ ଯେଉଁ ଅନ୍ୟ ଗଡ଼ଗୁଡ଼ିକ ରହି ଏହି ତାପଙ୍ଗ ବା ନିଜଗଡ଼ ତାପଙ୍ଗକୁ ସୁରକ୍ଷା କରୁଥିଲା, ସେଗୁଡ଼ିକ ହେଲା- ମଳିପଡ଼ା, ନରଣଗଡ଼, ରାମଚଣ୍ଡୀ, ଗଡ଼େଇଗଡ଼, ଛଇମାଗଡ଼, ରଘୁପୁର ଓ କାଶିଆଗଡ଼ । ଏହି ଗଡ଼ର ଦଳବେହେରା ବଂଶର ମାଧବ ଚନ୍ଦ୍ର ରାଉତରାୟ ୧୮୨୬ ଖ୍ରୀ.ଅ:ରେ ଇଂରେଜମାନଙ୍କ ସହ ଦୀର୍ଘ ୭ଦିନ ଧରି ସଂଗ୍ରାମ କରିଥିଲେ ।

**କାଇପଦର ଗଡ଼ :** ଏହି ଗଡ଼ ଖୋର୍ଦ୍ଧାର ଦକ୍ଷିଣ-ପଶ୍ଚିମ କୋଣରେ ଅବସ୍ଥିତ । ଏହା ଅଧୀନରେ ଥିଲା:- ସୋମନାଥପୁର, ବେତନଟୀ ଘାଟ, ଭାଟପଡ଼ା, ତାଳତୋଳା, ନିଆଁମୁହାଁ, ମାଧପୁର, ନୂଆଗାଁ, ସାଥାଣ୍ଡା ଓ ଦଧିମାଛ ଗାଡ଼ିଆ । ଏଠାରେ ହିନ୍ଦୁ-ମୁସଲମାନ ଉଭୟ ସମ୍ପ୍ରଦାୟର ବ୍ୟକ୍ତି ପ୍ରତିଷ୍ଠିତ ବୋଖାରି ବାବାଙ୍କୁ ପୂଜା କରିଥାନ୍ତି । ଏହି ଗଡ଼ର ଅଧିକାଂଶ ପାଇକ ମୁସଲମାନ ସମ୍ପ୍ରଦାୟର ଥିଲେ । କଥିତ ଅଛି, ଖୋର୍ଦ୍ଧାର ପାଇକମାନେ ରଣକ୍ଷେତ୍ରକୁ ଯିବା ପୂର୍ବରୁ ଏହି ସ୍ଥାନରେ ଥିବା ବୋଖାରି ସାହେବଙ୍କଠାରୁ ଆଶୀର୍ବାଦ କାମନା କରିଥାନ୍ତି ।

**ବୋଲଗଡ଼ :** ଏହି ଗଡ଼ ଖୋର୍ଦ୍ଧା ରାଜ୍ୟର ପଶ୍ଚିମ ପାର୍ଶ୍ୱରେ ବିଦ୍ୟମାନ । ଉତ୍ତର କଳିଙ୍ଗର ଏକମୁଖୀ ପ୍ରବେଶଦ୍ୱାର ବନ୍ଧାକାର ଦୁର୍ଗ । ଷଷ୍ଠ ଶତାବ୍ଦୀରେ ଶୈଳୋଦ୍ଭବ ରାଜବଂଶର ଅନ୍ୟତମ ରାଜା ମାଣିକ ଦେବ ବାଣପୁରରୁ ଆସି ଏଠାରେ ରାଜବଂଶ ପ୍ରତିଷ୍ଠା କରିବା ପରେ ପୁରୁଷାନୁକ୍ରମେ ତାହା କେଶରୀବଂଶ ପର୍ଯ୍ୟନ୍ତ ନିଜର ଖ୍ୟାତି ବଜାୟ ରଖିଥିଲା । ଓଡ଼ିଶାର ଗଙ୍ଗବଂଶ ପ୍ରତିଷ୍ଠା ହେବାଠାରୁ ଏହି ଅଞ୍ଚଳ ଗଙ୍ଗବଂଶର ପ୍ରତ୍ୟକ୍ଷ ଶାସନାଧୀନରେ ରହିଥିଲା । ଭୋଇବଂଶ ଶାସକ ଦ୍ୱିତୀୟ ରାମଚନ୍ଦ୍ର ଦେବ ୧୯୩୩ ଖ୍ରୀ.ଅ:ରେ ଏହି ସ୍ଥାନରେ ଆତ୍ମଗୋପନ କରିଥିଲେ । ତତ୍କାଳୀନ ମୋଗଲ ଶାସକ ତକିଖାଁଙ୍କୁ ଦଳବେହେରାଙ୍କ ନେତୃତ୍ୱରେ ଖଣ୍ଡାୟତ ପାଇକମାନେ ବୋଲଗଡ଼ର ପଶ୍ଚିମକୁ ଥିବା ଅସୁରାଡ଼ିପାଠାରେ ପରାସ୍ତ କରି ଖୋର୍ଦ୍ଧା ସିଂହାସନ ପୁନର୍ବାର ଦଖଲ କରିବାରେ ରାଜାଙ୍କୁ ସାହାଯ୍ୟ କରିଥିଲେ । ଏହି ଗଡ଼ର ଦଳବେହେରା ବଂଶର ପୂର୍ବଜ ଖୋର୍ଦ୍ଧା ନିକଟସ୍ଥ ଗଡ଼େଇଗଡ଼ରୁ ଆସି ଗଜପତିଙ୍କଠାରୁ ୧୨୦ ବାଟି ଜମି ଜାଗିରି ପାଇ ଏଠାରେ ଅବସ୍ଥାପିତ ହୋଇଥିଲେ । ଏହାଙ୍କୁ ସାହାଯ୍ୟ କରିବା ପାଇଁ ଦଳେଇ, ବାହୁବଳେନ୍ଦ୍ର, ଡମ୍ବରୁ, ପାଲଟାସିଂହ ଓ ରଣଜିତ୍ ଆଦି ଉପାଧିଧାରୀ ବ୍ୟକ୍ତି ଗଜପତିଙ୍କ ଦ୍ୱାରା ନିଯୁକ୍ତି ପାଇଥିଲେ । ଏହି ଦଳବେହେରାଙ୍କ ଦ୍ୱାରଦେଶରେ ହରିକାଠ ଥିଲା ଓ ସେ ଗଡ଼ର ନ୍ୟାୟ ନିଷ୍ପତ୍ତି କରି ଦଣ୍ଡ ବିଧାନ କରୁଥିଲେ ।

**ଭଙ୍ଗାଗଡ଼ :** ଏହା ଖୋର୍ଦ୍ଧାର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ । ଭୋଇବଂଶ ରାଜା ଗୋବିନ୍ଦ ବିଦ୍ୟାଧରଙ୍କ ଭଣଜା ରଘୁରାମ ଭଞ୍ଜଙ୍କ ଦ୍ୱାରା ସ୍ଥାପିତ ଗ୍ରାମ ଏହି ଭଞ୍ଜଗଡ଼ ପରେ ଅପଭ୍ରଂଶ ହୋଇ ଭଙ୍ଗାଗଡ଼ ହୋଇଛି ବୋଲି କୁହାଯାଏ । ମଙ୍ଗଳାଯୋଡ଼ି ଓ ଭଙ୍ଗାଗଡ଼ ଉଭୟ ସଂଲଗ୍ନ ଗ୍ରାମ । ଏହାର ଏକ ପାର୍ଶ୍ୱରେ ଚିଲିକା ଅବସ୍ଥିତ ଓ ଏହି ଗଡ଼ ଏକ କ୍ଷୁଦ୍ର ପାହାଡ଼ର ପାର୍ଶ୍ୱରେ ଅବସ୍ଥିତ । ଗଡ଼ ମଧ୍ୟରେ ଦଳବେହେରାଙ୍କ ଉଆସ ଓ ସୈନ୍ୟସାମନ୍ତଙ୍କ ନିବାସ ଥିଲା ।

**କେରଙ୍ଗଗଡ଼ :** ଏହି ଗଡ଼ର ସମସ୍ତ ପାଇକ ମୁସଲମାନ ସମ୍ପ୍ରଦାୟର । ତେଣୁ ଏହା ମୁସଲମାନ ଗଡ଼ ଭାବରେ ଖ୍ୟାତ । ଏଠାରେ ହିନ୍ଦୁ-ମୁସଲମାନ ସମ୍ପ୍ରଦାୟ ମଧ୍ୟରେ ସଦ୍‌ଭାବ ରହିଛି । ଦୋଳ ଯାତ୍ରାରେ ଚାଚେରି ଭୋଗ ଉପଲକ୍ଷେ ଗଡ଼ର ହିନ୍ଦୁ ଇଷ୍ଟଦେବ ଶ୍ରୀରାଧାମୋହନ ଦେବ ଗଡ଼ର ଫାଟକ ପର୍ଯ୍ୟନ୍ତ ମହାସମାରୋହରେ ଯାଇ ମୁସଲମାନ ସମ୍ପ୍ରଦାୟର ଦଳବେହେରାଙ୍କ ଅର୍ପିତ ମିଷ୍ଟାନ୍ନ ଭୋଗ ଗ୍ରହଣ କରିଥାନ୍ତି ।

**ବଡ଼ପୋଖରିଆ ଗଡ଼ :** ଖୋର୍ଦ୍ଧାର ଦକ୍ଷିଣ ଦିଗରେ ଏହି ଗଡ଼ ଅବସ୍ଥିତ । ଏହି ଗଡ଼ କେବଳ ଦକ୍ଷିଣାଭିମୁଖୀ ଚିଲିକା ଜଳପଥର ଅବରୋଧକାରୀ ରୂପେ ସର୍ବଦା ସୁସଜ୍ଜିତ ତୋପ କମାଣ ସହିତ ପ୍ରସ୍ତୁତ ଥିଲା । ଏ ଗଡ଼ର ଦଳବେହେରା, ଦଳେଇ, ପଦାତିକ ପ୍ରଭୃତିଙ୍କ ସାମରିକ ଅଭିଯାନ ପ୍ରଶଂସନୀୟ ଥିଲା । ଏ ଗଡ଼ ଅଧୀନରେ ଏକ ଶତ ହସ୍ତୀ, ଦୁଇଶତ ଅଶ୍ୱ, ଶହେ ରଥ, ଏକ ହଜାର ପଦାତିକ ଓ କେତେକ ଓଟ ମଧ୍ୟ ଥିଲେ ।

**ମୁକୁନ୍ଦ ପ୍ରସାଦ :** ଏହି ଗଡ଼ ଖୋର୍ଦ୍ଧା ସହରର ପୂର୍ବ ଦିଗରେ ବିଦ୍ୟମାନ ଓ ଅଧୁନାବଧି ଏହା ସହର ସହିତ ସଂଯୁକ୍ତ । ଗଜପତି ମୁକୁନ୍ଦ ଦେବଙ୍କ ନାମାନୁସାରେ ଏହି ଗଡ଼ର ନାମକରଣ ଏପରି ହୋଇଛି । ଏହି ଗଡ଼ର ଦଳବେହେରା ଥିଲେ ମୁସଲମାନ ସମ୍ପ୍ରଦାୟ ।

**ସଁପୁର :** ମୁଣ୍ଡିଆ ପଡ଼ା ଘାଟିର ଦକ୍ଷିଣ ପାର୍ଶ୍ୱରେ ସଁପୁର ଗଡ଼ ଅବସ୍ଥିତ । ପୂର୍ବେ ଏହାର ନାମ ସମରପୁର ଥିଲା । ଏଠାରେ ଥିବା ଗଡ଼ ଓ ନଅରର ଧ୍ୱଂସାବଶେଷ ଏବେବି ରହିଛି । ସମ୍ବଲପୁର ରାଣୀ ମୁକ୍ତାଦେଈଙ୍କୁ ଇଂରେଜ ସରକାର ପାଇଗଡ଼ ମାହାଲ ଖୋରାକି ପୋଷାକ ପାଇଁ ଦେଇଥିବାରୁ ତାଙ୍କ ଦେୱାନ କର ଆଦାୟ ପାଇଁ ଏଠାରେ ଅବସ୍ଥାନ କରୁଥିଲେ । ପାଇକମାନେ ରାଜସ୍ୱ ବୃଦ୍ଧିର ପ୍ରତିବାଦରେ ମେଳି କରିବାରୁ ଦେୱାନଙ୍କ ବିଶ୍ୱାସଘାତକତାରେ କ୍ଷୁବ୍ଧ ହୋଇ ପାଇକମାନେ ତାଙ୍କୁ ହତ୍ୟା କରିଥିଲେ । ଏହି ଗଡ଼ ଅଧୀନରେ ଶିଖର ପଡ଼ା, ଚନ୍ଦ୍ରଶେଖରବ୍ କାଭଟୀପାଟଣା, ଗୋବିନ୍ଦପୁର, ନୀଳକଣ୍ଠପୁର, ଛୋଟରାୟପୁ ଗୋପାଳପୁର ଓ ଯୋଡ଼ାପଡ଼ା ଗ୍ରାମ ଥିଲା ।

**ମାଣିକାଗୋଡ଼ା :** ଏହି ଗଡ଼କୁ ମାଣିକ୍ୟ ଗଡ଼ କହିଥାନ୍ତି । ଏହି ଗ[illegible] ଦଳ ବେହେରା ମୁସଲମାନ ସମ୍ପ୍ରଦାୟର । ଦଶହରା ପୂଜା ସମୟ ମୁସଲମାନ ଦଳବେହେରା ହାତରେ କୁଣ୍ଡେଇବଟୁ ପିନ୍ଧି ଠାକୁରାଣୀ [illegible] କରିଥାନ୍ତି । ମୁଣ୍ଡିଆପଡ଼ା ଘାଟୀ ସୁରକ୍ଷା କରିବାରେ ଏ ଗଡ଼ର ଦୁର୍ଗ ଅବଦା[illegible]

ଥିଲା । ଏହି ଗଡ଼ର ପାଇକ ଉଭୟ ଖଣ୍ଡାୟତ ଓ ମୁସଲମାନ । ଏହି ପ୍ରାଚୀନ ଗଡ଼ର ଧ୍ୱଂସାବଶେଷ ଏବେବି ପରିଲକ୍ଷିତ ହୁଏ ।

**ଗୁରୁଜଙ୍ଗ ଗଡ଼ :** ଖୋର୍ଦ୍ଧା ଓ ବଙ୍କଡ଼ା ମଧ୍ୟରେ ଗୁରୁଜଙ୍ଗ ଅବସ୍ଥିତ । ଏହି ଗୁରୁଜଙ୍ଗ ଗ୍ରାମର ଉତ୍ତର ପାର୍ଶ୍ୱରେ ଗଡ଼ ଗୁରୁଜଙ୍ଗ ଅବସ୍ଥିତ । ଗୁରୁଜଙ୍ଗ ନାମରେ ବା ଗଡ଼ଗୁରୁଜଙ୍ଗ ନାମରେ କୌଣସି ରାଜସ୍ୱ ଗ୍ରାମ ନାହିଁ । ଗୁରୁଜେଙ୍ଗ ଠାକୁରାଣୀଙ୍କ ନାମରେ ଗୁରୁଜଙ୍ଗ ନାମକରଣ ହୋଇଛି । ଏହାର ରାଜସ୍ୱ ନାମ ନରସିଂହ ପ୍ରସାଦଗଡ଼ । ଏହି ଗ୍ରାମରେ ବହୁଳ ଭାବରେ ଖଣ୍ଡାୟତ ପାଇକମାନେ ବାସ କରନ୍ତି । ଏହି ଗଡ଼ ଅଧୀନରେ ନୀଳକଣ୍ଠପୁର, ଇଟିତାବେଣୀପୁର, ମାନଗୋବିନ୍ଦପୁର, ଦୁର୍ଗାପୁର, ଜଗନ୍ନାଥପୁର, ଶେନ୍ଦୁରପୁର ଓ ବେଙ୍ଗିଟାଙ୍ଗି ଆଦି ଗ୍ରାମ ଅବସ୍ଥିତ ।

**ଗଙ୍ଗପଡ଼ା ଗଡ଼ :** ଖୋର୍ଦ୍ଧା ରାଜାଙ୍କର କେତୋଟି ପ୍ରଧାନ ଗଡ଼ ମଧ୍ୟରୁ ଏହା ଅନ୍ୟତମ । ପାଇକ ବିଦ୍ରୋହ ସମୟରେ ଏହି ଗଡ଼ର ଦଳବେହେରା ବଂଶର ଭାଗୁ ହରିଚନ୍ଦନ ଓ ଗୋପାଳ ଛୋଟରାୟ ବକ୍ସି ଜଗବନ୍ଧୁଙ୍କ ସହଯୋଗୀ ଥିଲେ ।

**ପରିଛଳଗଡ଼ :** ଏହି ଗଡ଼ ଖୋର୍ଦ୍ଧାର ପଶ୍ଚିମ ଦିଗରେ ଅବସ୍ଥିତ । ଏହାର ଅଧୀନରେ ଗୋବିନ୍ଦପୁର, ଲୋକିପୁର, ଗୋପାଳପୁର, ମେହରାପୁର,ଓରାଳପୁର, ଗୋପୀନାଥପୁର, ଦଳକ, ବଡ଼ ପରିଛଳ ଓ ବେହେଲି ଇତ୍ୟାଦି ଗ୍ରାମ ଥିଲା ।

**ଜୟମଙ୍ଗଳ ଗଡ଼ :** ଖୋର୍ଦ୍ଧାର ପଶ୍ଚିମରେ ଏହି ଗଡ଼ ଅବସ୍ଥିତ । ଏହି ଗଡ଼ର ଦଳବେହେରା ସାମନ୍ତ ଅଶ୍ୱାରୋହୀ ସେନାପତି ରୂପେ କାର୍ଯ୍ୟ କରିଥାନ୍ତି । ଖୋର୍ଦ୍ଧା-ବାଙ୍କୀ ଯୁଦ୍ଧ ସମୟରେ ତାଙ୍କର ଉଲ୍ଲେଖନୀୟ ଭୂମିକା ଥିବାରୁ ତାଙ୍କୁ ବାଙ୍କୀ ପଗଡ଼ି ଉପହାର ଦିଆଯାଇଥିଲା । ଏହି ଗଡ଼ ଅଧୀନରେ ଗୌଡ଼ପୁଟ, ଓଳସିଂହ, ସାରୁଆ ଓ ସାନ ନୂଆଗାଁ ଆଦି ଥିଲା ।

**ନରସିଂହ ପ୍ରସାଦ ଗଡ଼ :** ଗଜପତି ନରସିଂହ ଦେବଙ୍କ ନାମାନୁସାରେ ଏହି ଗଡ଼ର ନାମ ଏପରି ହୋଇଛି । ଏହି ଗଡ଼ ନିକଟରେ ହାତୀଶାଳ, ଘୋଡ଼ାଶାଳ, ଆଖଡ଼ାଶାଳ ଆଦିର ସଂକେତ ଥିବା ସହ ହାତୀଖମା ମଧ ରହିଥିଲା ।

**ବଡ଼ପାରି ଗଡ଼ :** ଖୋର୍ଦ୍ଧାର ଦକ୍ଷିଣ ଦିଗରେ ଏହି ଗଡ଼ ଅବସ୍ଥିତ । ଏହି ଗଡ଼ର ଦଳବେହେରା ରାଜାତୁଲ୍ୟ ସମ୍ମାନ ପାଉଥିଲେ । ତାଙ୍କ ଅଧୀନରେ ପାଞ୍ଚଶହ ପଦାତିକ, ପାଞ୍ଚଶହ ଅଶ୍ୱାରୋହୀ ସୈନ୍ୟ ଥିଲେ । ପାଇକ ବିଦ୍ରୋହ ସମୟରେ ବକ୍ସି ଜଗବନ୍ଧୁ ଏଠାରେ ଅନେକ ଦିନ ଆତ୍ମଗୋପନ କରିଥିଲେ । ତାଙ୍କ ଗଡ଼ର ଦଳବେହେରା ମାଧବ ଚନ୍ଦ୍ର ରାଉତରାୟଙ୍କ ଶ୍ୱଶୁର ଘର ଏହି ଗଡ଼ରେ ହୋଇଥିବାରୁ ତାଙ୍କ ଯୁଦ୍ଧପରେ ସେ ଏଠାକୁ ଆସି ଅନେକ ଦିନ ମଧ ଏଠାରେ ଆତ୍ମଗୋପନ କରିଥିଲେ ।

**ଭାଟପଡ଼ା ଗଡ଼ :** ଏହା ଖୋର୍ଦ୍ଧାର ଦକ୍ଷିଣରେ ବିଦ୍ୟମାନ । ଚିଲିକା ହ୍ରଦ ଉପକୂଳସ୍ଥ ସୋଲରି ନାମକ ପାହାଡ଼ର ଉତ୍ତର ପାର୍ଶ୍ୱର ଏକ ଶୃଙ୍ଗ ଉପରେ ଏହା ଅବସ୍ଥିତ । ଏହାକୁ ସମସ୍ତେ ପ୍ରାଚୀନ ଗଡ଼ ଭାବେ ଅଭିହିତ କରିଥାନ୍ତି । ସିଦ୍ଧେଶ୍ୱର ଓ ସିଦ୍ଧେଶ୍ୱରୀ ଦେବଦେବୀ ଗଡ଼ରେ ବିଦ୍ୟମାନ । ଭାଟି ଦଣ୍ଡଧାରୀ ଠାକୁର ଓ ଠାକୁରାଣୀଙ୍କ ସେବାକାର୍ଯ୍ୟ କରିଥାନ୍ତି । ଏହି ପୁରାତନ ଗଡ଼ର ଅନ୍ୟନାମ ଇନ୍ଦ୍ରାନ ଥିଲା । ପରବର୍ତ୍ତୀ ସମୟରେ ନୂତନ ଗଡ଼ ପର୍ବତର ପାଦଦେଶକୁ ଘୁଞ୍ଚି ଆସିଥିଲା ।

**ବେଗୁନିଆ ଗଡ଼ :** ବୋଲଡିଆ ପାହାଡ଼ ଓ ସୋଲରି ପାହାଡ଼ର ମଧ୍ୟବର୍ତ୍ତୀ ଭାଗରେ ଏହି ବେଗୁନିଆ ଗଡ଼ ଅବସ୍ଥିତ । ଏଠାରେ ବାଲିଆ, ପଲଟଳ ଓ ହରିପୁର ଇତ୍ୟାଦି ଗ୍ରାମ ରହିଛି । ଗଡ଼ର ମଧ୍ୟସ୍ଥଳରେ ବକ୍ସି ଜଗବନ୍ଧୁଙ୍କ ଦ୍ୱାରା ନିର୍ମିତ ଏକ ମଣ୍ଡପ, ଦୁର୍ଗ ମଧ୍ୟସ୍ଥଳରେ ଦୁର୍ଗର ଇଷ୍ଟଦେବୀ ଅଷ୍ଟଭୂଜା ଭଗବତୀ ଦେବୀ ସମେତ ପ୍ରାଚୀନ ଶିଳ୍ପ କଳା ଯୁକ୍ତ ଏକ ଭିନ୍ନ ମନ୍ଦିର ଓ ଶିବଲିଙ୍ଗ ରହିଛି ।

**ଖଜୁରିଆ ଗଡ଼ :** ଖୋର୍ଦ୍ଧାର ଦକ୍ଷିଣରେ ଥିବା ନିରାକାରପୁର ନିକଟରେ ଏହି ଗଡ଼ ବିଦ୍ୟମାନ । ଖଣ୍ଡାୟତ ଓ ମୁସଲମାନ ଉଭୟ ଏହି ଗଡ଼ର ପାଇକ ଅଟନ୍ତି । ଏହି ଗଡ଼ର ଦଳବେହେରା କାଶୀନାଥ ନରେନ୍ଦ୍ରଜିତ୍ ସିଂହ ଖୋର୍ଦ୍ଧା- ବାଙ୍କୀ ଯୁଦ୍ଧରୁ ରାମେଶ୍ୱରର ଦଳବେହେରାଙ୍କ ସହ ମିଶି ଭଗବତୀ ଠାକୁରାଣୀ ଓ ଦ୍ୱାର ନାରାୟଣୀ ଠାକୁରାଣୀଙ୍କୁ ଆଣିଥିଲେ । ରାମେଶ୍ୱର ଦଳବେହେରାଙ୍କ ବଂଶଜ ଭଗବତୀ ଠାକୁରାଣୀଙ୍କୁ ନିକଟସ୍ଥ ଗୋଳବାଇରେ ସ୍ଥାପିତ କରାଇଥିଲେ । ଠାକୁରାଣୀ ଏବେ ଗୋଳବାଇର ଅଧିଷ୍ଠାତ୍ରୀ ଦେବୀ । ଦ୍ୱାର ନାରାୟଣୀ ଠାକୁରାଣୀ ଖଜୁରିଆ ଗଡ଼ରେ ପୂଜା ପାଉଛନ୍ତି ।

ଉପରୋକ୍ତ ପ୍ରଧାନ ପ୍ରଧାନ ଗଡ଼ ବ୍ୟତୀତ ଅନ୍ୟଗୁଡ଼ିକ ହେଲା- ରଥପୁର, ବରଗଡ, ବିଶ୍ୱପାଳଗଡ଼, ଝାଉପଡ଼ା, କପିଳପ୍ରସାଦ, ପାତ୍ରପଡ଼ା, ଡାମ୍ବକୋଳି, ଛତ୍ରମା, ଲାଲସିଂହ, ଡୁମୁଡୁମା, ମାଣିଆବନ୍ଧ, ବାଙ୍କୋଇ, କୋରମାଟି, କଳାମାଟିଆ, କନ୍ଧଗଡ଼, ମଙ୍ଗଳାଯୋଡ଼ି, ଜରିପଡ଼ା, ରୋଡ଼ଙ୍ଗ, କରଣ, କାଇମାଟିଆ, ବରଣ୍ଡା, ନୂଆପଲ୍ଲୀ, ତରକାଇ, ସୋରଣଗଡ଼, ମାଟିଆପଡ଼ା, କୋକଳଗଡ଼, ବଙ୍ଗରୋ, ଅନ୍ଧାରୁଆ, ଦାରୁଠେଙ୍ଗ, ଭିଙ୍ଗାରୋ, କଳାପଥର, ନରାକୋଟ, ମୁଳଙ୍ଘର, ଗଙ୍ଗପଡ଼ା, ଜାମୁକୋଳିଗଡ଼, ସୁର୍ଜନପୁର, ଅନ୍ଧାରିଗଡ଼, କମାରସୁଆଁ, ପାଇକରାପୁର, ପାତ୍ରପଡ଼ା, ଘାଟିକିଆ ଗଡ଼, ମୁଗଗିରା ଗଡ଼, କୁହୁଡ଼ି ଗଡ଼ ଓ କାଳୁପଡ଼ା ଗଡ଼ । ଏହି ସବୁ ଗଡ଼ର ବିସ୍ତୃତ ତଥ୍ୟ ଯଥେଷ୍ଟ ପରିମାଣରେ ଉପଲବ୍ଧ ହେଉନାହିଁ । ମାତ୍ର ଏସବୁ ଗଡ଼ର ବିଶେଷତ୍ୱ ଏହି ଯେ ଦୁର୍ଗପତି, ଦଳବେହେରା ବା ଗଡ଼ାଧିଶ (ମୁସଲମାନ ବା ଖଣ୍ଡାୟତ)ମାନେ ରହି ପ୍ରତ୍ୟେକ ଗଡ଼ର ସୁରକ୍ଷା ଦାୟିତ୍ୱ ନେଉଥିଲେ । ବିଦେଶୀ ଶତ୍ରୁମାନଙ୍କୁ ପ୍ରତିରୋଧ କରି ନିଜ ରାଜ୍ୟକୁ ରକ୍ଷା କରିବା ଥିଲା ଏହି ସବୁ ଗଡ଼ର ମୁଖ୍ୟ କାର୍ଯ୍ୟ । ଖୋର୍ଦ୍ଧାର ଏସବୁ ଗଡ଼ କେବଳ ଇତିହାସ ଦୃଷ୍ଟିରୁ ନୁହେଁ, ଖୋର୍ଦ୍ଧା ରାଜ୍ୟର ପାଇକ, ଦଳେଇ, ଦଳବେହେରା ଓ ସାମନ୍ତମାନଙ୍କ ବୀରତ୍ୱର ସ୍ମାରକୀ ହୋଇ ରହିବ ।

ସାରା ଓଡ଼ିଶାରେ ଖୋର୍ଦ୍ଧାର ଏକ ନିଜସ୍ୱ ଐତିହ୍ୟ ଓ ପରମ୍ପରାର ସ୍ୱତନ୍ତ୍ର ସ୍ଥାନ ଥିଲା । ଏହାର ପୃଷ୍ଠଭୂମି ହେଉଛି ଖୋର୍ଦ୍ଧା ଭୋଇ ରାଜବଂଶ କାଳର ସମୃଦ୍ଧ ଇତିହାସ । ଏହାକୁ ଦୀର୍ଘ ଅଢ଼େଇ ଶହ ବର୍ଷବ୍ୟାପୀ ଓଡ଼ିଶାର ଇତିହାସ ବୋଲି କୁହାଯାଏ । ଓଡ଼ିଆ ଜାତିର ଆରାଧ୍ୟ ଦେବତା ଓ ପ୍ରାଣ ପ୍ରଦୀପ ସ୍ୱୟଂ ଶ୍ରୀଜଗନ୍ନାଥଙ୍କ ଅସ୍ତିତ୍ୱ ସହିତ ସେ ଇତିହାସ ଓତପ୍ରୋତ ଭାବେ ଜଡ଼ିତ । ତେଣୁ ଖୋର୍ଦ୍ଧାର ସଂସ୍କୃତି ହିଁ ଶ୍ରୀଜଗନ୍ନାଥ ସଂସ୍କୃତି ।

*ଇତିହାସ ବିଭାଗ, ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ, କାଇପଦର, ଖୋର୍ଦ୍ଧା*

# ଗଞ୍ଜାମ ଜିଲ୍ଲାରେ ସ୍ୱାଧୀନତା ସଂଗ୍ରାମ

● ଶ୍ରୀ ମାଗୁଣି ଦାଶ

ଯୁଗେ ଯୁଗେ ଗଞ୍ଜାମ ଜିଲ୍ଲାବାସୀ ନିଜର ସ୍ୱାଧୀନତା ରକ୍ଷା କରିବା ପାଇଁ ବିଦେଶୀ ଶାସନ ବିରୁଦ୍ଧରେ ସଂଗ୍ରାମ କରି ଇତିହାସ ପୃଷ୍ଠାରେ ନିଜର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଯାଇଅଛନ୍ତି । ଇଂରେଜ ଶାସନ ପୂର୍ବରୁ ଓ ଇଂରେଜ ଶାସନ ସମୟରେ ସ୍ୱାଧୀନତା ସଂଗ୍ରାମକୁ ଗଞ୍ଜାମର ଦାନ ଉଲ୍ଲେଖଯୋଗ୍ୟ ।

ଇଂରେଜ ଶାସନ ପୂର୍ବରୁ ଗଞ୍ଜାମ ଜିଲ୍ଲା ନିର୍ଜନ ସରକାର ଅଧୀନରେ ଥିଲା । ୧୭୬୬ ମସିହାରେ ନିର୍ଜନ ସରକାର ଇଂରେଜ ଶାସନାଧୀନ ହେଲା । ସେହି ବର୍ଷଠାରୁ ଗଞ୍ଜାମରେ ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହର ନିଆଁ ଜଳି ଉଠିଲା ।

ପାରଳାଖେମୁଣ୍ଡି, ଘୁମୁସର, ମହୁରୀ, ଖଲିକୋଟ, ସୁରଙ୍ଗୀ ପ୍ରଭୃତି ଦେଶୀୟ ରାଜ୍ୟର ଦେଶପ୍ରେମୀ ଅଧିବାସୀମାନେ ବିଦେଶୀ ଶାସନ ବିରୁଦ୍ଧରେ ସଶସ୍ତ୍ର ବିଦ୍ରୋହରେ ଆତ୍ମୋତ୍ସର୍ଗ କରିଥିଲେ । ୧୭୬୭ ମସିହାରେ ପାରଳାଖେମୁଣ୍ଡିର ଶାସକ ନାରାୟଣ ଗଜପତି ଦେଓ ଇଂରେଜ ସରକାରଙ୍କ ଖଜଣା ନୀତି ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଥିଲେ । ତାହାହିଁ ଥିଲା ବିଦେଶୀ ଶାସନ ବିରୁଦ୍ଧରେ ଗଞ୍ଜାମ ଜିଲ୍ଲାବାସୀଙ୍କର ସର୍ବପ୍ରଥମ ସଂଗ୍ରାମ ବା ବିଦ୍ରୋହ । ସେହିବର୍ଷ ଇଷ୍ଟଇଣ୍ଡିଆ କମ୍ପାନୀ ଦ୍ୱାରା ନିଯୁକ୍ତ କଟ୍ସ ଫୋର୍ଡ଼ଙ୍କ କର୍ତ୍ତୃତ୍ୱକୁ ନାରାୟଣ ଦେବ ଅସ୍ୱୀକାର କରିବା ଫଳରେ ଯେଉଁ ସଂଗ୍ରାମ ଆରମ୍ଭ ହୋଇଥିଲା, ତାହା ୧୮୩୪ ମସିହା ପର୍ଯ୍ୟନ୍ତ ଚାଲୁ ରହି ଦେଶର ଦୀର୍ଘତମ ବିଦ୍ରୋହ ଭାବରେ ଇତିହାସରେ ଲିପିବଦ୍ଧ ହୋଇ ରହିଅଛି ।

ସ୍ୱାଧୀନତା ସଂଗ୍ରାମର ମୂଳ ଉଦ୍ଦେଶ୍ୟ ଥିଲା ବିଦେଶୀ ଶାସନ ବିରୁଦ୍ଧରେ ବିଦ୍ରୋହ ବା ବିଦେଶୀ ଶାସନ ପ୍ରବର୍ତ୍ତିତ ଆଇନର ଅମାନ୍ୟ । ଭାରତୀୟମାନଙ୍କ ସ୍ୱାଧୀନତାକୁ ବିଦେଶୀ ଶାସକମାନେ ଅପହରଣ କରିନେଇ ଥିବାରୁ ବିଦେଶୀ ସାମ୍ରାଜ୍ୟ ସ୍ଥାପନ ବିରୁଦ୍ଧରେ ଗଞ୍ଜାମ ଜିଲ୍ଲାବାସୀ ସଂଗ୍ରାମ କରିବାକୁ ଆଗେଇ ଆସିଥିଲେ ।

ପାରଳାଖେମୁଣ୍ଡି ବିଦ୍ରୋହ ଦମନ କରିବା ପାଇଁ ଆଠଜଣ ବ୍ରିଟିଶ ସେନାପତିଙ୍କୁ ଥରକୁ ଥର ଇଂରେଜ ସରକାର ପ୍ରେରଣ କରିଥିଲେ । ସେମାନେ ବିଦ୍ରୋହ ଦମନ କରିବା ପାଇଁ ଆପ୍ରାଣ ଉଦ୍ୟମ କରି ଅକୃତକାର୍ଯ୍ୟ ହୋଇପଡ଼ିଥିଲେ । ୧୭୯୯ ମସିହାରେ ନାରାୟଣ ଦେଓଙ୍କ ପୁତ୍ର ଗଜପତି ଦେଓ ବିଦ୍ରୋହର ନେତୃତ୍ୱ ନେଇଥିଲେ । ଫଳରେ ଇଂରେଜ ସରକାର ତାଙ୍କୁ ଓ ତାଙ୍କର ପୁଅ, ପୁତୁରା ସମସ୍ତଙ୍କୁ ବନ୍ଦୀ କଲେ । ଏଥିରେ ପାରଳାଖେମୁଣ୍ଡିର ପ୍ରଜାମାନେ ପାଇକ, ଦୋରାବିଶୋୟୀ ଇତ୍ୟାଦି ଉଦ୍ୟକ୍ତ ହୋଇ ଗଜପତି ଦେଓଙ୍କ ଭାଇ ଜଗନ୍ନାଥ ଦେଓଙ୍କ ନେତୃତ୍ୱରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ ଚଳାଇଲେ । ବିଦ୍ରୋହର ନିଆଁ କେତେକି ପର୍ଯ୍ୟନ୍ତ ବ୍ୟାପି ଗଲା । ବିପ୍ଳବୀ ଜଗନ୍ନାଥ ଗଜପତିଦେଓ କଲେକ୍ଟର ସ୍ମିଟଙ୍କର ସୈନ୍ୟବାହିନୀକୁ ବହୁବାର ପରାସ୍ତ କରି ବିପ୍ଳବକୁ ଅତ୍ୟନ୍ତ ତେଜିୟାନ କରି ରଖିଥିଲେ । ତାଙ୍କ ସହଯୋଗୀ ପାଇକ ସର୍ଦ୍ଦାର ଲକ୍ଷ୍ମୀନୃସିଂହ ପାତ୍ର ବ୍ରିଟିଶ୍ ସେନାପତି ଯଙ୍ଗସନଙ୍କୁ ବଧ କରି ଅପୂର୍ବ ସାହସ ପ୍ରଦର୍ଶନ କରିଥିଲେ ।

ବ୍ରିଟିଶ ସୈନ୍ୟମାନଙ୍କ ଆକ୍ରମଣ ତୀବ୍ର ହେବା ପରେ ଜଗନ୍ନାଥ ଗଜପତି ରାଜ୍ୟ ଛାଡ଼ି ଜଙ୍ଗଲକୁ ପଳାଇ ଆତ୍ମଗୋପନ କରିଥିଲେ । ୧୮୦୪ ମସିହାରେ ଇଂରେଜ ସୈନ୍ୟମାନେ ତାଙ୍କୁ ସୋରଡ଼ାଠାରେ ଧରି ମସୁଲିପଟମ୍ ଦୁର୍ଗକୁ ପଠାଇ ସେଠାରେ ବନ୍ଦୀ କରି ରଖିଲେ ।

ଇଂରେଜ ସରକାର ଲୋକଙ୍କ ଦାବୀ ପୂରଣ କରିବାରୁ ବିଦ୍ରୋହ ଶାନ୍ତ ହୋଇଥିଲା । ୧୮୩୧ ମସିହାରେ ପାରଳାଖେମୁଣ୍ଡିର ବିଶୋୟୀ ଓ ପାଇକମାନେ ପୁନର୍ବାର ବିଦ୍ରୋହ କଲେ । ବିଦ୍ରୋହ ଗୁରୁତର ଆକାର ଧାରଣ କରିବାରୁ ଇଂରେଜ ସରକାର ଜର୍ଜ ରସେଲଙ୍କୁ ସ୍ପେଶାଲ କମିଶନର ରୂପେ ନିଯୁକ୍ତି ଦେଇ ବିଦ୍ରୋହ ଦମନ କରିବାକୁ ପଠାଇଲେ । ଜର୍ଜ ରସେଲ ଏଥିରେ କୃତକାର୍ଯ୍ୟ ହୋଇଥିଲେ । ୧୮୩୪ ମସିହା ବେଳକୁ ବିଦ୍ରୋହ ସମ୍ପୂର୍ଣ୍ଣ ରୂପେ ଦମନ ହୋଇପାରିଥିଲା । ଏହି ବିଦ୍ରୋହରେ ଭାଗ ନେଇଥିବା ପନ୍ଦର ଜଣଙ୍କୁ ଫାଶୀ ଓ ବାରଜଣଙ୍କୁ ଯାବଜ୍ଜୀବନ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା ।

ପାରଳାଖେମୁଣ୍ଡି ବିଦ୍ରୋହ ଚାଲିଥିବାବେଳେ ଖଲିକୋଟ, ମହୁରୀ ଓ ସୁରଙ୍ଗୀ ପ୍ରଭୃତି ଦେଶୀୟ ରାଜ୍ୟ ବା ଜମିଦାରୀରେ ବିଦ୍ରୋହ ଆରମ୍ଭ ହୋଇଥିଲା । କିନ୍ତୁ ସେମାନଙ୍କର ବିଦ୍ରୋହ ଇଂରେଜ ସରକାର ସହଜରେ ଦମନ କରି ଦେଇଥିଲେ । ଖଲିକୋଟ ରାଜା ଇଂରେଜଙ୍କ ବଶ୍ୟତା ସ୍ୱୀକାର କରିଥିଲେ ।

୧୭୫୪ ମସିହାରେ ଘୁମୁସରରେ କୃଷ୍ଣଭଞ୍ଜ ରାଜା ହେଲେ । ୧୭୫୭ ମସିହାରେ ଫରାସୀ ଜେନେରାଲ ମୋନସିଅର ବୁସିଙ୍କର ଖଜଣା ଆଦାୟ ନୀତିରେ ରାଜା କୃଷ୍ଣଭଞ୍ଜ ବିଦ୍ରୋହ କରିଥିଲେ ଏବଂ କର ଦେବାକୁ ମନା କରି ଦେଇଥିଲେ । ଜେନେରାଲ ବୁସି ଓ ରାଜା କୃଷ୍ଣଭଞ୍ଜଙ୍କର ସୈନ୍ୟମାନଙ୍କ ମଧ୍ୟରେ ବାଉଁଶ ଜଙ୍ଗଲ ମଧ୍ୟରେ ଘମାଘୋଟ ଲଢ଼େଇ ହେଲା । ଯୁଦ୍ଧରେ ୪ଠଜଣ ଫରାସୀ ସୈନ୍ୟ ଓ ବହୁ ସଂଖ୍ୟକ ଫରାସୀ ବାହିନୀର ଭାରତୀୟ ପାଇକ ନିହତ ହେଲେ । ଫରାସୀମାନେ ବହୁ ସଂଖ୍ୟାରେ ମୃତାହତ ହେବାପରେ ରାଜା କୃଷ୍ଣଭଞ୍ଜଙ୍କ ସହିତ ବୁସି ଶାନ୍ତି ଚୁକ୍ତି ସମ୍ପାଦନ କଲେ ।

କୃଷ୍ଣଭଞ୍ଜଙ୍କ ପରେ ତାଙ୍କ ପୁତ୍ର ତ୍ରିବିକ୍ରମ ଭଞ୍ଜ ଓ ଲକ୍ଷ୍ମଣ ଭଞ୍ଜ ମଧ୍ୟ ଇଂରେଜ ସରକାରଙ୍କ ଖଜଣା ନୀତିର ବିରୋଧ କରିଥିଲେ । କୃଷ୍ଣଭଞ୍ଜ ରାଜା ହୋଇ ଥିବାବେଳେ ବାର୍ଷିକ ତିରିଶ ହଜାର ଟଙ୍କା ଖଜଣା ଦେଉଥିଲେ । ଦୁଇଭାଇଙ୍କ ମଧ୍ୟରେ ରାଜଗାଦି ନେଇ ସଂଘର୍ଷ ହେବାରୁ

ଶାସନଭାର ତ୍ରିବିକ୍ରମ ଭଞ୍ଜ ରାଜସ୍ୱ ବଢ଼ାଇ ପଚାଶ ହଜାର ଟଙ୍କା ଦେବାକୁ ସ୍ୱୀକାର କଲେ । କିନ୍ତୁ ସେ ରାଜସ୍ୱ ନିୟମିତ ଭାବରେ ଦାଖଲ କଲେ ନାହିଁ । ସେ ସରକାରୀ ହାକିମମାନଙ୍କ ବାରମ୍ବାର ତାଗିଦ ସତ୍ତ୍ୱେ ସରକାରୀ ସର୍ତ୍ତ ନମାନିବାରୁ ୧୭୬୮ ମସିହାରେ ଇଂରେଜ ସରକାର ତାଙ୍କ ବିରୁଦ୍ଧରେ ସାମରିକ ଅଭିଯାନ କରିବାକୁ ସ୍ଥିର କଲେ ।

କିନ୍ତୁ ରାଜା ତ୍ରିବିକ୍ରମ ଭଞ୍ଜ ନିକଟବର୍ତ୍ତୀ ବଉଦ ରାଜ୍ୟରେ ଆଶ୍ରୟ ଗ୍ରହଣ କରି ଇଂରେଜଙ୍କ ବିରୁଦ୍ଧରେ ପ୍ରବଳ ଯୁଦ୍ଧ କଲେ । ଯୁଦ୍ଧରେ ତ୍ରିବିକ୍ରମ ଭଞ୍ଜଙ୍କ ଜାନୁରେ ଶତ୍ରୁପକ୍ଷର ବନ୍ଧୁକ ଗୁଳି ଭେଦି ସେ ଅଶକ୍ତ ହୋଇଥିଲେ ମଧ ଇଂରେଜ ସରକାର ତାଙ୍କୁ କୌଣସି ମତେ ଧରି ପାରିନଥିଲେ । ବଡ଼ ଭାଇ ଲକ୍ଷ୍ମଣ ଭଞ୍ଜଙ୍କ ସହାୟତାରେ ଇଂରେଜ ସୈନ୍ୟମାନେ ବିଜୟୀ ହେଲେ ଏବଂ ତ୍ରିବିକ୍ରମ ଭଞ୍ଜ ଗାଦିଚ୍ୟୁତ ହେଲେ । ଲକ୍ଷ୍ମଣ ଭଞ୍ଜ ଏକଲକ୍ଷ ଟଙ୍କା ରାଜସ୍ୱ ଦେବାକୁ ସମ୍ମତ ହୋଇ ଘୁମୁସରରେ ରାଜା ହେଲେ । ସେହିଦିନଠାରୁ ଅସନ୍ତୋଷର ବାତ୍ୟା ପ୍ରବାହିତ ହେବାକୁ ଲାଗିଲା ।

ଲକ୍ଷ୍ମଣ ଭଞ୍ଜଙ୍କ ପରେ ତାଙ୍କ ପୁତ୍ର ଶ୍ରୀକର ଭଞ୍ଜ ୧୭୯୦ ମସିହାରେ ଘୁମୁସର ସିଂହାସନ ଆରୋହଣ କଲେ । ସେ ଇଂରେଜ ସରକାରଙ୍କ କରଭାର ଓ ଘୁମୁସରର ଆର୍ଥିକ ଅବସ୍ଥା ଦେଖି ୧୭୯୯ ମସିହାରେ ନିଜପୁତ୍ର ଧନଞ୍ଜୟ ଭଞ୍ଜ (୨ୟ)ଙ୍କୁ ରାଜ୍ୟଭାର ଅର୍ପଣ କରି ତୀର୍ଥାଟନରେ ଚାଲିଗଲେ । ୧୮୧୯ ମସିହାରେ ତୀର୍ଥାଟନରୁ ଫେରି ପୁଣି ଘୁମୁସର ଶାସନ ଭାର ହାତକୁ ନେଲେ । ସେ ରାଜ୍ୟର ଆର୍ଥିକ ଦୁରବସ୍ଥା ଦେଖି ସରକାରଙ୍କୁ ରାଜସ୍ୱ ଦେଲେ ନାହିଁ । ଗଞ୍ଜାମର ଅନ୍ୟ କେତେକ ଜମିଦାରଙ୍କ ସହିତ ମିଶି ଇଂରେଜଙ୍କ ସହିତ ବିଦ୍ରୋହ କଲେ । ରାଜାମାନଙ୍କର ସମ୍ମିଳିତ ବିଦ୍ରୋହକୁ ପଣ୍ଡ କରିବା ପାଇଁ ସୈନ୍ୟବଳ ସହିତ ଲେଫଟନାଣ୍ଟ କର୍ଣ୍ଣେଲ ସ୍ମିଥ୍‌ଙ୍କୁ ଇଂରେଜ ସରକାର ଗଞ୍ଜାମକୁ ପଠାଇଲେ । ଶେରଗଡ଼ଠାରେ ପ୍ରବଳ ଯୁଦ୍ଧ ହେଲା । ସେଥିରେ ଶେରଗଡ଼ ରାଜା ବା ଜମିଦାର ମୃତ୍ୟୁ ମୁଖରେ ପଡ଼ିଲେ । ଶ୍ରୀକର ଭଞ୍ଜଙ୍କୁ ବିଦ୍ରୋହୀ ଆଖ୍ୟା ଦିଆଯାଇ ତାଙ୍କୁ ଧରିବା ପାଇଁ ଦଶ ହଜାର ଟଙ୍କା ପୁରସ୍କାର ଘୋଷଣା କଲେ । ମୋଟା ପରିମାଣ ପୁରସ୍କାର ଘୋଷଣା ସତ୍ତ୍ୱେ ତାଙ୍କର ପ୍ରଜା ଓ ଅନୁଚରମାନେ ତାଙ୍କୁ ଧରାଇ ଦେବା ପାଇଁ ବିଶ୍ୱାସଘାତକତା କରିନଥିଲେ ।

ସରକାର ଶ୍ରୀକର ଭଞ୍ଜଙ୍କୁ ଗାଦିଚ୍ୟୁତ କରି ତାଙ୍କ ପୁତ୍ର ଧନଞ୍ଜୟ ଭଞ୍ଜଙ୍କୁ ପୁଣି ଘୁମୁସରରେ ରାଜା କଲେ । ୧୮୩୫ ମସିହାରେ ରାଜା ଧନଞ୍ଜୟ ଭଞ୍ଜ ସରକାରଙ୍କ ଦାବୀ ପୂରଣ କରି ନପାରିବାରୁ ଇଂରେଜ ସୈନ୍ୟ ଘୁମୁସର ଅଧିକାର କଲେ । ଏଥିରେ ଉତ୍ତ୍ୟକ୍ତ ହୋଇ ଘୁମୁସର ପ୍ରଜାମାନେ, ପାଇକ, ନାଇକ, ସର୍ଦ୍ଦାର, ବିଶୋୟୀ ଇତ୍ୟାଦି ଜଗନ୍ନାଥ ଭଞ୍ଜ, ବୃନ୍ଦାବନ ଭଞ୍ଜ, ଦୋରା ବିଶୋୟୀଙ୍କ ନେତୃତ୍ୱରେ ବିଦ୍ରୋହ କଲେ । ଏମାନଙ୍କୁ ଓ ଅନ୍ୟ ଯେଉଁମାନେ ବିଦ୍ରୋହରେ ଯୋଗ ଦେଇଥିଲେ ସେମାନଙ୍କୁ ଧରାଇ ଦେଲେ ପୁରସ୍କାର ନିମ୍ନ ପ୍ରକାର ଦିଆଯିବ ବୋଲି ସରକାର ଘୋଷଣା କଲେ । ସେମାନେ ହେଲେ- ବୃନ୍ଦାବନ ଭଞ୍ଜ, ଟ.୫୦୦୦, ହାତିରାମ ଟ.୫୦୦, ବାହୁବଳେନ୍ଦ୍ର ଟ,୫୦୦, ନାହିନ ସିଂହ ଟ.୫୦୦ । ଏମାନଙ୍କ ଛଡ଼ା ମଧ୍ୟ ଉଙ୍କ. ଛଣାଣ ସିଂହ, ଚକ୍ରି ବିଶୋୟୀ, ଶ୍ୟାମ ବିଶୋୟୀ ପ୍ରଭୃତି ୧୪୬ ଜଣ ବୀର ବିଦ୍ରୋହରେ ଯୋଗ ଦେଇଥିଲେ । ଶେଷରେ ଦୋହରା ବିଶୋୟୀଙ୍କ ସୁଯୋଗ୍ୟ ପୁତ୍ର ଚକ୍ର ବିଶୋୟୀ ସମଗ୍ର ଘୁମୁସରରେ ବିଦ୍ରୋହର ନିଆଁ ଜଳାଇ ରଖିଥିଲେ ।

ଘୁମୁସର ରାଜା ଧନଞ୍ଜୟଙ୍କ ପ୍ରତି ଇଂରେଜମାନେ ଅନ୍ୟାୟ ନୀତି ଅବଲମ୍ବନ କରି ତାଙ୍କୁ ରାଜଗାଦିରୁ ବିତାଡ଼ିତ କରିଥିବାରୁ ମର୍ମାହତ ହୋଇ ଚକ୍ର ବିଶୋୟୀଙ୍କ ନେତୃତ୍ୱରେ କନ୍ଧମାନେ ଏକତ୍ରିତ ହୋଇ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ଅବଶ୍ୟ ତାଙ୍କର ବିଦ୍ରୋହ ସଫଳ ହୋଇ ପାରିନଥିଲା । ଚକ୍ର ବିଶୋୟୀ ସଂଗ୍ରାମକୁ ଅବ୍ୟାହତ ରଖି ସେମାନଙ୍କ ମେରୁଦଣ୍ଡ ଦୋହଲାଇ ଦେଇଥିଲେ । ୧୮୫୫ ମସିହା ପର୍ଯ୍ୟନ୍ତ ଏହି ବିଦ୍ରୋହ ଲାଗି ରହିଥିଲା । ଘୁମୁସର ମାଳ ଅଞ୍ଚଳରେ ମଧ ବହୁତ ଦିନ ଧରି ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହର ନିଆଁ ଜଳି ଉଠିଥିଲା । "Chakra Bisoyi the Great leader of the Khonds" ବୋଲି ଇଂରେଜମାନେ ମାଡ୍ରାସ ରେକର୍ଡ଼ରେ ଉଲ୍ଲେଖ କରିଅଛନ୍ତି ।

ଚକ୍ର ବିଶୋୟୀଙ୍କୁ ଧରିବା ପାଇଁ ଇଂରେଜମାନେ ପ୍ରବଳ ଉଦ୍ୟମ କରିଥିଲେ । ତାଙ୍କୁ ଧରାଇ ଦେଲେ ପୁରସ୍କାର ଦିଆଯିବ ବୋଲି ଘୋଷଣା କରିଥିଲେ । ତାଙ୍କୁ ବିଭିନ୍ନ ଲୋଭ ଦେଖାଇ ଥିଲେ । ଚକ୍ର ବିଶୋୟୀ ନିଜର ସ୍ୱାର୍ଥ ପାଇଁ ଲଢ଼େଇ କରୁ ନଥିଲେ । ସେ ନିଜ ଦେଶ ଓ ଜାତି ପାଇଁ ଏବଂ ନିଜ ରାଜ୍ୟର ରାଜାଙ୍କ ପାଇଁ ବିଦ୍ରୋହ କରୁଥିଲେ । ବହୁତ ଚେଷ୍ଟା ପରେ ମଧ ଇଂରେଜ ସର୍କାର ତାଙ୍କୁ ଧରି ପାରିନଥିଲେ । ସେ କେଉଁଆଡ଼େ ଗଲେ କେହି କହି ପାରିଲେ ନାହିଁ ।

ଘୁମୁସରର ଜମିଦାର, ଦୋରା ବିଶୋୟୀ, ପାଇକ, ନାଇକ ଓ ସର୍ଦ୍ଦାରମାନେ ଇଂରେଜ ଶାସନ ବିରୁଦ୍ଧରେ ଦୀର୍ଘ ୭୦ବର୍ଷ କାଳ ଲଢ଼ିଥିଲେ । ବିଦେଶୀ ଶାସନ ବିରୁଦ୍ଧରେ ଲଢ଼େଇ କରିବାକୁ ଯାଇ ସେମାନଙ୍କୁ ବହୁତ ନିର୍ଯାତନା ଭୋଗ କରିବାକୁ ପଡ଼ିଛି । ଅନେକ ଦୀର୍ଘ କାରାଦଣ୍ଡ ଭୋଗକରି, ଫାଶୀ କାଠରେ ଝୁଲିଛନ୍ତି । ଗଞ୍ଜାମର ସେହି ବୀରମାନେ କେବଳ ଓଡ଼ିଶାର ନୁହେଁ, ସମଗ୍ର ଭାରତରେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ଯ୍ୟାୟର ଅନ୍ତର୍ଭୁକ୍ତ କହିଲେ ଅତ୍ୟୁକ୍ତି ହେବନାହିଁ ।

## କଂଗ୍ରେସ ଓ ସ୍ୱାଧୀନତା ସଂଗ୍ରାମ

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଯେପରି କଂଗ୍ରେସରୂପୀ ଗଙ୍ଗାଙ୍କୁ ଉତ୍କଳକୁ ଆଣିଥିଲେ, ସେହିପରି ନିରଞ୍ଜନ ପଟ୍ଟନାୟକ ଗଞ୍ଜାମକୁ କଂଗ୍ରେସରୂପୀ ଗଙ୍ଗାଙ୍କୁ ଆଣିଥିଲେ । ସେ ଗଞ୍ଜାମର ଘରେ ଘରେ କଂଗ୍ରେସ ବାର୍ତ୍ତା ପ୍ରଚାର, ଅଳଟ ପ୍ରଚାର ସଙ୍ଗକୁ ସୂତାକଟା, ଲୁଣମରା ଇତ୍ୟାଦି ପ୍ରଚାର କରିଥିଲେ ।

୧୮୮୫ ମସିହାରେ ଭାରତ ଜାତୀୟ କଂଗ୍ରେସ ପ୍ରତିଷ୍ଠିତ ହୋଇଥିଲା । ଏହାର ପ୍ରଥମ ଅଧିବେଶନ ବମ୍ବେଠାରେ ଅନୁଷ୍ଠିତ ହୋଇଥିଲା । ଭାରତର ସବୁ ପ୍ରାନ୍ତରୁ ପ୍ରତିନିଧିମାନେ ଏଥିରେ ଯୋଗ ଦେଇଥିଲେ । ଏଥିରେ ବ୍ରହ୍ମପୁରର ଆଇନଜୀବୀ ବିଶ୍ୱେଶ୍ୱର ଅୟାର ଯୋଗ ଦେଇଥିଲେ । କଂଗ୍ରେସର ସେହି ପ୍ରଥମ ଅଧିବେଶନରେ ପାରଳାଖେମୁଣ୍ଡି ପରିବାରର ସୁନାମଧନ୍ୟ ସ୍ୱର୍ଗୀୟ କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବଙ୍କ ପିତୃବ୍ୟ ପଦ୍ମନାଭ ନାରାୟଣ ଦେବ ଅନ୍ୟ କେତେକ

ସାଥୀଙ୍କୁ ଧରି ସେହି ଅଧିବେଶନରେ ଯୋଗ ଦେଇଥିଲେ ।

୧୯୨୦ ମସିହା ଡିସେମ୍ବର ମାସରେ ନାଗପୁରଠାରେ କଂଗ୍ରେସର ଅଧିବେଶନ ବସିଥିଲା । ଏଥିରେ ପରାଧୀନ ଭାରତର ମୁକ୍ତିର ଧ୍ରୁବତାରାରୂପେ ଆବିର୍ଭାବ ହେଲେ ଜାତିର ଜନକ ମହାତ୍ମାଗାନ୍ଧୀ । ଏହି ପାଠରୁ ହିଁ ଅସହଯୋଗ ଆନ୍ଦୋଳନର ବଜ୍ରନିର୍ଘୋଷବାଣୀ ପ୍ରଚାରିତ ହୋଇ ଭାରତର ପ୍ରତିକୋଣରେ ପ୍ରତିଧ୍ୱନିତ ହେଲା ଓ କଂଗ୍ରେସ ଲୋକଶକ୍ତିର ଏକମାତ୍ର ଆୟୁଧ ରୂପେ ପରିଗଣିତ ହେଲା । ଉକ୍ତ ଅଧିବେଶନରେ ଓଡ଼ିଶାରୁ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ୩୦ଜଣ ପ୍ରତିନିଧି ଯୋଗଦାନ କରିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ସଂଗ୍ରାମୀ ଯୁବକ ନିରଞ୍ଜନ ପଟ୍ଟନାୟକ ।

୧୯୨୧ ମସିହା ମାର୍ଚ୍ଚ ମାସରେ ଓଡ଼ିଶାରେ କଂଗ୍ରେସ କମିଟି ଗଠିତ ହେଲା । ସେହିବର୍ଷ ମହାତ୍ମାଗାନ୍ଧୀ କଟକ ଆସିଥିଲେ । ନିରଞ୍ଜନ ବାବୁ ମାର୍ଚ୍ଚ ୨୩ ତାରିଖ ଦିନ ମହାତ୍ମାଗାନ୍ଧୀଙ୍କୁ କଟକଠାରେ ସାକ୍ଷାତ କରିଥିଲେ ।

ନିରଞ୍ଜନ ବାବୁ ତାଙ୍କର ବନ୍ଧୁ ଚକ୍ରପାଣି ପ୍ରଧାନଙ୍କ ସହିତ ମିଶି ଇଂରେଜୀରେ ଦେଶ ମିଶ୍ରଣ ବା ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ "Oriya Movement" ନାମରେ ଯେଉଁ ବହିଟି ଲେଖିଥିଲେ, ସେ ବହିଟି ମହାତ୍ମାଗାନ୍ଧୀ ପୂର୍ବରୁ ପଢ଼ି ଉଚ୍ଚ ମତପୋଷଣ କରିଥିଲେ । ସେହି ପୁସ୍ତକର ରଚୟିତା ନିରଞ୍ଜନ ବାବୁଙ୍କୁ ଦେଖି ମହାତ୍ମାଗାନ୍ଧୀ ବିସ୍ମିତ ହେଲେ । ସେତେବେଳକୁ ନିରଞ୍ଜନବାବୁଙ୍କ ବୟସ ମାତ୍ର ୨୫ବର୍ଷ । ଏତେ କମ୍ ବୟସର ଜଣେ ଯୁବକ ଏଭଳି ଭାବରେ ଗବେଷଣାତ୍ମକ ଗ୍ରନ୍ଥ ରଚନା କରି ପାରିଥିବା ଯୋଗୁଁ ଗାନ୍ଧିଜୀ ସାଧୁବାଦ ଜଣାଇବା ସଙ୍ଗେ ସଙ୍ଗେ ଦେଶପାଇଁ ନିରଞ୍ଜନବାବୁଙ୍କ ଠାରୁ ଅନେକ କିଛି ଆଶା କରିଥିଲେ ।

ସେଇଥର ମହାତ୍ମାଗାନ୍ଧୀ ବ୍ରହ୍ମପୁର ଆସିଥିଲେ । ନିରଞ୍ଜନବାବୁ ଗଞ୍ଜାମ ଜିଲ୍ଲାର ମୁଖ୍ୟ କଂଗ୍ରେସ କର୍ମୀ ଥିଲେ । ତେଣୁ ୧୯୨୧ ଜୁନ୍ ମାସରେ ଯେତେବେଳେ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟି ଗଠିତ ହେଲା, ସେତେବେଳେ ଗଞ୍ଜାମର ବୟୋଜ୍ୟେଷ୍ଠ ନେତା ଶ୍ରୀବତ୍ସ ପଣ୍ଡାଙ୍କୁ ସଭାପତି ଏବଂ ଯୁବନେତା ନିରଞ୍ଜନ ପଟ୍ଟନାୟକଙ୍କୁ ସମ୍ପାଦକ ମନୋନୀତ କରିଥିଲେ । ଗଞ୍ଜାମ ଜିଲ୍ଲା ସେତେବେଳେ ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଭୁକ୍ତ ଥିଲା । ସ୍ୱତନ୍ତ୍ର ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟି ଗଠନ କରିବା ପାଇଁ ତେଲୁଗୁମାନେ ଆପତ୍ତି କରିଥିଲେ । କିନ୍ତୁ ନିରଞ୍ଜନ ପଟ୍ଟନାୟକଙ୍କ ଯୁକ୍ତି ଓ ଶଶିଭୂଷଣ ରଥଙ୍କ ଜିଦ୍ ଯୋଗୁଁ ଗଞ୍ଜାମ ଜିଲ୍ଲାରେ କଂଗ୍ରେସ କମିଟି ଗଠିତ ହୋଇ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ସହିତ ସଂଯୁକ୍ତ ହେଲା ।

ଓଡ଼ିଶାରେ କଂଗ୍ରେସ ପାଣ୍ଠି ସଂଗ୍ରହ ପାଇଁ ଆବଶ୍ୟକତା ଦେଖାଦେଲା । ୧୯୨୧ ମସିହା ଜୁନ୍ ସୁଦ୍ଧା ଓଡ଼ିଶାରୁ କଂଗ୍ରେସ ପାଣ୍ଠି କୋଡ଼ିଏ ହଜାର ଟଙ୍କା ସଂଗ୍ରହ କରିବା ପାଇଁ ସାମର୍ଥ୍ୟ ହୋଇଥିଲା । କଂଗ୍ରେସର ତୁଙ୍ଗନେତା ବାଳଗଙ୍ଗାଧର ତିଳକଙ୍କ ପରଲୋକ ଯୋଗୁଁ କଂଗ୍ରେସ ଏହି ପାଣ୍ଠିକୁ "ତିଳକ ପାଣ୍ଠି" ନାମକରଣ କରିଥିଲେ । ନିରଞ୍ଜନବାବୁ ଏହି ପାଣ୍ଠି ପାଇଁ ସମଗ୍ର ଗଞ୍ଜାମ ଜିଲ୍ଲାର ଗାଁ ଗାଁ ବୁଲି ପାଣ୍ଠି ସଂଗ୍ରହ କରି ଧାର୍ଯ୍ୟ ଲକ୍ଷ୍ୟ ପୂରଣ ପାଇଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରତିପଲ୍ଲୀରେ ପ୍ରଚାର ପାଇଁ ନିରଞ୍ଜନବାବୁ ନିର୍ଭର ଦକ୍ଷତା ପ୍ରତିପାଦନ କରିଥିଲେ । ସେଥର ଓଡ଼ିଶାରୁ ନିଖିଳ ଭାରତ କଂଗ୍ରେସ କମିଟି ପାଇଁ ସଭ୍ୟ ନିର୍ବାଚ ହୋଇଥିଲା । ଓଡ଼ିଶାର ଅନ୍ୟାନ୍ୟ ତୁଙ୍ଗ ନେତାମାନଙ୍କ ସହି ନିରଞ୍ଜନବାବୁ ଜଣେ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ଗଞ୍ଜାମରେ କଂଗ୍ରେସ କାର୍ଯ୍ୟ ଅଧିକରୁ ଅଧିକ କ୍ରିୟାଶୀଳ ହୋଇଥିଲା । ବିଦେଶ ବସ୍ତ୍ର ବର୍ଜନ, ନିଶାନିବାରଣ, ଅସ୍ପୃଶ୍ୟତା ଲୋପ, ଚରଖା ପ୍ରଚା ଇତ୍ୟାଦି କାର୍ଯ୍ୟ ଜୋର୍ ସୋର୍‌ରେ ଚାଲିଥିଲା ।

୧୯୨୩ ମସିହାରେ ଓଡ଼ିଶା ଖଦୀ ଆନ୍ଦୋଳନ ଆରମ୍ଭ ହେଲା । ଗଞ୍ଜାମ ଜିଲ୍ଲା ପାଇଁ ନିରଞ୍ଜନବାବୁ ଖଦୀ ସଞ୍ଚାଳକ ମନୋନୀତ ହେଲେ । ୧୯୨୭ ମସିହାରେ ମହାତ୍ମାଗାନ୍ଧୀ ଖଦୀ କାର୍ଯ୍ୟ ତଦାରଖ ପାଇଁ ଆସି ଡିସେମ୍ବର ୫ ତାରିଖରେ ବ୍ରହ୍ମପୁରରେ ପଦାର୍ପଣ କଲେ । ନିରଞ୍ଜନବାବୁ କଂଗ୍ରେସ ବାର୍ତ୍ତା ପ୍ରଚାର ଓ ଖଦୀକର୍ମ ସମ୍ପର୍କରେ ଜନସାଧାରଣଙ୍କୁ ସଚେତନ କରାଇବା ସକାଶେ "ଗାନ୍ଧୀ ପ୍ରଚାର" ନାମରେ ଗୋଟିଏ ଦୈନିକ ବୁଲେଟିନ୍ ପ୍ରକାଶ କରୁଥିଲେ । ଏହା ୧୯୨୭ ମସିହା ନଭେମ୍ବର ୨ ତାରିଖଠାରୁ ୧୯୨୮ ମସିହା ଜାନୁଆରୀ ୩ ତାରିଖ ପର୍ଯ୍ୟନ୍ତ ପ୍ରକାଶ ଲାଭ କରିଥିଲା । ନିରଞ୍ଜନବାବୁ ନିଜ ସମ୍ପାଦନାରେ ଏହି ପତ୍ରିକାଟି ଲିଥୋ କରି ପ୍ରକାଶ କରୁଥିଲେ । ଏହି ଲିଥୋ ପତ୍ରିକାଟିର ଆଦର ଓ ପ୍ରସାର ଦେଖି ଶଶିଭୂଷଣ ରଥ ସାପ୍ତାହିକ ଆଶାକୁ ଦୈନିକ କରିବା ପାଇଁ ସ୍ଥିର କଲେ । ୧୯୨୮ ମସିହାରେ ଏହା କାର୍ଯ୍ୟକାରୀ ହୋଇଥିଲା ।

୧୯୩୦ ମସିହାରେ ମହାତ୍ମାଗାନ୍ଧୀ ଲବଣ ସତ୍ୟାଗ୍ରହ ଆରମ୍ଭ କରି ଡାଣ୍ଡିଯାତ୍ରା କଲେ । ସେତେବେଳେ ନିରଞ୍ଜନବାବୁ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ସଭାପତି ହୋଇଥିଲେ । ସେ କଂଗ୍ରେସର ନିର୍ଦ୍ଦେଶକ୍ରମେ ଲବଣ ସତ୍ୟାଗ୍ରହର ନେତୃତ୍ୱ ନେଇ ଶତାଧିକ ସତ୍ୟାଗ୍ରହୀଙ୍କୁ ସାଙ୍ଗରେ ଧରି ଅପ୍ରେଲ ୩୦ ତାରିଖ ଦିନ ବ୍ରହ୍ମପୁରଠାରୁ ପଦଯାତ୍ରାରେ ବାହାରି ମଇ ୫ ତାରିଖରେ ବଙ୍ଗୋପସାଗର ଉପକୂଳବର୍ତ୍ତୀ ହୁମା ଗ୍ରାମଠାରେ ପହଞ୍ଚି ଲୁଣ ମାରିଥିଲେ । ତାଙ୍କ ସହିତ ବିଶ୍ୱନାଥ ଦାଶ, ଶଶିଭୂଷଣ ରଥ, ସରଳା ଦେବୀ, ଦିବାକର ପଟ୍ଟନାୟକ, ଗୋବିନ୍ଦ ଚନ୍ଦ୍ର ପ୍ରଧାନ, ହରିହର ପଟ୍ଟନାୟକ, ଅନ୍ତର୍ଯ୍ୟାମୀ ପଣ୍ଡା, ବନମାଳି ମହାରଣା, ଘନଶ୍ୟାମ ପଟ୍ଟନାୟକ, ଶ୍ରୀହର୍ଷ ମିଶ୍ର ପ୍ରମୁଖ କଂଗ୍ରେସ ନେତାଗଣ ଲବଣ ଆଇନ ଅମାନ୍ୟ କରିଥିଲେ । ସତ୍ୟାଗ୍ରହୀମାନେ ସମୁଦ୍ରରୁ ପାଣି ବୋହି ଆଣି ଲୁଣମାରି ସେହି ଲୁଣକୁ ପୁଡ଼ିଆ କରି ଲୋକଙ୍କ ମଧ୍ୟରେ ବିକ୍ରି କରୁଥିଲେ । କେଉଁଠି କେଉଁଠି ଲୁଣ ପୁଡ଼ିଆକୁ ନିଲାମ କରାଯାଉଥିଲା । ଏପରିକି ଲୋକେ "ସତ୍ୟାଗ୍ରହ ଲୁଣ" କୁ ଦଶ ଦଶ ଟଙ୍କାରେ ନିଲାମ ଧରି କିଣି ନେଉଥିବା ଦେଖା ଯାଉଥିଲା ।

ଲବଣ ସତ୍ୟାଗ୍ରହ ପରିଚାଳନା ପାଇଁ ବ୍ରହ୍ମପୁରଠାରେ ଉଦ୍ୟୋଗ ମନ୍ଦିର ବା ପ୍ରଗତି ଆଶ୍ରମ ନାମରେ ଗୋଟିଏ ଆଶ୍ରମ ପ୍ରତିଷ୍ଠା କରାଯାଇଥିଲା । ଏହି ଆଶ୍ରମରେ ସତ୍ୟାଗ୍ରହୀମାନଙ୍କୁ ତାଲିମ ଦେବା ସଙ୍ଗେ ସଙ୍ଗେ ସେଠାରୁ ଦଳ ଦଳ ସତ୍ୟାଗ୍ରହୀଙ୍କୁ ହୁମାଠାରେ ଲବଣ ଆଇନ ଭଙ୍ଗ କରିବା ପାଇଁ ପଠାଯାଉଥିଲା । ନିରଞ୍ଜନବାବୁଙ୍କ ସହଧର୍ମିଣୀ କିଶୋରୀମଣି ଦେବୀ ଆଶ୍ରମରେ ସମସ୍ତ ଦାୟିତ୍ୱ ବହନ କରି

କର୍ମୀମାନଙ୍କର ରହିବା, ଖାଇବା କଥା ତଦାରଖ କରି ବୁଝୁଥିଲେ । ସେହିପରି ବାଞ୍ଛାନିଧି ପଟ୍ଟନାୟକଙ୍କ ସହଧର୍ମିଣୀ କୁନ୍ଦଲତା ଦେବୀ ମଧ୍ୟ ଆଶ୍ରମରେ ରହି କିଶୋରୀମଣି ଦେବୀଙ୍କୁ ସାହାଯ୍ୟ କରୁଥିଲେ ।

ହୁମାଠାରେ ପ୍ରଥମ ଦଫାରେ ୨୧ଜଣ ସତ୍ୟାଗ୍ରହୀଙ୍କୁ ଗିରଫ କରାଯାଇଥିଲା । ସେମାନଙ୍କ ମଧ୍ୟରେ ଶ୍ରୀହର୍ଷ ମିଶ୍ର, ସହଦେବ ପଟ୍ଟନାୟକ, ପୂର୍ଣ୍ଣଚନ୍ଦ୍ର ବେହେରା ଏହି ତିନିଜଣ କମ୍ ବୟସର ବାଳକ ଥିବାରୁ ସେମାନଙ୍କୁ ବେଙ୍ଗଲପଟସ୍ଥିତ ନାବାଳକମାନଙ୍କ ପାଇଁ ଉଦ୍ଦିଷ୍ଟ "ଗ୍ରିଫରମେଟି" ଜେଲକୁ ପଠାଇ ଦିଆଯାଇଥିଲା ।

୧୯୩୦ ମସିହାରେ ମହାତ୍ମାଗାନ୍ଧୀ ଓ ବଡ଼ଲାଟ ଇରଉଇନ୍‌ଙ୍କ ମଧ୍ୟରେ ଚୁକ୍ତିନାମା ହେବା ଫଳରେ ସମସ୍ତ ସତ୍ୟାଗ୍ରହୀ ଜେଲ୍‌ରୁ ଖଲାସ ହୋଇ ପୁନର୍ବାର ମଇଦାନକୁ ଆସି ଗଲେ ।

୧୯୩୧ ମସିହାରେ ପୁନର୍ବାର ଉଦ୍ୟୋଗ ମନ୍ଦିର ଉଦ୍‌ଘାଟିତ ହେଲା । କର୍ମୀମାନେ ଏକତ୍ରିତ ହୋଇ ବିଦେଶୀ ବସ୍ତ୍ର ବର୍ଜନ, ମଦ, ଅଫିମ ଇତ୍ୟାଦି ଦୋକାନ ଆଗରେ ପିକେଟିଂ, ଖଜୁରିଗଛ କଟା ଇତ୍ୟାଦି ବିଷୟରେ ପିକେଟିଂ କଲେ । ଶଶିଭୂଷଣ ରଥ ଗଞ୍ଜାମ ଜିଲ୍ଲା କଂଗ୍ରେସ କମିଟିର ସଭାପତି ହେଲେ । ଲିଙ୍ଗରାଜ ପାଣିଗ୍ରାହୀ ଉପସଭାପତି, ଦିବାକର ପଟ୍ଟନାୟକ, ବାଞ୍ଛାନିଧି ପଟ୍ଟନାୟକ, ଜଗନ୍ନାଥ ମିଶ୍ର (କଇଚଇ) ସମ୍ପାଦକ ହେଲେ । ଗାଁ ଗାଁରେ କଂଗ୍ରେସବାର୍ତ୍ତା ପ୍ରଚାର, ସଭା, ସମିତି ଜୋର୍‌ସୋର୍‌ରେ ଚାଲିଲା ।

କର୍ମୀମାନଙ୍କ ତାଲିମ ପାଇଁ ଗଞ୍ଜାମ, ବ୍ରହ୍ମପୁର, ଶେରଗଡ଼ ଓ ବାଲିପଦରଠାରେ ସେବାଦଳ ଶିବିରମାନ ଆରମ୍ଭ ହେଲା । ଶିବିରର କର୍ମୀମାନେ ଶୋଭାଯାତ୍ରା ଓ ପିକେଟିଂ ଆରମ୍ଭ କରିଦେଲେ । ବ୍ରହ୍ମପୁରରେ ଲାଠି ଚାର୍ଜ ହେଲା ଓ କର୍ମୀମାନଙ୍କୁ ଗିରଫ କରାଗଲା । ଶେରଗଡ଼ ଶିବିରର ସତ୍ୟାଗ୍ରହୀମାନେ ଆସିକାରେ ଶୋଭାଯାତ୍ରାରେ ଯାଉଥିବା ବେଳେ ତାଙ୍କୁ ଗିରଫ କରାଗଲା । ବାଲିପଦର ଶିବିରର କର୍ମୀମାନଙ୍କୁ ମଧ୍ୟ ଗିରଫ କରି ରସ୍‌କୋଣ୍ଡା (ଭଞ୍ଜନଗର) ଜେଲ୍‌କୁ ପଠାଇ ଦିଆଗଲା ।

**ରୟତ ଆନ୍ଦୋଳନ:** ସ୍ୱାଧୀନତା ସଂଗ୍ରାମବେଳେ ଯେପରି ଗଡ଼ଜାତରେ **ପ୍ରଜା ଆନ୍ଦୋଳନ** ଚାଲିଥିଲା; ସେହିପରି ଜମିଦାରୀ ଅଞ୍ଚଳରେ ଜମିଦାରୀ ଉଚ୍ଛେଦ ପାଇଁ ରଇତ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଗଞ୍ଜାମର ଖଲିକୋଟ, ଆଠଗଡ଼ ଜମିଦାରୀ ବହୁଦିନ ଧରି କୋର୍ଟ ଅଫ୍ ୱାର୍ଡ଼ସ ଅଧୀନରେ ଥିଲା । ଖଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜଦେବ ରାଜା ହେବାପରେ କ୍ରମଶଃ ରଇତମାନଙ୍କ ଦୁର୍ଦ୍ଦଶା ବଢ଼ିବାକୁ ଲାଗିଲା । ତରୁଣ ରାଜା ପ୍ରଜାମାନଙ୍କୁ ବିଶେଷ ନିର୍ଯ୍ୟାତନା ଦେଲେ । ପ୍ରଜାମାନଙ୍କ ଠାରୁ କର ଆଦାୟ ଉତ୍କଟ ହେଲା । ପ୍ରଜାମାନେ କଂସା, ବାସନ ବିକ୍ରିକରି ରାଜା ବା ଜମିଦାରଙ୍କୁ କର ଦେବାକୁ ଲାଗିଲେ । ଏଇ କଥା ପାଇଁ ପ୍ରଜାମାନେ ଆନ୍ଦୋଳନ ଆରମ୍ଭ କଲେ । ବିଶ୍ୱନାଥ ଦାସ, ବନମାଳି ମହାରଣା, ଦିବାକର ପଟ୍ଟନାୟକ ପ୍ରଭୃତି ରଇତ ସଂଗଠନର ମୁଖପାତ୍ର ଥିଲେ । ଗ୍ରାମେ ଗ୍ରାମେ ରଇତମାନଙ୍କର ସଂଗଠନ ଗଢ଼ି ଉଠିଲା । ଶ୍ରୀ ବନମାଳି ମହାରଣାଙ୍କ "ରଇତ ରାଗ" ନାମକ କବିତା ଏହି ଆନ୍ଦୋଳନରେ ଉନ୍ମାଦନା ଆଣି ଦେଇଥିଲା । ଖଲିକୋଟ ଜମିଦାର ବା ରାଜାବାହାଦୁର କର୍ମୀମାନଙ୍କ ଉପରେ ନାନାପ୍ରକାର ମକଦମା ଓ ଜୁଲୁମ କରି ସେମାନଙ୍କୁ ହଇରାଣ କଲେ । ପରେ ମିଛ ମକଦମାଗୁଡ଼ିକ ବିଚାର ହୋଇ ସମସ୍ତେ ନିର୍ଦ୍ଦୋଷରେ ଖଲାସ ହେଲେ ।

ମହାତ୍ମାଗାନ୍ଧୀ ତିନୋଟି ପର୍ଯ୍ୟାୟରେ ଦେଶରେ ଆନ୍ଦୋଳନର ସୂତ୍ରପାତ କରିଥିଲେ । ପ୍ରଥମ ପର୍ଯ୍ୟାୟ ୧୯୨୦ ଠାରୁ ୧୯୨୨, ଦ୍ୱିତୀୟ ପର୍ଯ୍ୟାୟ ୧୯୩୦ ଠାରୁ ୧୯୩୨ ଏବଂ ତୃତୀୟ ପର୍ଯ୍ୟାୟ ୧୯୪୦ ଠାରୁ ୧୯୪୨ । ଏସବୁ ଆନ୍ଦୋଳନରେ ଗଞ୍ଜାମର ଶହ ଶହ କର୍ମୀ ଭାଗ ନେଇ ଜେଲଦଣ୍ଡ, ଜୋରିମାନା ଓ ଲାଠିମାଡ଼ ଖାଇ ଆନ୍ଦୋଳନକୁ ଆଗେଇ ନେଇଥିଲେ । ଆନ୍ଦୋଳନ ସମୟରେ ସତ୍ୟାଗ୍ରହୀମାନଙ୍କୁ ପୁଲିସ୍ ଗିରିଫ କରି ଦାରୁଣ ମାଡ଼ ଦେଇ ଟ୍ରକରେ ନେଇ ରାତିରେ ୨୦/୨୫ ମାଇଲ ଦୂର ବଣ, ଜଙ୍ଗଲରେ ଫିଙ୍ଗି ଦେଇ ଆସୁଥିଲେ । ସତ୍ୟାଗ୍ରହୀମାନେ କଣ୍ଟା ବୁଦାରେ ପଡ଼ି କ୍ଷତବିକ୍ଷତ ହୋଇ ସ୍ଥାନୀୟ ଲୋକଙ୍କ ଦ୍ୱାରା ସେବା ସୁଶ୍ରୁଷାରେ ସୁସ୍ଥ ହୋଇ ପୁଣି ଆସି ସତ୍ୟାଗ୍ରହରେ ଯୋଗ ଦେଉଥିଲେ । ଏପରି ସତ୍ୟାଗ୍ରହୀମାନଙ୍କୁ ବାନରସେନା କୁହାଯାଉଥିଲା ।

ଆନ୍ଦୋଳନ ସମୟରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନ କ୍ରମେ ଦେଶର ସହସ୍ର ସଂଖ୍ୟାରେ ଛାତ୍ର-ଛାତ୍ରୀ, ଓକିଲ, କର୍ମଚାରୀ ଇସ୍ତଫା ଦେଇ ଚାଲିଆସି ଆନ୍ଦୋଳନରେ ଯୋଗ ଦେଉଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଦିବାକର ପଟ୍ଟନାୟକ, ଶରତଚନ୍ଦ୍ର ମହାପାତ୍ର, ଶ୍ୟାମସୁନ୍ଦର ପଟ୍ଟନାୟକ, ବୈକୁଣ୍ଠନାଥ ନାୟକ ଓ ଭରତ ବେହେରା ଇତ୍ୟାଦି । ପାରଳାଖେମୁଣ୍ଡିର ଅର୍ଜ୍ଜୁନ ପାଣିଗ୍ରାହୀ ଓ ତାଙ୍କଠାରୁ ଶାସନର ନନ୍ଦକିଶୋର ମିଶ୍ର ମାନ୍ଦ୍ରାଜଠାରେ କଲେଜରେ ଅଧ୍ୟୟନ କରୁଥିବାବେଳେ ପାଠପଢ଼ା ଛାଡ଼ି ଚାଲି ଆସି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ ।

୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଇଂରେଜ ସରକାର ଭାରତର ନେତାମାନଙ୍କୁ ନପଚାରି ଭାରତ ମଧ୍ୟ ଯୁଦ୍ଧରେ ଯୋଗ ଦେଲା ବୋଲି ଘୋଷଣା କରିଦେଲେ । ଫଳରେ ମହାତ୍ମାଗାନ୍ଧୀ, ଜବାହରଲାଲ ନେହେରୁ, ମୌଲାନା ଆବୁଲ କାଲାମ ଆଜାଦ୍ ପ୍ରଭୃତି କଂଗ୍ରେସର ବଡ଼ ବଡ଼ ନେତାମାନେ ଏହି ଯୁଦ୍ଧରେ ଇଂରେଜ ସରକାରଙ୍କୁ ସାହାଯ୍ୟ ନକରିବା ପାଇଁ ନିଷ୍ପତ୍ତି କଲେ । ଏଥିପାଇଁ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କରିବା ପାଇଁ ନିଷ୍ପତ୍ତି ନେଲେ । ଆଠଟି କଂଗ୍ରେସ ଶାସିତ ପ୍ରଦେଶର ମୁଖ୍ୟମନ୍ତ୍ରୀମାନେ ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶ ପ୍ରକାରେ ଇସ୍ତଫା ଦେଲେ ।

୧୯୩୯ ମସିହାରେ ଗଞ୍ଜାମର ଛତ୍ରପୁରନିକଟଠାରେ ଗୋଟିଏ ସତ୍ୟାଗ୍ରହୀ ତାଲିମ ଶିବିର ଖୋଲା ହେଲା । ସେଥିରେ ଗଞ୍ଜାମର ପ୍ରାୟ ଏକଶତ କର୍ମୀ ତାଲିମ ନେଲେ । ଲେଖକ ସେମାନଙ୍କ ମଧ୍ୟରୁ ଜଣେ । ବିଶ୍ୱନାଥ ଦାସ, ରମାଚରଣ ପଟ୍ଟନାୟକ ପ୍ରଭୃତି ସତ୍ୟାଗ୍ରହୀ ତାଲିମ କେନ୍ଦ୍ର ପରିଚାଳନା କରୁଥିଲେ ।

୧୯୪୦ ମସିହାରେ ମହାତ୍ମାଗାନ୍ଧୀ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କଲେ । ଯେଉଁ କଂଗ୍ରେସ କର୍ମୀମାନେ ନିୟମିତ ସୂତା କାଟୁଥିବେ, ଖଦଡ଼ ଲୁଗା ପିନ୍ଧୁଥିବେ, ଅସ୍ପୃଶ୍ୟତା ନିବାରଣ ପାଇଁ କାର୍ଯ୍ୟ କରୁଥିବେ, ନାରୀଜାଗରଣ ଇତ୍ୟାଦି ଗଠନାତ୍ମକ କାର୍ଯ୍ୟଗୁଡ଼ିକ କରୁଥିବେ,

ସେମାନଙ୍କ ନାମ ତାଲିକା ଜିଲ୍ଲା କଂଗ୍ରେସ କମିଟି ମହାତ୍ମାଗାନ୍ଧୀଙ୍କ ପାଖକୁ ପଠାଇବେ । ମହାତ୍ମାଗାନ୍ଧୀ ଯାହାକୁ ଅନୁମତି ଦେବେ, ସେ ସତ୍ୟାଗ୍ରହ କରିବେ । କେଉଁଦିନ କେଉଁଠାରେ ସତ୍ୟାଗ୍ରହ କରିବେ, ସତ୍ୟାଗ୍ରହୀ ସମ୍ପୃକ୍ତ ଜିଲ୍ଲା କଲେକ୍ଟରଙ୍କୁ ଜଣାଇ ଦେବେ । ଜିଲ୍ଲା କଲେକ୍ଟର ସମ୍ପୃକ୍ତ ଥାନାକୁ ଜଣାଇ ଦେବେ । ପୋଲିସ ସତ୍ୟାଗ୍ରହୀଙ୍କୁ ଗିରଫ କରି ଆଣିବେ । ବିଚାର ପରେ ଜେଲଦଣ୍ଡରେ ଦଣ୍ଡିତ ହେବେ । ଏହି ସତ୍ୟାଗ୍ରହରେ ବିଶ୍ୱନାଥ ଦାଶ, ଉମାଚରଣ ପଟ୍ଟନାୟକ, ମୋହନ ନାୟକ, ଗୋବିନ୍ଦ ପ୍ରଧାନ, ଦିବାକର ପଟ୍ଟନାୟକ, ନାରାୟଣ ପାତ୍ର, ଅନ୍ନପୂର୍ଣ୍ଣିଲକ୍ଷ୍ମୀ ଦାଶ, ଶ୍ରୀହର୍ଷ ମିଶ୍ର ଇତ୍ୟାଦି ଶତାଧିକ କର୍ମୀ ସତ୍ୟାଗ୍ରହ କରି ଗିରଫ ହୋଇ ଜେଲଦଣ୍ଡରେ ଦଣ୍ଡିତ ହୋଇଥିଲେ । ମିଆଦ ପୂରିବା ପରେ ଜେଲ୍‌ରୁ ଖଲାସ ହୋଇଥିଲେ । ଜେଲ୍‌ରେ ବନ୍ଦୀମାନଙ୍କୁ ଦଉଡ଼ି ବଳିବା, ପଥର ଭାଙ୍ଗିବା, କମାର ଶାଳରେ ଲୁହା ପିଟିବା, ଘଣା ପେଲିବା ଇତ୍ୟାଦି କଠିନ କାମ ଦିଆଯାଉଥିଲା ।

**ଗଞ୍ଜାମରେ ଭାରତଛାଡ଼ ଆନ୍ଦୋଳନ:** ୧୯୪୨ ମସିହା ଅଗଷ୍ଟ ୮ ତାରିଖରେ ବମ୍ବେଠାରେ ନିଖିଳଭାରତ କଂଗ୍ରେସ କମିଟିର ଅଧିବେଶନ ବସି ଗୁରୁତ୍ୱପୂର୍ଣ୍ଣ ଭାରତଛାଡ଼ ପ୍ରସ୍ତାବ ଗ୍ରହଣ କଲେ । ରାତି ପାହିଲା ବେଳକୁ ସାରା ଭାରତର ସବୁ ଜଣାଶୁଣା କଂଗ୍ରେସ କର୍ମୀ ଓ ନେତାଙ୍କୁ ଇଂରେଜ ସରକାର ଗିରଫ କରି ଜେଲ୍‌କୁ ନେଇଗଲେ । ମହାତ୍ମାଗାନ୍ଧୀ ଜେଲ୍‌କୁ ଯିବା ପୂର୍ବରୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସନ୍ଦେଶ ଦେଇଗଲେ । 'ଯେଉଁମାନେ ଜେଲ୍ ବାହାରେ ଗିରଫ ନହୋଇ ରହିଛନ୍ତି, ସେମାନେ ନିଜକୁ ଜଣେ ଜଣେ ନେତା ବୋଲି ଭାବି ଇଂରେଜ ସରକାରଙ୍କୁ ସବୁମତେ ଅଚଳ କରିବା ପାଇଁ କାର୍ଯ୍ୟ କରିଯା'ନ୍ତୁ ।' ମହାତ୍ମାଗାନ୍ଧୀଙ୍କ ଶେଷ ମନ୍ତ୍ର ଥିଲା "କର ବା ମର ।"

ଯେଉଁ କେତେଜଣ କର୍ମୀ ଗିରଫ ନହୋଇ ରହିଯାଇଥିଲେ, ସେମାନେ କ'ଣ କରିବେ, କିପରି ଭାବରେ ଆନ୍ଦୋଳନ କରିବେ ଠିକ୍ କରିପାରିଲେ ନାହିଁ । ଜଗନ୍ନାଥ ପ୍ରସାଦ ଅଞ୍ଚଳର କର୍ମୀମାନେ ବସି ଆନ୍ଦୋଳନ ବିଷୟରେ ଆଲୋଚନା କରି ପଞ୍ଚଭୂତି ଠାରେ ଜଙ୍ଗଲ ଆଇନ ଅମାନ୍ୟ କରିବା ପାଇଁ ସ୍ଥିର ହେଲା । ପଞ୍ଚଭୂତିଠାରେ କର୍ମୀମାନେ ଶୋଭାପାତ୍ରରେ ଯାଇ ରିଜର୍ଭ ଜଙ୍ଗଲରୁ ଗୁଡ଼ାଏ ଗଛଡାଳି ପକାଇଲେ । ସେଠାରୁ କର୍ମୀମାନେ ଗଞ୍ଜାମ ମାଳ ଅଞ୍ଚଳକୁ ଯାଇ ଆଇନ ଅମାନ୍ୟ କରିବାକୁ ସ୍ଥିର କଲେ । ସେମାନେ ଜି. ଉଦୟଗିରି ଯାଇ କନ୍ଧମାନଙ୍କୁ ମତାଇ ଆନ୍ଦୋଳନ କରିବାକୁ ଗଲାବେଳେ ପୁଲିସ ଦ୍ୱାରା ଗିରଫ ହୋଇ ଜେଲ୍‌କୁ ଚାଲିଗଲେ ।

ଆସ୍କାରେ କେତେଜଣ କଂଗ୍ରେସ କର୍ମୀ ଆନ୍ଦୋଳନ କରିବା ପାଇଁ ସତର୍କ ହୋଇ ରହିଥିଲେ । ପ୍ରଥମେ ମଦ ଦୋକାନ ଆଗରେ ପିକେଟିଂ, ଆସ୍କା ସହର ସାରା ପ୍ରତିଦିନ ଶୋଭାଯାତ୍ରା ଓ ପ୍ରଚାରପତ୍ର ବଣ୍ଟନ କରାଗଲା । ଏହିପରି ସାତଦିନ ଚାଲିବା ପରେ ଆନ୍ଦୋଳନକୁ ନୂତନ ମୋଡ଼ ଦେବା ପାଇଁ ସ୍ଥିର ହେଲା ।

ଗୋଟିଏ ଦିନରେ ଗୋଟିଏ ସମୟରେ ଆସ୍କାଠାରୁ ବ୍ରହ୍ମପୁର ରାସ୍ତାରେ ତିନିମାଇଲ ପର୍ଯ୍ୟନ୍ତ ଟେଲିଗ୍ରାମ ତାରକଟା ହେବ, ଆସ୍କା ନିକଟ ଋଷିକୁଲ୍ୟା ନଦୀର ପୋଲକୁ ଡିନାମାଇଟ୍ ସାହାଯ୍ୟରେ ଭାଙ୍ଗି ଦିଆଯିବ । ଏହିପରି ଭାବରେ ଆସ୍କାରୁ ଯୋଗାଯୋଗ ବିଚ୍ଛିନ୍ନ ହେବାପରେ ଅସ୍କା ଟ୍ରେଜେରୀକୁ ଲୁଟିକରି ଲୋକଙ୍କ ମଧ୍ୟରେ ବାଣ୍ଟି ଦିଆଯିବ । ଏହି ତିନୋଟି କାର୍ଯ୍ୟପାଇଁ ତିନିଦଳ କର୍ମୀ ପ୍ରସ୍ତୁତ ହୋଇ ରହିଲେ । ଲେଖକ ବ୍ରହ୍ମପୁର ଯାଇ ସେଠାରେ ବିପ୍ଳବୀ କାଶୀନାଥ ପାତ୍ରଙ୍କୁ ବଡ଼ କଷ୍ଟରେ ସାକ୍ଷାତ କରି ରାତି ଅଧରେ ତାଙ୍କ ଠାରୁ ଗୋଟିଏ ଡିନାମାଇଟ ସଂଗ୍ରହ କରି ଆଣିଲେ । କାଶୀନାଥବାବୁ ଡିନାମାଇଟ ଗୋଟିଏ ଫୁଲକୁଣ୍ଡରେ ରଖି ସେଥିରେ ଗୋଟିଏ ଫୁଲଗଛ ଲଗାଇ କୁଣ୍ଡଟି ନେବାପାଇଁ କହିଲେ । ସେହିରାତ୍ର ଗୋଟିଏ ଟ୍ରକ୍‌ରେ ଆସ୍କା ଫେରି ଫୁଲକୁଣ୍ଡଟି ଡ: ରାମମୂର୍ତ୍ତିଙ୍କ ଘରେ ରଖିଲୁ । ଜଣେ କର୍ମୀଙ୍କୁ ପଠାଇ ଋଷିକୁଲ୍ୟା ନଦୀ ପୋଲର ଗୋଟିଏ ଖମ୍ବରେ ଡିନାମାଇଟ୍ ରଖିବା ପାଇଁ ଗୋଟିଏ ଗର୍ତ୍ତ କରାଗଲା । ଯେଉଁଦିନ ଏସବୁ କାର୍ଯ୍ୟ କରିବା ପାଇଁ ସ୍ଥିର କରାଯାଇଥିଲା, ତା'ପୂର୍ବଦିନ ରାତ୍ର ପୁଲିସ କୌଣସି ସୂତ୍ରରୁ ଖବର ପାଇଁ ଆମ ଆଠଜଣଙ୍କୁ ଗିରଫ କରି ଋଷିକୋଣ୍ଡା ଜେଲ୍‌କୁ ପଠାଇ ଦେଲେ । ଯେଉଁ ଅଞ୍ଚଳରେ ଟେଲିଗ୍ରାମ ତାରକଟା ହୋଇଥିଲା, ସେହି ଅଞ୍ଚଳର ଗ୍ରାମବାସୀମାନଙ୍କଠାରୁ ସରକାର ପିଟୁଣି ଟିକସ ଆଦାୟ କଲେ ।

ଜେଲ୍‌ରେ ସଂଗ୍ରାମୀମାନଙ୍କୁ ମାନ୍ଦ୍ରାସ ଡାଏଟ୍ ଦିଆଯାଉଥିଲା । କର୍ମୀମାନେ ବିହାର-ଡାଏଟ୍ ଦେବା ପାଇଁ ଦାବୀ କରି ଖାଇବା ଫେରାଇ ଦେଇ ଅନଶନ କଲେ । ଜେଲ କର୍ତ୍ତୃପକ୍ଷ ଆସି ବହୁତ ବୁଝାଇଲେ । କର୍ମୀମାନେ ତାଙ୍କ ଜିଦ୍‌ରେ ଅଟଳ ରହିଲେ । ତା'ପର ଦିନ ସକାଳୁ ଆମ ଗହଣରୁ ଆମର ନେତା ମଧୁସୂଦନ ମହାପାତ୍ରଙ୍କୁ ନେଇଯିବା ପାଇଁ ୱାର୍ଡ଼ରମାନେ ମାର୍ଚ୍ଚ କରି ଆସିଲେ । ଆମେ ପ୍ରତିରୋଧ କଲୁ, ଫଳରେ ଆମ ସମସ୍ତଙ୍କ ଉପରେ ଭୀଷଣ ଲାଠିମାଡ଼ ହେଲା । ସମସ୍ତେ ରକ୍ତରେ ଲୁଟୁଲୁଟୁ ହୋଇ ସାତଦିନ ଡାକ୍ତରଖାନାରେ ପଡ଼ି ସୁସ୍ଥ ହେଲୁ । ଆମକୁ ଖଲାସ ହେବା ପର୍ଯ୍ୟନ୍ତ ୨୪ ଘଣ୍ଟା ବାନ୍ଧି ପକାଇ କୋଠରୀରେ ଆବଦ୍ଧ କରି ରଖିଲେ । ସେଇ କୋଠରୀ ମଧ୍ୟରେ ଆମେ ଶୋଉଥିବା ସିମେଣ୍ଟ ଖଟ ପାଖରେ ଝାଡ଼ା, ପରିସ୍ରା କରୁଥିଲୁ । ଗନ୍ଧରେ ରହି ହେଉନଥାଏ । କୋର୍ଟ ବିଚାରରେ ସମସ୍ତଙ୍କୁ ଗୋଟିଏ ଦଫାରେ ଛ'ଛ' ମାସ ଲେଖାଏଁ ଜେଲ ଦଣ୍ଡରେ ଦଣ୍ଡିତ କରାଗଲା ।

ଆସ୍କା ଛଡ଼ା କଉଡ଼ାବାଡ଼ି ଆଶ୍ରମର କର୍ମୀମାନେ ଜଙ୍ଗଲ ଆଇନ୍ ଅମାନ୍ୟ କରି ଜେଲ୍‌ଦଣ୍ଡରେ ଦଣ୍ଡିତ ହେଲେ । ଆଉ କେତେ ସତ୍ୟାଗ୍ରହୀ ଗଞ୍ଜାମ ମାଳ ଅଞ୍ଚଳକୁ ଯାଇ ସେଠାରେ ଥାନା ଓ ଡାକବଙ୍ଗଳା ପୋଡ଼ି, ପୋଲ ଭାଙ୍ଗି ଗିରଫ ହୋଇ ଜେଲଦଣ୍ଡରେ ଦଣ୍ଡିତ ହେଲେ । ଏହିପରି ଭାବରେ ଗଞ୍ଜାମରେ ଭାରତଛାଡ଼ ଆନ୍ଦୋଳନ ସଫଳ ହୋଇଥିଲା ।

ସ୍ୱାଧୀନତା ସଂଗ୍ରାମୀ
କୌତୁହଳ, ଜିଲ୍ଲା-ଗଞ୍ଜାମ

# ରକ୍ତତୀର୍ଥରୁ ମୁକ୍ତିତୀର୍ଥ

● ଶ୍ରୀ କାର୍ତ୍ତିକ ଦାଶ

ଓଡ଼ିଆ ଶହୀଦମାନଙ୍କ ରକ୍ତରେ ଉତ୍କଳ ରକ୍ତ ତୀର୍ଥରେ ରୂପାନ୍ତରିତ ହୋଇଛି । ଅନେକ ଓଡ଼ିଆ ଦେଶଭକ୍ତଙ୍କର ନାଁ, ଗାଁ ଓ କାର୍ଯ୍ୟ ଆଜିଯାଏ ଅଜଣା ରହିଯାଇଛି ।

ଦୁର୍ଦ୍ଧର୍ଷ ଇଂରେଜ ଶକ୍ତି ଓଡ଼ିଶା ଦଖଲ କରିବା ମାତ୍ରକେ ଦକ୍ଷିଣ ଓଡ଼ିଶାର ପାରଳା, ଘୁମୁସର, ମହୁରି ଅଞ୍ଚଳରେ ମୁକ୍ତି କ୍ରାନ୍ତିର ରଣ ଦୁନ୍ଦୁଭି ବାଜି ଉଠିଲା । ଘୁମୁସରର ଭଞ୍ଜବଂଶୀୟ ନରପତି ତଥା ମୁକ୍ତିପିପାସୁ ପ୍ରଜାଗଣ ଫରାସୀ ଓ ଇଂରେଜ ଶକ୍ତିକୁ ବାର ବାର ଠେକର ଦେଇଥିଲେ । ବିପ୍ଳବୀ ରାଜା କୃଷ୍ଣଚନ୍ଦ୍ର ଭଞ୍ଜ, ଗଜପତି ଦେବ, ନାରାୟଣ ଦେବ, ରାଣୀ ପାଟ ମହାଦେବୀ ତଥା ଐତିହାସିକ ଗୁମା ଦୁର୍ଗର ରକ୍ଷକ ଶହୀଦ କୃଷ୍ଣଚନ୍ଦ୍ର ଓ ନାରୀ ଶହୀଦ ହାରାମଣି ଯେଉଁ ବୀରତ୍ୱ ପ୍ରଦର୍ଶନ କରିଥିଲେ, ତାହା ବିଶ୍ୱ ଇତିହାସରେ ମଧ୍ୟ-ବିରଳ । ରାଣୀ ପାଟ ମହାଦେବୀ ଓ ଶହୀଦ ହାରାମଣି ଆମ ମୁକ୍ତି ସଂଗ୍ରାମର ଅନନ୍ୟ ନାରୀ ପ୍ରତିଭା । ସେ ଦୁହେଁ ଝାନ୍ସି ରାଣୀ ଲକ୍ଷ୍ମୀବାଈଙ୍କ ତୁଳନାରେ କମ୍ ନୁହଁନ୍ତି । ସେହିପରି କମଳଲୋଚନ ଦୋରା ବିଶୋୟୀ ଓ ଚକରା ବିଶୋୟୀଙ୍କ ବୀରତ୍ୱ ମୁକ୍ତି ଯୁଦ୍ଧର ଗୌରବ କାହାଣୀ ।

ବାରମାଟି ଓଡ଼ିଶା । ୧୮୦୪ ଓ ୧୮୧୭ ମସିହାର ଲୋମହର୍ଷଣକାରୀ ପାଇକ ବିଦ୍ରୋହରେ ଖୋର୍ଦ୍ଧା, ହରିଶପୁର, ମରିଚପୁର, କନିକା ଓ କୁଜଙ୍ଗ ପ୍ରଭୃତି ସ୍ଥାନରେ ଇଂରେଜ ବିରୋଧୀ ମୁକ୍ତି ସଂଗ୍ରାମ ଏପରି ଜୋରଦାର ହୋଇଥିଲା ଯେ ବାଧ୍ୟ ହୋଇ କମ୍ପାନୀ ସରକାର ସାମରିକ ଆଇନ ଜାରୀ କରିଥିଲା । ଜୟୀରାଜଗୁରୁ, ପିଣ୍ଡିକି ବାହୁବଳେନ୍ଦ୍ର, ବକ୍ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ମହାପାତ୍ର, କୃତିବାସ ପାଟଶାଣି, ଲୋଚନ ବିଶୋୟୀ, ଅଧୁଚାନ୍ଦି, ଦୀନାଚାନ୍ଦି, ଦଳବେହେରା ମାଧବଚନ୍ଦ୍ର ରାଉତରାୟ, ଦେବାନ କୃଷ୍ଣଚନ୍ଦ୍ରଙ୍କ ରକ୍ତରଞ୍ଜିତ ସଂଗ୍ରାମ କାହାଣୀ ଆମ ସମସ୍ତଙ୍କ ପାଇଁ ପ୍ରେରଣାର ଉତ୍ସ । ସେହିପରି ଅନୁଗୁଳ ମାଟିର ବିପ୍ଳବୀ ରାଜା ସୋମନାଥ ସିଂହ ଜଗଦେବ, ମଣି ସାମନ୍ତରାୟ, ଭୋବନୀ ମଙ୍ଗରାଜ, ନୀଳକଣ୍ଠ ବିଧାରଙ୍କ ଦେଶପ୍ରେମ ଓ ବଳିଦାନ ଅପୂର୍ବ ତଥା ରୋମାଞ୍ଚକର ।

୧୮୫୭ର ମହାବିଦ୍ରୋହରେ ଓଡ଼ିଶାର ପଶ୍ଚିମାଞ୍ଚଳରେ ଯେଉଁ ମୁକ୍ତି ମଶାଲ ଜଳି ଉଠିଥିଲା, ତାହା ଭାରତର କୌଣସି ସ୍ଥାନରେ ମଧ୍ୟ ଦୃଷ୍ଟିଗୋଚର ହୋଇନଥାଏ । ବୀର ସୁରେନ୍ଦ୍ରସାଏଙ୍କ ସହିତ ତାଙ୍କ ଭାତୃଗଣ, ପଶ୍ଚିମ ଓଡ଼ିଶାର ଅନେକ ଦେଶଭକ୍ତ ଗୌନ୍ତିଆ ତଥା ଜମିଦାରଙ୍କ ରକ୍ତଦାନରେ ଓଡ଼ିଶା ରକ୍ତତୀର୍ଥ ହୋଇଛି । ଘେଁସ ଜମିଦାର ମାଧୋସିଂହଙ୍କ ସମେତ ତାଙ୍କ ପରିବାରର ସମସ୍ତ ସଦସ୍ୟ ଝିଅ, ବୁହାଁ, ସଙ୍ଗସାଥୀ ମାତୃମୁକ୍ତି ଯଜ୍ଞରେ ସର୍ବସ୍ୱ ଦାନ କରି ଯାଇଛନ୍ତି । କୌଣସି ଦୃଷ୍ଟିରୁ ଓଡ଼ିଶାର ମାଧୋସିଂହଙ୍କ ମୁକ୍ତି ଯୁଦ୍ଧ ମହାରାଷ୍ଟ୍ରର ପଡ଼ଶଚକରଙ୍କ ପରିବାରଠାରୁ ନ୍ୟୂନ ନୁହେଁ । ସେହିପରି ପ୍ରବାଦ ବିପ୍ଳବୀ ବାଞ୍ଛା ଖୁଣ୍ଟିଆ, ଯାଜପୁରର ରାମକୃଷ୍ଣ ସାମନ୍ତସିଂହାରଙ୍କ ଇଂରେଜ ବିରୋଧୀ କାର୍ଯ୍ୟକଳାପ, କେନ୍ଦୁଝରର ଧରଣୀ ମେଳି ଓ ଶହୀଦ ରତ୍ନା ନାୟକଙ୍କ ବିପ୍ଳବାତ୍ମକ କାର୍ଯ୍ୟ ତଥା ବଳିଦାନ ଗୋଟିଏ ମହାନ ଜାତିର ମହାର୍ଘ ଦଲିଲ ।

୧୯୨୦ର ଅସହଯୋଗ ଆନ୍ଦୋଳନ, ୧୯୩୦ର ଆଇନ ଅମାନ୍ୟ ଆନ୍ଦୋଳନ, ୧୯୩୮ର ଗଡ଼ଜାତ ଆନ୍ଦୋଳନ, ୧୯୪୨ର ଅଗଷ୍ଟ ବିପ୍ଳବ ଓ ୧୯୪୪-୪୫ରେ ନେତାଜୀଙ୍କ ଦିଲ୍ଲୀ ଚଲୋ ଆହ୍ୱାନରେ ମଧ୍ୟ ଉତ୍କଳ ଭୂମି ରକ୍ତତୀର୍ଥ ହୋଇଛି । ଅସହଯୋଗ ଆନ୍ଦୋଳନରେ କନିକା ମାଟିର ଅମର ଶହୀଦ ବାସୁସେଠୀ ଓ ବିସ୍ୱନି ମହୁଆଳଙ୍କ ରକ୍ତଦାନ ଏ ମାଟିକୁ ଧନ୍ୟ କରିଛି ।

୧୯୩୦ର ଲବଣ ସତ୍ୟାଗ୍ରହ ବା ଆଇନ ଅମାନ୍ୟ ଆନ୍ଦୋଳନରେ ବୀର ଉତ୍କଳୀୟମାନେ ଜାତୀୟ ସ୍ତରରେ ଦ୍ୱିତୀୟସ୍ଥାନ ଅଧିକାର କରିଥିଲେ । ଏଥିପାଇଁ ଇଞ୍ଚୁଡ଼ି, ଭଗମ୍, ଅସ୍ତରଙ୍ଗ, କୁଜଙ୍ଗ, ଦୁମା ଅଞ୍ଚଳ ସଂଗ୍ରାମମାନଙ୍କ ରକ୍ତଝରାଗୀ ସଂଗ୍ରାମ ସ୍ମରଣୀୟ ହୋଇ ରହିବ । ନିଜର ଅପୂର୍ବ ଦେଶପ୍ରେମ ଯୋଗୁଁ ବୀର ସୁରେନ୍ଦ୍ରନାଥ ଦାସ (ବାଲେଶ୍ୱର) ସର୍ଦ୍ଦାର ଉପାଧି ପାଇବାର ସୌଭାଗ୍ୟ ଅର୍ଜନ କରିଥିଲେ । ଭାରତର ଯେଉଁ ଦୁଇଜଣ ପ୍ରାତଃ ସ୍ମରଣୀୟ ତ୍ୟାଗୀ ପୁରୁଷ ଏହି ଉପାଧି ପ୍ରାପ୍ତ ହୋଇଥିଲେ, ସେମାନେ ହେଲେ ବର୍ଦ୍ଦୋଲିର ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ଓଡ଼ିଶାର ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ । ବଙ୍ଗୋପସାଗର ବେଳାଭୂମିରେ ମାତୃଭୂମି ଲାଗି ଜୀବନ ଦେଇଥିଲେ ଶହୀଦ ନିରଞ୍ଜନ ପୋତ (ବହୁଗ୍ରାମ), ଚବାନ୍ଦ୍ର ନାଥ ଦାସ (ବାଲେଶ୍ୱର) ବାନାଇର (କାକଟପୁର) ଓ ବାବା କେଦାରଦାସ (ନୂଆପଡ଼ା) । ଗୋଟିଏ ଲୁଣପୁଡ଼ାକୁ ୫୦୦୦ ଟଙ୍କାରେ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ନିଲାମ ଧରିଥିଲେ ଏମାର ମଠ ମହନ୍ତ ।

୧୯୩୮ରେ ଗଡ଼ଜାତ ଆନ୍ଦୋଳନ । ଦେଶୀୟ ରାଜା ରାଜୁଡ଼ାଙ୍କ ହୃଙ୍କାପିଟା ଶାସନ, ଅତ୍ୟାଚାରିତ ନିରୀହ ପ୍ରଜାକୁଳର ଦୃଢ଼ ପ୍ରତିବାଦ । ଇଂରେଜ ବଳରେ ବଳିୟାର ହୋଇଥିଲେ ଦେଶୀୟ ରାଜନ୍ୟବର୍ଗ । ଧରାକୁ ସରା ମଣୁଥିଲେ । ପ୍ରଜାମାନଙ୍କୁ ପୋକମାଛି ପରି ଦେଖୁଥିଲେ । ଅନ୍ୟାୟର ପ୍ରତିବାଦ କରି ଶହୀଦ ହେଲେ ଢେଙ୍କାନାଳର କିଶୋର ବାଜି ରାଉତ, ନଟ, ହୃଷି, ଫଗୁ ସମେତ ନଅଜଣ । ଯୋଜପୁରର ପ୍ରସ୍ତୁବାରୀ ମେହେର, ରଣପୁର ମାଟିର ଅର୍ଜୁନ ରାଉତ, ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ା । ରକ୍ତତୀର୍ଥକୁ ରକ୍ତସ୍ପୃଷ୍ଟ କରିଗଲେ ସେମାନେ । ଓଡ଼ିଆ ଠେଙ୍ଗା ବିଲାତି ଗୁଳି ଠାରୁ ଟାଣୁଆ ହେଲା । ଦୁର୍ଦ୍ଦାନ୍ତ ପଲିଟିକାଲ ଏଜେଣ୍ଟ ବେଜେଲଗେଟ୍ ଓଡ଼ିଆଙ୍କ ଠେଙ୍ଗାମାଡ଼ରେ ଖଣ୍ଡ ବିଖଣ୍ଡିତ ହୋଇ ପ୍ରାଣ ହରାଇଲା । ଇଂରେଜ ଅଭିଧାନରେ ଗୋଟିଏ ନୂଆ ଶବ୍ଦ ହେଲା–

ବେନେଲ ଗେଟେଚ୍ (ଠେଙ୍ଗାରେ ପିଟି ପିଟି ହତ୍ୟା କରିବା) ଗାଙ୍ଗପୁରର ଆମ୍‌କୋ-ସିମ୍‌କୋ ଗାଁରେ ନିର୍ମଳ ମୁଣ୍ଡାଙ୍କ ସମେତ ଅନେକ ଦେଶଭକ୍ତ ଫିରିଙ୍ଗି ଗୁଳିରେ ଶିକାର ହେଲେ ।

ଶତ ଶହୀଦର ପୁଣ୍ୟଭୂମି ଓଡ଼ିଶା । ବୟାଳିଶ ଅଗଷ୍ଟ ବିପ୍ଳବରେ ଓଡ଼ିଶାବାସୀ ଅପୂର୍ବ ବୀରତ୍ୱ ପ୍ରଦର୍ଶନ କରିଥିଲେ । ଇରମରୁ ମାଟିଲି, କାଇପଡ଼ାରୁ ପାପଡ଼ାହାଣ୍ଡି ସାରା ଓଡ଼ିଶା ଅଗଷ୍ଟ ନିଆଁରେ ଜଳି ଉଠିଥିଲା । ଅଗଷ୍ଟ କ୍ରାନ୍ତିରେ ତିନିଶହ ଓଡ଼ିଆ ବ୍ରିଟିଶ ଗୁଳିରେ ଶିକାର ହେଲେ । କଟକ ସହରର ପଞ୍ଚୁ ବିପ୍ଳବୀ ମାଧବାନନ୍ଦ ସିଂହ ଓ ରାଧା ଗୋପାଳ୍ଗୁଣୀ ମାତୃମୁକ୍ତି ଲାଗି ନିଜ ଜୀବନକୁ ବାଜି ଲଗାଇ ଦେଲେ କିନ୍ତୁ ସେମାନଙ୍କର ରକ୍ତରଞ୍ଜିତ ସଂଗ୍ରାମ କାହାଣୀକୁ ଆମେ ପୁରାପୁରି ପାଶୋରି ଦେଲୁ ।

୧୯୪୪ରେ ନେତାଜୀଙ୍କ ଦିଲ୍ଲୀ ଚଲୋ ଡାକରା ସମଗ୍ର ବିଶ୍ୱରେ ଯେତେବେଳେ ଆଲୋଡ଼ନ ଖେଳାଇ ଦେଇଥିଲା, ବୀର ଓଡ଼ିଆମାନେ ମଧ ସେଥିରୁ ବାଦ୍ ପଡ଼ି ନଥିଲେ । ନେତାଜୀଙ୍କ ଗଠିତ 'ଆଜାଦ୍ ହିନ୍ଦ୍'ରେ ବୀର ଓଡ଼ିଆ ଅଭୂତପୂର୍ବ ବୀରତ୍ୱ ପ୍ରଦର୍ଶନ କରିଥିଲେ ଓ ରକ୍ତଦାନ କରି ଜୀବନ ସାର୍ଥକ କରିଥିଲେ । ସେମାନଙ୍କ ମଧରେ ଥିଲେ, ଶହୀଦ ଭୋବନୀରଣା, କୋରାପୁଟର ପୁକୁଲମାଟି, କର୍ଣ୍ଣେଲ ବ୍ରଜମୋହନ ପଟ୍ଟନାୟକ, ଡାକ୍ତର ବୀର କିଶୋର ଭୂୟାଁଙ୍କ ସମେତ ତିନୋଟି ଓଡ଼ିଆ ଝିଅ ହାଜି, ସୁନାତି ଓ ଉର୍ମିଳା ।

ମୁକ୍ତି ସଂଗ୍ରାମ ଇତିହାସରେ ବାବାଜୀ ରାମଦାସ, ଠାକୁର ଅଭିରାମ ପରମହଂସ ଦେବଙ୍କ କାର୍ଯ୍ୟ ଉଲ୍ଲେଖଯୋଗ୍ୟ । ସଂସାରତ୍ୟାଗୀ ବାବାଜୀ ରାମଦାସ ଆଳି-କନିକା ପ୍ରଭୃତି ଅର୍ଦ୍ଧ ଗଡ଼ଜାତରେ ଅବସ୍ଥାନ କରି ଅଗ୍ନିଶମ ଭାଷଣ ଦେଇ ଲୋକମାନଙ୍କ ମନରେ ଅସହଯୋଗର ନିଆଁ ଜାଳି ଦେଇଥିଲେ । ସେହିପରି ଠାକୁର ଅଭିରାମ ପରମହଂସ ଦେବ "କଳି ଭାଗବତ" ନାମକ ପୁସ୍ତକ ରଚନା କରି ଓଡ଼ିଶାରେ ଅଗଷ୍ଟ ବିପ୍ଳବକୁ ଜୋରଦାର୍ କରିଥିଲେ । ଏଥିପାଇଁ ଜେଲଦଣ୍ଡ ମଧ ପାଇଥିଲେ । ଜାତୀୟ କବି ବାଞ୍ଛାନିଧି, ବୀରକିଶୋର, ଗୋଦାବରୀଶ, କୁନ୍ତଳା କୁମାରୀ, ଜାତକବିଙ୍କ ମୁକ୍ତି ସଂଗ୍ରାମର ସଂଗୀତ ବେଶ୍ ହୃଦୟସ୍ପର୍ଶୀ ହୋଇଥିଲା । ଅସି ଠାରୁ ମସି ବଳିୟାର ହୋଇଥିଲା ।

ରାଜ୍ୟ ବାହାରେ ମଧ ବୀର ଓଡ଼ିଆ ନିଜର ବୀରତ୍ୱ ପ୍ରଦର୍ଶନ କରିଥିଲେ । ସେମାନଙ୍କ ମଧରେ ଥିଲେ ଶହୀଦ ଜଗୁ ଦେବାନ । ୧୮୫୭ ମସିହାରେ ସିଂଭୂମ ରାଜ୍ୟରେ ଓଡ଼ିଆ ଦେବାନ ଜଗବନ୍ଧୁ ପଟ୍ଟନାୟକ, ବିପ୍ଳବୀ ରାଜା ଅର୍ଜୁନସିଂହ ସହସ୍ରାଧିକ ଆଦିବାସୀଙ୍କୁ ନେଇ ସିଂଭୂମ ରାଜ୍ୟରେ ବିପ୍ଳବର ନିଆଁ ଜାଳି ଦେଇଥିଲେ । ସେହିପରି ସାନ୍ତାଳ ପ୍ରଗଣାରେ କ୍ରାନ୍ତିକାରୀ ପ୍ରଫୁଲ୍ଲ ପଟ୍ଟନାୟକଙ୍କ ସଂଗ୍ରାମର କାହାଣୀ ସର୍ବଭାରତୀୟ ସ୍ତରରେ ଚହଳ ଝଡ଼ ସୃଷ୍ଟି କରିଥିଲା ।

ଉତ୍କଳ ଜନନୀ ଏହି ବରପୁତ୍ରମାନଙ୍କୁ ଜନ୍ମ ଦେଇ ଧନ୍ୟା ହୋଇଛି ।

*ସାଇ ନିଳୟମ୍, ଗଭୋଟ ଶାସନ, ଚଣାହାଟ, ଖୋର୍ଦ୍ଧା-୭୫୨୧୦୨*

• • •

| | | |
|---|---|---|
| ୧୯୩୯-୪୦ | : | ଯୁଦ୍ଧ ବିରୋଧ ଆନ୍ଦୋଳନ । |
| ୧୯୪୦ | : | ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପ୍ରତିଷ୍ଠିତ ଫରୱାର୍ଡ଼ ବ୍ଲକ ଗଠନ । |
| ୧୯୪୦-୪୧ | : | ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ । |
| ୧୯୪୨ | : | ଅଗଷ୍ଟ ବିପ୍ଳବ- ଓଡ଼ିଶାରେ ଅଗଷ୍ଟ ବିପ୍ଳବରେ ପୋଲିସ ଗୁଳିମାଡ଼ରେ ଶହୀଦ ହୋଇଥିଲେ ତିନି ଶହରୁ ଅଧିକ ବିପ୍ଳବୀ । ଫାଶୀଖୁଣ୍ଟରେ ଶହୀଦ ହୋଇଥିଲେ ଏକମାତ୍ର ଆଦିବାସୀ ନେତା ଲକ୍ଷ୍ମଣ ନାୟକ । ଅଗଷ୍ଟ- ୧୨: ନାଳଗିରିରେ ଆକାଶ ମାର୍ଗରୁ ମେସିନଗନ୍ ମାଡ଼ରେ ୧, ପୋଲିସ୍ ଗୁଳିରେ ୧ ମୃତ । ଅଗଷ୍ଟ-୨୧: ମାଲକାନଗିରି ସବ୍‌ଡିଭିଜନ ମିଥିଲିଠାରେ ପୋଲିସ ଗୁଳିରେ ୬ ମୃତ । ଲକ୍ଷ୍ମଣ ନାୟକ ଗିରଫ- ୧୯୪୩ ମାର୍ଚ୍ଚ ୨୯ ତାରିଖରେ ବ୍ରହ୍ମପୁର କେନ୍ଦ୍ର ଜେଲ୍‌ରେ ଫାଶୀ । ଅଗଷ୍ଟ ୨୪- ନବରଙ୍ଗପୁର ସବ୍‌ଡିଭିଜନ ପାପଡ଼ାହାଣ୍ଡିରେ ପୋଲିସ ଗୁଳିରେ ୧୯ ମୃତ, ୧୭ ଆହତ । ଅଗଷ୍ଟ ୨୬- ତିର୍ତ୍ତୋଲ ଥାନା କାଇପଡ଼ା-କଳାମାଟିଆ ଗୁଳିକାଣ୍ଡରେ ୬ଜଣ ସତ୍ୟାଗ୍ରହୀ ମୃତ, ୧୯ ଆହତ । ସେପ୍ଟେମ୍ବର ୪- ଢେଙ୍କାନାଳରେ ପୋଲିସ ଗୁଳିରେ ୨ମୃତ । ସେପ୍ଟେମ୍ବର ୭- ତାଳଚେରରେ ଉଡ଼ାଜାହାଜରୁ ବୋମା ଓ ମେସିନଗନ୍ ମାଡ଼ରେ ୬ଜଣ ମୃତ । ସେପ୍ଟେମ୍ବର ୧୬- ପୁରୀ ଜିଲ୍ଲା ନିମାପଡ଼ା ଗୁଳିକାଣ୍ଡରେ ୧ ମୃତ, ୧୬ ଆହତ । ସେପ୍ଟେମ୍ବର ୨୨- ଧାମନଗର ଥାନା ଲୁଣିଆ ଗ୍ରାମରେ ପୋଲିସ ଗୁଳିରେ ୯ମୃତ । ସେପ୍ଟେମ୍ବର ୨୮- ବାଲେଶ୍ୱରର ବୁଡ଼ିଗଡ଼ିଆ-ଖଇରାଡିହ ଗୁଳିକାଣ୍ଡରେ ୩ ମୃତ । ସେପ୍ଟେମ୍ବର ୨୯- ବାସୁଦେବ ଥାନା ଇରମ ଗୁଳିକାଣ୍ଡରେ ୨୯ ମୃତ, ୫୬ ଆହତ- ମୃତ ବ୍ୟକ୍ତିମାନଙ୍କ ମଧରେ ମହିଳା ସତ୍ୟାଗ୍ରହୀ ପରିବେଷ୍ଟା ଓ ୧୬ ବର୍ଷର ପିଲା ବିଜୁଳି ଅନ୍ତର୍ଭୁକ୍ତ । ଏହି ଗୁଳିକାଣ୍ଡକୁ ପଂଜାବର ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ସହିତ ତୁଳନା କରାଯାଏ । ଅକ୍ଟୋବର ୧୦- ନୟାଗଡ଼-ନୂଆଗାଁ ଗୁଳିକାଣ୍ଡରେ କଣ୍ଟି ପ୍ରଧାନ ମୃତ । |

# ସ୍ୱାଧୀନତା ସଂଗ୍ରାମରେ ପଶ୍ଚିମ ଓଡ଼ିଶା

• ଶ୍ରୀ ଶିବ ପ୍ରସାଦ ନନ୍ଦ

୧୮୨୭ ଖ୍ରୀ:ଅ:ରେ ଇଂରେଜ ସରକାରଙ୍କ ଦ୍ୱାରା ରାଣୀ ମୋହନ କୁମାରୀ ସମ୍ବଲପୁର ରାଜଗାଦିରେ ଅଭିଷିକ୍ତା ହେଲେ । ଏ ଅଞ୍ଚଳର ଅଧିବାସୀ ଗଣ୍ଡ ଓ ବିଞ୍ଝାଲମାନେ ତାଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ଏହା ଥିଲା ଇଂରେଜ ସରକାର ବିରୁଦ୍ଧରେ ଏକ ପରୋକ୍ଷ ସଂଗ୍ରାମ । ସେମାନେ ଗୋରା ଶାସନ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । ଏହି ବିଦ୍ରୋହ ଏ ଅଞ୍ଚଳର ଏକତା ଓ ଜାତୀୟତାର ପ୍ରତୀକ । ୧୮୫୭ ମସିହାରେ ସିପାହୀ ବିଦ୍ରୋହ ମାଧ୍ୟମରେ ଏହା ବ୍ୟାପ୍ତ ହେଲା । ସିପାହୀ ବିଦ୍ରୋହବେଳେ ବୀର ସୁରେନ୍ଦ୍ରସାଏଙ୍କ ଇଂରେଜ ସରକାର ବିରୋଧରେ ଯୁଦ୍ଧ ଘୋଷଣା ଏକ ଲୋମହର୍ଷଣକାରୀ କାହାଣୀ । ଆଦିବାସୀ ବହୁଳ ସମ୍ବଲପୁରରେ ଗଣ୍ଡ, ବିଞ୍ଝାଲ ଜମିଦାରମାନେ ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ଇଂରେଜ ସରକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ । ଲୋଇସିଂହା, କୁଲାବିରା, ଘେଁସ, ଖଡ଼ିଆଳ, କୋଲାବିରା, ଲଖନପୁରର ଜମିଦାରମାନେ ସୁରେନ୍ଦ୍ର ସାଏଙ୍କୁ ସାହାଯ୍ୟ ସହଯୋଗ କରିଥିଲେ । ବୀର ସୁରେନ୍ଦ୍ର ସାଏ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ଜଣେ ଅଦ୍ୱିତୀୟ ବୀର ଥିଲେ । କିମ୍ବଦନ୍ତୀ ପୁରୁଷ ସୁରେନ୍ଦ୍ର ସାଏ ଅସୀରଗଡ଼ ଦୁର୍ଗରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ମାତ୍ର ତାଙ୍କ କୃତିତ୍ୱ ଏ ଅଞ୍ଚଳରେ, ଓଡ଼ିଶାରେ ଓ ସମଗ୍ର ଭାରତରେ ପରବର୍ତ୍ତୀ କାଳରେ ଇଂରେଜ ସରକାର ବିରୁଦ୍ଧରେ ସଂଗ୍ରାମ ପାଇଁ ପ୍ରେରଣାର ଉତ୍ସ ଥିଲା । ବିଧିବଦ୍ଧ ଭାବରେ ଭାରତୀୟମାନେ ଇଂରେଜ ସରକାର ବିରୋଧରେ ସଂଗ୍ରାମ ଆରମ୍ଭ କଲେ ୧୮୮୫ ମସିହାରୁ । ଏହି ବିପ୍ଳବ କୌଣସି ନିର୍ଦ୍ଦିଷ୍ଟ ସୀମା, ସରହଦ ମଧ୍ୟରେ ସୀମିତ ନରହି ସାରା ଦେଶରେ ପ୍ରସାରିତ ହୋଇଥିଲା । ପଶ୍ଚିମ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଏହି ମହାନ ବିପ୍ଳବର ଅଂଶବିଶେଷ ।

ସାରା ଦେଶ ସହିତ ପଶ୍ଚିମ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀ ଇଂରେଜ ଉପନିବେଶବାଦ, ସାମ୍ରାଜ୍ୟବାଦ, ଅର୍ଥନୈତିକ ଶୋଷଣ, ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ସଂଗ୍ରାମ ପଶ୍ଚିମ ଓଡ଼ିଶାର ପୁରପଲ୍ଲୀ ସର୍ବତ୍ର ଏକ ନୂତନ ଜାଗରଣର ଉନ୍ମାଦନା ସୃଷ୍ଟି କରିଥିଲା । ଆବାଳବୃଦ୍ଧବନିତା ସ୍ୱାଧୀନତା ମହାସମରରେ ଅକାତରେ ଅଂଶଗ୍ରହଣ କରିଥିଲେ । ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଜାତୀୟ ଚିନ୍ତାଧାରା ଭାରତୀୟମାନଙ୍କୁ ପ୍ରଭାବିତ କରିଥିଲା । ସମୟ କ୍ରମେ ଆଦିବାସୀ ବହୁଳ ପଶ୍ଚିମ ଓଡ଼ିଶାର କେତେକ ପ୍ରତିନିଧି ଶ୍ରେଣୀୟ ସଂଗ୍ରାମୀ ବ୍ରିଟିଶ ସରକାରର ମୁଣ୍ଡବ୍ୟଥାର କାରଣ ହୋଇ ଉଠିଥିଲେ ।

ପଶ୍ଚିମ ଓଡ଼ିଶା ସମ୍ବଲପୁର, ବଲାଙ୍ଗିର, ସୁନ୍ଦରଗଡ଼, କଳାହାଣ୍ଡି, ସୋନପୁର, ବୌଦ୍ଧ, ନୂଆପଡ଼ା ଅଞ୍ଚଳକୁ ବୁଝାଉଥାଏ ଏବଂ ଏହି ଅଞ୍ଚଳ କୋଶଳ ରାଜ୍ୟର ପୂର୍ବାଞ୍ଚଳ ଥିଲା । ହରିଷେଣଙ୍କ ରଚିତ ଏଲାହାବାଦ ପ୍ରଶସ୍ତିରୁ ଏହି ଅଞ୍ଚଳ ସମ୍ପର୍କରେ ସୂଚନା ମିଳିଥାଏ । ବିଭିନ୍ନ ସମୟରେ ଏହା ଶରଭପୁରୀୟ, ସୋମବଂଶୀ, କଳଚୁରୀ ଓ ଚୌହାନ ରାଜବଂଶ ଦ୍ୱାରା ଶାସିତ ହୋଇଥିଲା । ରବର୍ଟ କ୍ଲାଇଭଙ୍କ ଶାସନବେଳେ ଟି.ମୋଟେ ନାମକ ଜଣେ ଇଂରେଜ ଅଧିବାସୀ ହୀରା ବ୍ୟବସାୟ କରିବା ପାଇଁ ସମ୍ବଲପୁର ରାଜଦରବାରକୁ ଆସିଥିଲେ । ପରବର୍ତ୍ତୀ କାଳରେ ଇଂରେଜମାନେ ଆଧୁନିକ ଓଡ଼ିଶାର ପୂର୍ବାଞ୍ଚଳ ଦଖଲ କଲାପରେ, ମରହଟ୍ଟା ଶକ୍ତିକୁ ଦମନ କରିବା ଲକ୍ଷ୍ୟରେ ସମ୍ବଲପୁର ଅଞ୍ଚଳ ଦଖଲ କରିବା ପାଇଁ ମନସ୍ଥ କଲେ ।

୧୮୦୬ ଖ୍ରୀ:ରେ ସମ୍ବଲପୁର ଓ ଅନ୍ୟାନ୍ୟ ଗଡ଼ଜାତ ଅଞ୍ଚଳ ସହିତ ସମ୍ପର୍କ ସ୍ଥାପନ କଲେ ଏବଂ ୧୮୪୯ ଖ୍ରୀ:ରେ ସମ୍ବଲପୁର ଡେଲହାଉସୀଙ୍କ ରାଜ୍ୟସ୍ୱତ୍ୱ ଲୋପ ନୀତି ମାଧ୍ୟମରେ ବ୍ରିଟିଶ ସାମ୍ରାଜ୍ୟଭୁକ୍ତ ହେଲା । ୧୮୫୭ ମସିହା ସିପାହୀ ବିଦ୍ରୋହ ବେଳେ ସମ୍ବଲପୁରର ବୀର ସୁରେନ୍ଦ୍ର ସାଏଙ୍କ ଭୂମିକା ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି । ଭାରତରେ ଇଂରେଜ ସାମ୍ରାଜ୍ୟ ଦୃଢ଼ୀଭୂତ ହେବା ସହ, ଅପର ପକ୍ଷରେ ଭାରତରେ ଏକ ନବଜାଗରଣର ସୂତ୍ରପାତ ହୋଇଥିଲା ।

ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାର ଏହି ଅଞ୍ଚଳ କେନ୍ଦ୍ରାଞ୍ଚଳ ପ୍ରାଦେଶିକ ସରକାର ଦ୍ୱାରା ଶାସିତ ହେଉଥିଲା । ପ୍ରାଦେଶିକ ସରକାର ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ହିନ୍ଦୀ ଭାଷାର ପ୍ରଚଳନ କରିବା ହେତୁ ଜନଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଭାଷା ଆନ୍ଦୋଳନ ଯୋଗୁଁ ୧୯୩୬ ଖ୍ରୀ:ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସମ୍ଭବ ହୋଇଥିଲା । ସମ୍ବଲପୁରରୁ ପ୍ରକାଶିତ ହିତୈଷିଣୀ ସମ୍ବାଦପତ୍ର ଜନସଚେତନତା ସୃଷ୍ଟି କରିବାରେ ସହାୟକ ହୋଇଥିଲା ।

ଓଡ଼ିଶାର ପଶ୍ଚିମାଞ୍ଚଳର ସ୍ୱାଧୀନତା ସଂଗ୍ରାମ ସର୍ବଭାରତୀୟ ସଂଗ୍ରାମର ଅଂଶବିଶେଷ ଥିଲା । ଭାରତରେ ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ସାଧାରଣ ମଣିଷଠାରୁ ଆରମ୍ଭ କରି ଉଚ୍ଚପଦବୀରେ ଅଧିଷ୍ଠିତ କର୍ମଚାରୀ ପର୍ଯ୍ୟନ୍ତ ସମସ୍ତେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସ୍ୱାଧୀନତା ସଂଗ୍ରାମରୂପୀ ମହାଯଜ୍ଞରେ ଝାସ ଦେଇଥିଲେ । କଂଗ୍ରେସର ନାଗପୁର ଅଧିବେଶନ ପରେ ଭାରତରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନର ଶୁଭାରମ୍ଭ ହୋଇଥିଲା । ଆଦିବାସୀ ବହୁଳ ପଶ୍ଚିମାଞ୍ଚଳରେ ଏକ ନୂଆ ରାଜନୈତିକ ସଚେତନତାର ଜନ୍ମଲାଭ ହୋଇଥିଲା । ସମ୍ବଲପୁରର ବରପୁତ୍ର ଚନ୍ଦ୍ରଶେଖର ବେହେରା, ଦାଶରଥି ମିଶ୍ର ଓ ଅନ୍ୟ କେତେଜଣ ନାଗପୁର ଅଧିବେଶନରେ ଅଂଶ ଗ୍ରହଣ କରିଥିଲେ । ଚନ୍ଦ୍ରଶେଖର ବେହେରାଙ୍କ ବଳିଷ୍ଠ ଯୁକ୍ତି ଯୋଗୁଁ ଉତ୍କଳ ସମ୍ମିଳନୀ ଭାରତୀୟ ଜାତୀୟ କଂଗ୍ରେସର ବୈପ୍ଳବିକ ନୀତି ଗ୍ରହଣ କରିଥିଲା ।

ଜାତୀୟ କଂଗ୍ରେସର ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ସମ୍ବଲପୁର ଜିଲ୍ଲା ସ୍କୁଲର ଛାତ୍ରମାନେ ଶ୍ରେଣୀ ବର୍ଜନ କଲେ ଓ ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ ପାଇଁ ବୁଢ଼ାରଜା ପାହାଡ଼ ପାଦଦେଶରେ ଏକତ୍ରିତ

ହୋଇ ଶପଥ ଗ୍ରହଣ କଲେ । କିନ୍ତୁ ବଲାଙ୍ଗିର, କଳାହାଣ୍ଡି, ସୋନପୁର, ଖଡ଼ିଆଳ ଇତ୍ୟାଦି ଅଞ୍ଚଳରେ ରାଜତନ୍ତ୍ର ଇଂରେଜ ବିରୋଧୀ ଜନଆନ୍ଦୋଳନକୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ନିରୁତ୍ସାହିତ କରିଥିଲା । ଜାନୁଆରୀ ୩, ୧୯୨୧ ରେ ସଂପୂର୍ଣ୍ଣ ହରତାଳ ପାଇଁ ଡାକରା ଦିଆଗଲା ଓ ବିନା ଦ୍ୱିଧାରେ ସାଧାରଣ ନାଗରିକ ହରତାଳରେ ଅଂଶ ଗ୍ରହଣ କରିଥିଲେ । ବରଗଡ଼, କୁଚିଣ୍ଡା, ଅତାବିରା, ଭେଡେନ, ଝାରସୁଗୁଡ଼ା, ବରପାଲି, ପଦ୍ମପୁର, ସୋନପୁର, କଳାହାଣ୍ଡି ଇତ୍ୟାଦି ଅଞ୍ଚଳରେ ମଧ ଅନୁରୂପ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ।

ସମ୍ବଲପୁରର ଝାଙ୍କୁଆପଡ଼ାରେ ଏହି ଅଞ୍ଚଳର ପ୍ରଥମ ଜାତୀୟ ଶିକ୍ଷାନୁଷ୍ଠାନ ଚନ୍ଦ୍ରଶେଖର ବେହେରାଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ବଳଭଦ୍ର ବହିଦାର, ଶଙ୍କର ପ୍ରସାଦ ପାଢ଼ୀ ଏହି ଶିକ୍ଷାନୁଷ୍ଠାନର ପରିଚାଳନାରେ ସହାୟକ ହୋଇଥିଲେ । କଲିକତା ବିଶ୍ୱବିଦ୍ୟାଳୟର ପ୍ରଫେସର ନୀଳକଣ୍ଠ ଦାସ ଏହି ଜାତୀୟ ଶିକ୍ଷାନୁଷ୍ଠାନର ପ୍ରଧାନ ଶିକ୍ଷକ ଦାୟିତ୍ୱ ଗ୍ରହଣ କରିବା ସହ ପଶ୍ଚିମ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଦୀପ ପ୍ରଜ୍ୱଳିତ ହୋଇଥିଲା । ଅନେକ ଯୁବକ ଉଚ୍ଚଶିକ୍ଷା ପରିତ୍ୟାଗ କରି ଏଥିରେ ଅଂଶଗ୍ରହଣ କଲେ । ଛାତ୍ରମାନେ ବିଭିନ୍ନ ମଫସଲ ଅଞ୍ଚଳ ଗସ୍ତ କରି କଂଗ୍ରେସ ଓ ଗାନ୍ଧୀଙ୍କ ବାଣୀ ପ୍ରଚାର କରିବାରେ ସହାୟକ ହେଲେ । ମୋହନ ସିଂ, ନୃସିଂହ ଗୁରୁ, ରାମଚନ୍ଦ୍ର ସିଂ, ଜନାର୍ଦ୍ଦନ ସୁପକାର, ହରିହର ପାଣିଗ୍ରାହୀ, ଶିବପ୍ରସାଦ ମିଶ୍ର, ଲକ୍ଷ୍ମୀନାରାୟଣ ମିଶ୍ର, କୁଞ୍ଜ ମେହେର ସମଗ୍ର ପଶ୍ଚିମ ଓଡ଼ିଶାରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଭାସମିତି କରି ଜନଆନ୍ଦୋଳନକୁ ତେଜୀୟାନ କରିଥିଲେ । କଂଗ୍ରେସୀ ନୀତିର ପ୍ରଚାର ପାଇଁ 'ସାଧନା', 'ସେବା' ସାପ୍ତାହିକ ସମ୍ବାଦପତ୍ରର ଜନ୍ମଲାଭ ହୋଇଥିଲା । ଏହା ବ୍ୟତୀତ ଏହି ଅଞ୍ଚଳର ନେତାମାନେ କାରାବରଣ କରିବା ସହ ଉପାଧି ପରିତ୍ୟାଗ କରିଥିଲେ । ଖଦୀ ଓ ଚରଖା ସଂସ୍କୃତିର ପ୍ରସାର ବହୁଳ ଭାବେ ହୋଇଥିଲା । ଗଡ଼ଜାତ ଅଞ୍ଚଳରେ କଂଗ୍ରେସ ଆନ୍ଦୋଳନ ଦମନ ପାଇଁ ତତ୍କାଳୀନ ଶାସନ ସବୁ ପ୍ରକାର ଉଦ୍ୟମ କରିଥିଲେ । ଅସହଯୋଗ ଆନ୍ଦୋଳନ ବେଳେ କୋର୍ଟ ବର୍ଜନ, ଉପାଧି ପ୍ରତ୍ୟର୍ପଣ, ନିଶା ବିରୋଧ, ଶ୍ରେଣୀ ବର୍ଜନ ପାଇଁ ଅନେକ ସଭା ଅନୁଷ୍ଠିତ ହୋଇଥିଲା । କଂଗ୍ରେସ ଅଧିବେଶନରେ ଯୋଗଦେବା ପାଇଁ ୧୯୨୧ରେ ଏହି ଅଞ୍ଚଳରୁ ପ୍ରାୟ ୨୩ ଜଣ ଅହମଦାବାଦ ଯାତ୍ରା କରିଥିଲେ । ସମ୍ବଲପୁରର ପ୍ରତିନିଧିତ୍ୱ କରୁଥିବା ଶଙ୍କର ପ୍ରସାଦ ପାଢ଼ୀ, ମହାବୀର ସିଂ ଗାନ୍ଧୀଙ୍କୁ ଦେଖା କରିବାର ସୁଯୋଗ ପାଇଥିଲେ ଏବଂ ସମ୍ବଲପୁର ଆସିବା ପାଇଁ ଆମନ୍ତ୍ରଣ ଜଣାଇଥିଲେ ।

୧୯୨୨ ଖ୍ରୀ:ଅ:ରେ ପଞ୍ଚପଡ଼ାରେ ଗୋପବନ୍ଧୁ ଦାସଙ୍କ ସଭା ହେବା ଆଗରୁ ସରକାର ୧୪୪ ଧାରା ଜାରି କରିବା ସହ ଅନେକ କଂଗ୍ରେସ ନେତାଙ୍କୁ ବନ୍ଦୀ କଲେ । ପରେ ବରଗଡ଼ ମାରୱାଡ଼ି ଧର୍ମଶାଳାରେ ଗଙ୍ଗାରାମ ଦାସଙ୍କ ସଭାପତିତ୍ୱରେ ଏକ ବିଶାଳ ଜନସମାବେଶକୁ ଗୋପବନ୍ଧୁ ଉଦ୍‌ବୋଧନ ଦେଇଥିଲେ । ଏହି ସଭାଗୁଡ଼ିକରେ ଅସ୍ପୃଶ୍ୟତା ବିରୁଦ୍ଧରେ ମେଲଛାମୁଣ୍ଡା, ସମ୍ବଲପୁର, ପଦ୍ମପୁରଠାରେ ସଭା ସମିତି ଆୟୋଜିତ ହୋଇଥିଲା । ନୃସିଂହଗୁରୁ, କୃଷ୍ଣବିହାରୀ ମେହେର କଂଗ୍ରେସର ଗୟା ଅଧିବେଶନରେ ଅଂଶ ଗ୍ରହଣ କରି ନୂତନ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ହୋଇ ସମ୍ବଲପୁର ଆଗମନ କଲେ । ସେମାନଙ୍କ ଫେରିବା ସହିତ ଖଦୀ ଓ ଚରଖା ଆନ୍ଦୋଳନ ନୂତନ ଉତ୍ସାହ ସହ ପ୍ରସାରିତ ହେଲା । ଏକାଧାରାରେ ନିଶା ନିବାରଣ, ଶିକ୍ଷାର ପ୍ରସାର, ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଯୋଜନାବଦ୍ଧ କାର୍ଯ୍ୟକ୍ରମ ଆଗେଇ ଚାଲିଲା ।

ଠିକ୍ ଏହି ସମୟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ବିଧାନ ପରିଷଦ ସଦସ୍ୟ ରାମନାରାୟଣ ମିଶ୍ରଙ୍କ ସଭାପତିତ୍ୱରେ ସମ୍ବଲପୁରଠାରେ ଏକ ସଭା ଡକାହେବା ସହ ଏ ଅଞ୍ଚଳରେ ବିଭିନ୍ନ ସ୍ୱନାମଧନ୍ୟ ବ୍ୟକ୍ତିବିଶେଷଙ୍କୁ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ପଠାଗଲା । ଯଦିଓ ଇଂରେଜ ସରକାର ଏ ଦାବୀପ୍ରତି କର୍ଣ୍ଣପାତ କଲେନାହିଁ, କିନ୍ତୁ ଭାଷା ଆନ୍ଦୋଳନ ଚାଲୁ ରହିଲା । ପରିତ୍ୟକ୍ତ ସମ୍ବଲପୁର ରାଜପ୍ରାସାଦରେ କେଉଜଣ ଜାତୀୟବାଦୀ କଂଗ୍ରେସ ପତାକା ଉତ୍ତୋଳନ କରିଥିଲେ ଓ ସେମାନେ ପରେ ବନ୍ଦୀ ହୋଇ ନିର୍ଯ୍ୟାତିତ ହେଲେ । ୧୯୨୭-୨୮ ''ସାଇମନ୍ କମିଶନ ଫେରିଯାଅ'' ଧ୍ୱନି ଏହି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଗୁଞ୍ଜରିତ ହୋଇଥିଲା । ଡିସେମ୍ବର ୨୩, ୧୯୨୮ ଏ ଅଞ୍ଚଳର ଅଧିବାସୀଙ୍କ ପାଇଁ ଏକ ଐତିହାସିକ ଦିନ ଥିଲା । ସେଦିନ କଂଗ୍ରେସର କର୍ଣ୍ଣଧାର, ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ ଗାନ୍ଧୀ ମହାନଦୀ କୂଳରେ ବ୍ରହ୍ମପୁରା ମନ୍ଦିର ନିକଟରେ ଏକ ବିଶାଳ ଜନସମାବେଶକୁ ଉଦ୍‌ବୋଧନ ଦେଇଥିଲେ । ବାସ୍ତବରେ ଗାନ୍ଧୀଙ୍କ ସମ୍ବଲପୁର ଗସ୍ତ ଇଂରେଜ ବିରୋଧୀ ମଶାଲକୁ ତେଜୀୟାନ କଲା ।

ଜାନୁଆରୀ ୨୬, ୧୯୩୦ରେ ସାରା ଦେଶରେ ''ପୂର୍ଣ୍ଣ ସ୍ୱରାଜ' ପାଳିତ ହେବା ସାଙ୍ଗକୁ ଜାତୀୟ ପତାକା ଉତ୍ତୋଳନ ଓ ବନ୍ଦେ ମାତରଂ ଗାନ ଗଗନ ପବନ ମୁଖରିତ କଲା । ଓଡ଼ିଶାର ପଶ୍ଚିମାଞ୍ଚଳରେ ମଧ ଏହା ଅନୁଭୂତ ହେଲା । ମାର୍ଚ୍ଚ ୧୨, ୧୯୩୦ରେ ସମ୍ବଲପୁର ଜିଲ୍ଲା ସ୍କୁଲ ଛାତ୍ରମାନେ 'ଲବଣ ସତ୍ୟାଗ୍ରହ'ରେ ସକ୍ରିୟ ଅଂଶ ଗ୍ରହଣ କରିବା ସହିତ, ସହର ପରିକ୍ରମା ଓ ସଭା ଆୟୋଜନ କରିଥିଲେ । 'ଆଇନ ଅମାନ୍ୟ' ଆନ୍ଦୋଳନ ବେଳେ ସମ୍ବଲପୁର, ବରଗଡ଼ ଜନ ଆନ୍ଦୋଳନର ମୂଳ କେନ୍ଦ୍ର ହେଲା । ପିକେଟିଂ, ସଭା, ଶୋଭାଯାତ୍ରା ଅନୁଷ୍ଠିତ ହେବା ସଙ୍ଗେ ସଙ୍ଗେ ସଂଗ୍ରାମୀମାନେ କାରାବରଣ ପାଇଁ ମଧ ପଛଘୁଞ୍ଚା ଦେଇ ନଥିଲେ । ଏହି ଅଞ୍ଚଳର ନାରୀମାନେ ମଧ ଆଇନ ଅମାନ୍ୟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଶ୍ରଦ୍ଧାକର ସୁପକାର, ରାମପ୍ରସାଦ ସାହୁ, ଲକ୍ଷ୍ମୀନାରାୟଣ ମିଶ୍ର, ଜନାର୍ଦ୍ଦନ ପୂଜାରୀ, ବୋଧରାମ ଦୁବେ ଘର ଘର ବୁଲି ଇଂରେଜ ସରକାର ବିରୁଦ୍ଧରେ ସଚେତନତା ସୃଷ୍ଟି କରିଥିଲେ । ଏହା ବ୍ୟତୀତ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଏବଂ ଓଡ଼ନେଲ କମିଟି ଆଗରେ ସାକ୍ଷ୍ୟ ଦେବାପାଇଁ ଖଡ଼ିଆଳର ଲକ୍ଷ୍ମୀଧର ପଟ୍ଟନାୟକ, ଖଡ଼ିଆଳ ରାଜା ଆର୍ତ୍ତତ୍ରାଣ ଦେଓ, ପଦ୍ମପୁର ଜମିଦାର ଭବାନୀଶଙ୍କର ଦେଓ, ବାଳମୁକୁନ୍ଦ ବହିଦାର ଓ ଅନ୍ୟମାନେ ଏହି ଅଞ୍ଚଳ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରେ ମିଶାଇବା ପାଇଁ ଦୃଢ଼ ଯୁକ୍ତି ବାଢ଼ିଥିଲେ ।

ଏପ୍ରିଲ ୧, ୧୯୩୬ରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଜନ୍ମଗ୍ରହଣ କଲା । ସମ୍ବଲପୁରର କଂଗ୍ରେସ ଲୋକ ପ୍ରତିନିଧି ବୋଧରାମ ଦୁବେ ସ୍ୱତନ୍ତ୍ର ଓଡ଼ିଶାର ମନ୍ତ୍ରୀମଣ୍ଡଳରେ ସ୍ଥାନ ପାଇଲେ । ୧୯୩୬-୩୯ ପର୍ଯ୍ୟନ୍ତ ଏ ଅଞ୍ଚଳର କଂଗ୍ରେସ କର୍ମୀମାନେ ଜାତୀୟ ସ୍ରୋତରେ ସାମିଲ ହୋଇ ଇଂରେଜ ସରକାର ବିରୁଦ୍ଧରେ ଅନବରତ ସଂଗ୍ରାମ ଚଳି

ରଖିଥିଲେ । ହରିଜନ ବସ୍ତି ନିର୍ମାଣ, ଗମନାଗମନ ସୁବିଧା, ଗାଁ ଗହଳରେ କଂଗ୍ରେସ ନୀତିର ପ୍ରଚାର ପାଇଁ ସଂଗ୍ରାମୀମାନଙ୍କ ଉଦ୍ୟମ ପ୍ରଶଂସନୀୟ । ଅନେକ ପ୍ରାଦେଶିକ ଓ ଜାତୀୟ ସ୍ତରର ନେତାଗଣ ଏ ଅଞ୍ଚଳକୁ ଗସ୍ତକରି ଜନସଚେତନତା ସୃଷ୍ଟି କରିଥିଲେ । ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ହରେକୃଷ୍ଣ ମହତାବ, ଆଚାର୍ଯ୍ୟ ହରିହର ଦାସ, ରବିଶଙ୍କର ଶୁକ୍ଳା, ବିଶ୍ୱନାଥ ଦାସ, ସାରଙ୍ଗଧର ଦାସ, ବଳବନ୍ତ ରାଏ ମେହେଟ୍ଟା ବାରମ୍ବାର ଏ ଅଞ୍ଚଳକୁ ଆସି ଗଡ଼ଜାତ ଅଞ୍ଚଳ ସମିଶ୍ରଣ ଓ କଂଗ୍ରେସ ନୀତିର ପ୍ରଚାର କରିଥିଲେ । ସର୍ବଭାରତୀୟ ଜାତୀୟ ସଂଗ୍ରାମରେ ପଶ୍ଚିମାଞ୍ଚଳର ଜନସାଧାରଣ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ ।

୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା ଓ ଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସ ସ୍ୱାଧୀନତା ଦାବି କଲା । ଭାରତୀୟମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଇଂରେଜ ସରକାର କ୍ରିପସ୍‌ମିସନ ଭାରତକୁ ପଠାଇଥିଲେ । ଗାନ୍ଧୀ ଭାରତଛାଡ଼ ଆନ୍ଦୋଳନ ଆହ୍ୱାନ ଦେଲେ । ଅଗଷ୍ଟ ୮, ୧୯୪୨ରେ ଗାନ୍ଧୀ ଓ ଅନ୍ୟାନ୍ୟ ନେତୃବର୍ଗଙ୍କୁ ସରକାର ବନ୍ଦୀ କଲେ । ଭାରତଛାଡ଼ ଆନ୍ଦୋଳନର ଲେଲିହାନ ଶିଖା ସାରା ଅଞ୍ଚଳରେ ଏକ ଉନ୍ମାଦନା ସୃଷ୍ଟି କଲା । ପୂର୍ବପରି ଜନସାଧାରଣ ଆନ୍ଦୋଳନ ଓ ହରତାଳ ମାଧ୍ୟମରେ ସେମାନଙ୍କ ପ୍ରତିବାଦ ଜଣାଇଲେ । ପଦ୍ମପୁର, ବିଜେପୁର, ବୋଡ଼ାସମ୍ବରରେ ସବୁ ଶ୍ରେଣୀର ଲୋକେ ଜେଲଭରୋ ଆନ୍ଦୋଳନରେ ଅଂଶ ଗ୍ରହଣ କଲେ । ବଲାଙ୍ଗୀର, ଖଡ଼ିଆଳ, କଳାହାଣ୍ଡି, ସୋନପୁରରେ ମଧ ଭାରତଛାଡ଼ ଆନ୍ଦୋଳନର ପ୍ରଭାବ ଅନୁଭୂତ ହୋଇଥିଲା । ବଲାଙ୍ଗିରରେ ଭାରତଛାଡ଼ ଆନ୍ଦୋଳନ ଓ ପ୍ରଜାଆନ୍ଦୋଳନ ବେଳେ ସତ୍ୟାନନ୍ଦ ମିଶ୍ର, ଜଟିଳ ପ୍ରସାଦ ନନ୍ଦ, ଚିନ୍ତାମଣି ରଥ, ଶିବପ୍ରସାଦ ପାଣ୍ଡିଆ, ନରହରି ମିଶ୍ର, ରାମ ବେହେରା, ସ୍ୱପ୍ନାନନ୍ଦ ପାଣିଗ୍ରାହୀ, ନରସିଂହ ପ୍ରସାଦ ନନ୍ଦ ଓ ଆହୁରି ଅନେକ ଇଂରେଜ ସରକାର ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ଖଦଡ଼ ବସ୍ତ୍ର ପରିଧାନ କରିବା, ସୂତାକଟା, ଚରଖା ପ୍ରଚଳନ, ନିଶା ନିବାରଣ, ଅସ୍ପୃଶ୍ୟତା ଦୂର କରିବା ଇତ୍ୟାଦି ଗଠନମୂଳକ କାମ ହାତକୁ ନେଇଥିଲେ ।

୧୯୪୫ ଖ୍ରୀ:ଅରେ ପ୍ରଜା ଆନ୍ଦୋଳନର ଏକ ସଭା ସମ୍ବଲପୁରରେ ଅନୁଷ୍ଠିତ ହୋଇଥିଲା । ବ୍ରିଟିଶ ରାଜନୈତିକ ପରାମର୍ଶଦାତା ପ୍ରଜାମାନଙ୍କୁ ମୌଳିକ ଅଧିକାର ପ୍ରଦାନ କରିବା ପାଇଁ ତତ୍କାଳୀନ ରାଜାମାନଙ୍କୁ ପରାମର୍ଶ ଦେଇଥିଲେ । କିନ୍ତୁ ସରକାର ବିଭିନ୍ନ ସହରରେ ପୋଲିସର ୩୦ ଧାରା ଲାଗୁ କରିବା ସହିତ ସଭା ସମିତି ଶୋଭାଯାତ୍ରା ବେଆଇନ ଘୋଷିତ କଲେ । ଗଙ୍ଗାଧର ମେହେର କଲେଜ ଛାତ୍ରମାନେ ଏକ ଛାତ୍ର ସମାବେଶ କରି ଏକ ସାମ୍ମୁଖ୍ୟ ଗଠନ କରିଥିଲେ ।

ଓଡ଼ିଶାର ପଶ୍ଚିମାଞ୍ଚଳ ସ୍ୱାଧୀନତା ସଂଗ୍ରାମର ମହାଯଜ୍ଞରେ ଓତଃପ୍ରୋତ ଭାବେ ଜଡ଼ିତ ଥିଲା । ଏ ମାଟିର ସନ୍ତାନ ଛାତିଦରଣ୍ଡୁ ଆରମ୍ଭ କରି ପ୍ରାଣବଳୀ ଦେବା ପାଇଁ ମଧ ପଛଘୁଞ୍ଚା ଦେଇ ନଥିଲା ।

• • •

# ଓଡ଼ିଆ ଅମର ଶହୀଦମାନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି

ଗତ ଜୁଲାଇ ୨୧ ତାରିଖରେ ସ୍ଥାନୀୟ ରବୀନ୍ଦ୍ର ମଣ୍ଡପଠାରେ ସଂସ୍କୃତି ବିଭାଗ ତରଫରୁ କାର୍ଗିଲ୍ ଯୁଦ୍ଧରେ ଶହୀଦ୍ ହୋଇଥିବା ଓଡ଼ିଶାର ଯବାନମାନଙ୍କ ପରିବାରଙ୍କୁ ସାହାଯ୍ୟାର୍ଥେ ଏକ ମନୋରମ ସାଂସ୍କୃତିକ କାର୍ଯ୍ୟକ୍ରମ "ଶ୍ରଦ୍ଧାଞ୍ଜଳି" ଆୟୋଜନ କରାଯାଇଥିଲା । ଏହି କାର୍ଯ୍ୟକ୍ରମରେ ଭାରତର ପ୍ରଖ୍ୟାତ କଣ୍ଠଶିଳ୍ପୀ ଶ୍ରୀମତୀ ଅନୁରାଧା ପୋଡ଼ୱାଲ ଦେଶାତ୍ମବୋଧକ ଓ ଭକ୍ତି ସଂଗୀତ ପରିବେଷଣ କରିଥିଲେ । ଓଡ଼ିଶାର ସ୍ୱନାମଧନ୍ୟ କଣ୍ଠଶିଳ୍ପୀ ସିକନ୍ଦର ଆଲାମ, ଶ୍ରୀ ଅର୍ଜୁନ ସାମଲ, ପ୍ରଣବ ପଟ୍ଟନାୟକ, ସୁଭାସ ଦାସ, ଶ୍ରୀମତୀ ଭୁବନେଶ୍ୱରୀ ମିଶ୍ର ପ୍ରମୁଖ ମଧ ସଂଗୀତ ପରିବେଷଣ କରିଥିଲେ । ଓଡ଼ିଶୀ ଗବେଷଣା କେନ୍ଦ୍ର ପକ୍ଷରୁ ଶ୍ରୀମତୀ କୁମ୍‌କୁମ୍ ମହାନ୍ତିଙ୍କ ନିର୍ଦ୍ଦେଶନାରେ କାର୍ଗିଲ ଯୁଦ୍ଧ ଉପରେ ପର୍ଯ୍ୟବସିତ ଏକ ଚିତ୍ତାକର୍ଷକ ନୃତ୍ୟ ନାଟିକା 'ଜୟଯାତ୍ରା' ପରିବେଷଣ କରାଯାଇଥିଲା । ଓଡ଼ିଶା ସଂଗୀତ ନାଟକ ଏକାଡେମୀର ଉପ ସଭାପତି ଶ୍ରୀ ଶାନ୍ତନୁ ମହାପାତ୍ର ଓ ସଂଗୀତ ନିର୍ଦ୍ଦେଶକ ଶ୍ରୀ ପଙ୍କଜ କରଙ୍କ ତତ୍ତ୍ୱାବଧାନରେ ଏହି କାର୍ଯ୍ୟକ୍ରମ ପରିଚାଳନା କରାଯାଇଥିଲା ।

ଏହି ଅବସରରେ ଓଡ଼ିଶା ଲଳିତ କଳା ଏକାଡେମୀ ପକ୍ଷରୁ ଆୟୋଜିତ ଏକ ଚିତ୍ରକଳା ପ୍ରଦର୍ଶନୀକୁ ସଂସ୍କୃତି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରସାଦ ହରିଚନ୍ଦନ ଉଦ୍‌ଘାଟନ କରିଥିଲେ । ଏକାଡେମୀର ସମ୍ପାଦକ ଶ୍ରୀ ଶରତ ଚନ୍ଦ୍ର ରଥ, ବି.କେ. କଲେଜ ଅଫ୍ ଆର୍ଟସ୍‌ର ଅଧ୍ୟକ୍ଷ ଶ୍ରୀ ଚନ୍ଦ୍ରମଣି ବିଶ୍ୱାଳ, ଶ୍ରୀ ଶିବ ପାଣିଗ୍ରାହୀ, ଡଃ ଦୀନନାଥ ପାଠୀ ଓ ଅନ୍ୟାନ୍ୟ ବହୁ ଚିତ୍ରକରଙ୍କ ୪୨ଗୋଟି କଳାକୃତି ଏହି ପ୍ରଦର୍ଶନୀ ମାଧ୍ୟମରେ ବିକ୍ରୟ କରାଯାଇ ୨.୫ ଲକ୍ଷ ଟଙ୍କା ସଂଗୃହୀତ ହୋଇଥିଲା । ଇଡ୍‌କୋ ପକ୍ଷରୁ ଏହାର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ୟୁ.ଏନ୍. ବେହେରା ଏହି କାର୍ଯ୍ୟକ୍ରମ ପାଇଁ ୫ଲକ୍ଷ ଟଙ୍କା ପ୍ରଦାନ କରିଥିଲେ ।

ମୁଖ୍ୟମନ୍ତ୍ରୀ ଡଃ ଗିରିଧର ଗମାଙ୍ଗ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଏହି ସମସ୍ତ କାର୍ଯ୍ୟକ୍ରମରୁ ସଂଗୃହୀତ ଅର୍ଥରୁ ଶହୀଦମାନଙ୍କ ପ୍ରତ୍ୟେକ ପରିବାରକୁ ଏକ ଲକ୍ଷ ଟଙ୍କାର ଚେକ୍ ପ୍ରଦାନ କରିଥିଲେ । ଏହି ଅବସରରେ ମୁଖ୍ୟମନ୍ତ୍ରୀ ଓଡ଼ିଶା ପ୍ରତିରକ୍ଷା କର୍ମଚାରୀ ରିଲିଫ୍ ପାଣ୍ଠିକୁ ବିଭିନ୍ନ ବଦାନ୍ୟ ବ୍ୟକ୍ତି ବିଶେଷ ତଥା ଅନୁଷ୍ଠାନମାନେ ଅଦ୍ୟାବଧି ଏକ କୋଟି ୪ଲକ୍ଷ ୬ ହଜାର ୨୨ଟଙ୍କା ଦାନ କରିଛନ୍ତି ବୋଲି ସୂଚନା ଦେଇ ସେମାନଙ୍କ ମହନୀୟତା ତଥା ବ୍ୟବସ୍ଥା କରାଯିବ ।
ବଦାନ୍ୟତା ପାଇଁ ସାଧୁବାଦ ଜଣାଇଥିଲେ । ଶହୀଦ୍ ପରିବାରର ପିଲାଙ୍କୁ ପାଠ ପଢ଼ିବା ପାଇଁ ବୃତ୍ତି ନିମନ୍ତେ

ଏହି କାର୍ଯ୍ୟକ୍ରମରେ ବାଚସ୍ପତି ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟ, କ୍ରୀଡ଼ା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୁରେଶ କୁମାର ରାଉତରାୟ, ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗଣେଶ୍ୱର ବେହେରା ଯୋଗ ଦେଇଥିଲେ । ଏହାଛଡ଼ା ମୁଖ୍ୟ ଶାସନ ସଚିବ ଶ୍ରୀ ସହଦେବ ସାହୁ, ଇଡ୍‌କୋ ଅଧ୍ୟକ୍ଷ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ କେ.ବି. ବର୍ମା, ସଂସ୍କୃତି ବିଭାଗ ସଚିବ ଶ୍ରୀ ରବି ନାରାୟଣ ସେନାପତି, ନିର୍ଦ୍ଦେଶକ ଶ୍ରୀ୍ଅସିତ କୁମାର ତ୍ରିପାଠୀ, ମେଜର ଜେନେରାଲ ଡି.କେ. ସେନଗୁପ୍ତା, କର୍ଣ୍ଣେଲ କେ.ପି. ଜାନୋ, ବ୍ରିଗେଡିୟର ତୋଗ୍ରାଙ୍କ ସମେତ ବହୁ ଉଚ୍ଚ ପଦସ୍ଥ ଅଫିସର ଯୋଗଦାନ କରିଥିଲେ ।

# ଜନନୀ

● ଶ୍ରୀ ତ୍ରିଭୁବନାନନ୍ଦ ପରମହଂସ

ଏ ସଂସାର ସିନା ମାୟା ବିଜଡ଼ିତ
ପଙ୍କିଳ ସ୍ୱଭାବେ ସତତ କଳିତ
ଆଶା ମରୀଚିକା ଦୁଃଖଦାୟୀ ଘୋର
ଶୋକେ ଜର୍ଜରିତ ନଶ୍ୱର ଶରୀର
ତଥାପି ରହିଛି ଆନନ୍ଦ ଏଥିରେ
ମଧୁବୋଳା ବାଣୀ ଜନନୀ କଣ୍ଠରେ ।୧।
ଇନ୍ଦ୍ରିୟ ବାରଣେ ମନ ବୋଲେ ଚାଲି
ଦୁଃଖ ରୋଗେ ପଡ଼ି ନର ଜଳେ ମଳି
ବନ୍ଦୀ ହୋଇ ନୀତି କର୍ମ ଶିକୁଳାରେ
କାନ୍ଦି ଝୁରେ ପ୍ରାଣ ଇଚ୍ଛିତ ଧନରେ
ତଥାପି ରହିଛି ଏଥିରେ ଆନନ୍ଦ
ଜନନୀ ହୃଦୟ ସ୍ନେହ ମକରନ୍ଦ ।୨।
ଜୀବନ ତଟିନୀ ଭାମଗଣ୍ଡେ ଭରା
ଡହୁକି ଆୟୁଷ ବର୍ଦ୍ଧିନୀ ପ୍ରଖରା
କାଳସ୍ରୋତ କ୍ଷିପ୍ର ପ୍ରଭଞ୍ଜନ ପରି
ବହୁପଛେ ହୃଦେ ବିଭାତି ସଂହାରି
ତଥାପି ରହିଛି ଆନନ୍ଦ ଏଥିରେ
ସରସ ଅମାୟ ଜନନୀ ପ୍ରେମରେ ।୩।
ଏଥୁଁ ବଳି ସ୍ନେହ ଜନମ ମାଟିର
ଭୁଲିନି ଭୁଲିବ ନାହିଁ ମୋ ଅନ୍ତର
ତା ପାଣି ପବନ ଜୀବନ ରଚିଛି
ତାହା ଦତ୍ତ ଫଳେ ମୋ ପ୍ରାଣ ବଞ୍ଚିଛି
କେତେ କଷ୍ଟେ ଆହା ! ନପାଳିଛି ମୋତେ
ତା ସ୍ନେହୁଁ ବଳୁ କି ରହିବି କିହୁତେ ? ? ।୪।
ମୋ ଜନ୍ମଭୂମି ମୋ ଜନନୀ ପ୍ରେମରୁ
ଜଗତ ଜନନୀ ପ୍ରେମ ବଡ଼ ଗରୁ
ତାହା ଦୟା ବଳେ କ୍ଷାନେ ହେଲି ରତ
ନୋହିଲେ କି ମୋର ବଳିଥାନ୍ତା ଚିତ୍ତ
ପୂଜିବା ପାଇଁ କି ଜନନୀ ପୟର
ଜନମ ଭୂମିର ପଦ ସୁରୁଚିର ।୫।
ଜୟ ଗୋ ଜନନୀ ! ଜଗତ ତାରିଣୀ
ଲଭେ ହେଉ ଦୟା ଚାଳିବି କରଣୀ
ପୂଜିବି ତୋ ପଦ କାବ୍ୟ କୁସୁମରେ
ଧୋଇବି ଗାତ୍ରୁ ତୋ ନୟନ ବାରିରେ
ଭକତି ପସରା ପାଶେ ଦେଇ ଥୋଇ
କହିବି ଉତ୍କଳ ଦଶା ଦିଅ ଫେଇ ।୬।
ସନ୍ତାନ ବାତ୍ସଲ୍ୟ ସୁଲଭ ଗୁଣରେ
ଦୂବି ନ ଯାଉକି ରହିବୁ ସୁଖରେ ?
ରୁହ ପଛେ ମୋର ନାହିଁତ ଶୋଚନା
ପଦ ତଳେ ତୋର ବଳିଛି କାମନା
କରିବୁଁ ନାହିଁ ଗୋ ! ସେଥିରୁ ବଞ୍ଚିତ
ସେଥିଲାଗି ରାଣ ପକାଉଛି ମାତ ।୭।

ପ୍ରଧାନାଚାର୍ଯ୍ୟ, ଜନନୀ ସେବା ସଦନ, ଚଉକ
ପଦାଚ, ଭୁବନେଶ୍ୱର-୨

# ଶ୍ରୀମନ୍ତ ଭାରତ

● ଶ୍ରୀ କୈଳାସ ତ୍ରିପାଠୀ

ଭୂ ସ୍ୱର୍ଗର ନିସର୍ଗ ନିବାସ
ପୁଣ୍ୟତୋୟା ପ୍ଳାବନାର ଦେଶ
ଶ୍ଳୋକସ୍ତୁତି ମୁଖର ଭାରତ
ମନ୍ତ୍ର ତନ୍ତ୍ର ଯନ୍ତ୍ରରେ ନିରତ
ପରାକ୍ରମ, ଗରେ ଗୁରୁ ଜ୍ଞାନେ
ସତ୍ୟଯୁଗ ସୃଷ୍ଟିବ୍ୟ ଦର୍ଶନେ
ଶୀର୍ଷ କାବ୍ୟେ କୃତୀରେ କୀର୍ତ୍ତିରେ
କରୁଣାରେ କ୍ଷାତ୍ରିର ମୂର୍ତ୍ତିରେ
ଏ ଦେଶର କିବା ପଟାନ୍ତର
ବିଶ୍ୱବନ୍ଦ୍ୟ ଭୂମି ନିରନ୍ତର
ସେଥିପାଇଁ ବିଶ୍ୱ ବିଷନେତୁ
ପଡୁଥିଲା କେବେ ଅହୋରାତ୍ର
ଉଦ୍‌ଯାପିତ ଶତାବ୍ଦୀ ଶତାବ୍ଦୀ
ଯବନ ବା ଶ୍ୱେତାଙ୍କ ଅବଧି
ସ୍ୱଦେଶୀ ଯା' ବିଦେଶୀ ସାମ୍ରାଜ୍ୟ
ସାଙ୍ଗ ପରେ ପ୍ରାପତି ସ୍ୱରାଜ୍ୟ
ସ୍ୱାଧୀନତା ପୁଣି ଗଣତନ୍ତ୍ର
'ଗଣତନ୍ତ୍ର ପାଏ ମହାମନ୍ତ୍ର
ତ୍ରିରଙ୍ଗାର ତରଙ୍ଗେ ତରଙ୍ଗେ
ଶ୍ରେଷ୍ଠ ଆମେ ଶ୍ରେୟ ସବୁ ରଙ୍ଗେ
ଶ୍ରେଷ୍ଠ ଆମେ ଅଖିଳ ସୃଷ୍ଟିରେ
ଶାନ୍ତି ମୈତ୍ରୀ ପ୍ରୀତିର ଦୃଷ୍ଟିରେ
ଶୌର୍ଯ୍ୟ ବୀର୍ଯ୍ୟ ସ୍ମୃତିରେ ପ୍ରମତ୍ତ
ଶ୍ରୀମୟ ଯେ ଶ୍ରୀମନ୍ତ ଭାରତ ।

'କଳ୍ପନାଲୋକ' ୩୩/୨, ହାଉସିଂ ବୋର୍ଡ୍ ୟୁନିଟ୍-୩, ଭୁବନେଶ୍ୱର

# ସ୍ୱାଧୀନତାର ଶୁଭଦିନ

● ଶ୍ରୀମତୀ କାଞ୍ଚନ ମିଶ୍ର

ଏଇ ମାଟି ଆମ ପବିତ୍ର ଭୂଇଁରେ
ଜନ୍ମି କେତେ ଶୂର, ବୀର
ଗଢ଼ିଥିଲେ ଦେଶ ଆମରି ପାଇଁକି
ହୋଇ ଏକ ପରିବାର ।
ବଞ୍ଚୁଥିଲେ ସବୁ ଭେଦଭାବ ଭୁଲି
ନକରି କାହାକୁ ଡର
ଭାରତବାସୀଙ୍କ ଦୁର୍ଭାଗ୍ୟ ଆସିଲା
ବିଦେଶୀ ହେଲେ ହାଜର ।
ବେପାର, ବଣିଜ କରିବା ନାମରେ
ଧନରତ୍ନ ନେଲେ ବୋହି
କଳ କଉଶଳେ ଶାସନ କରିଲେ
ଆମରି ଭାରତ ଭୂଇଁ ।
ଫିରିଙ୍ଗିମାନଙ୍କ ଦୁଃଖ, ନିର୍ଯ୍ୟାତନା
ନପାରିଲେ ଲୋକେ ସହି
ଦେଶରୁ ଇଂରେଜ ବିତାଡ଼ିବା ପାଇଁ
ଚିହାରିଲେ ଏକ ହୋଇ ।
ସ୍ୱାଧୀନତା ପାଇଁ ଜନ ଆନ୍ଦୋଳନ
ବ୍ୟାପିଲା ଦିନକୁ ଦିନ
କେତେ ନରନାରୀ ପ୍ରାଣବଳୀ ଦେଇ
ରଖିଲେ ଦେଶ ସମ୍ମାନ ।
ଉଣେଇଶି ଶହ ସତଚାଳିଶରେ
ଅଗଷ୍ଟ ପନର ଦିନ
ଗାନ୍ଧିଜୀଙ୍କ ସତ୍ୟ, ଅହିଂସା ନୀତିରେ
ଭାରତ ହେଲା ସ୍ୱାଧୀନ ।
ସ୍ୱାଧୀନ ଭାରତେ ଭାରତମାତାର
ଉଡ଼ିଲା ଜାତୀୟ ଧ୍ୱଜା
ବଜାଇଲେ ତୂରୀ ବିବିଧ ବାଜଣ
ଚଉଦିଗ ସାଜ, ସଜ୍ଜା ।
ଏହି ପତାକାକୁ କର ହେ ପ୍ରଣାମ
ଦେଇ ତାକୁ ସମ୍ମାନ
ଏ ଦେଶକୁ ନୂଆ ରୂପରେ ଗଢ଼ିବୁ
ଆଜି ଏ ଦିନର ପଣ ।

ୟୁନିଟ୍-୮, ଭୁବନେଶ୍ୱର



OGP—MP—PTS (I & P R) 35—6,000—6-8-1999

## ଓଡ଼ିଶା ପ୍ରତିରକ୍ଷା କର୍ମଚାରୀ କଲ୍ୟାଣ ପାଣ୍ଠି ପାଇଁ ବିଭିନ୍ନ ଅନୁଷ୍ଠାନ ତରଫରୁ ମୁଖ୍ୟମନ୍ତ୍ରୀଙ୍କ ହସ୍ତରେ ସାହାଯ୍ୟ ଦାନ

୧. ଅଧ୍ୟକ୍ଷ, ଓଡ଼ିଶା ଲୋକ ସେବା ଆୟୋଗ - ୧୦,୦୦୦ ଟଙ୍କା

୨. ମାଥିଲି ପଞ୍ଚାୟତ ସମିତି - ୩୧,୧୧୨ ଟଙ୍କା

୩. ଅଧ୍ୟକ୍ଷ, ଓଡ଼ିଶା ବିହନ ନିଗମ - ୨୪,୨୫୧ ଟଙ୍କା (କର୍ମଚାରୀମାନଙ୍କ ଗୋଟିଏ ଦିନର ଦରମା ଓ ନିଗମର ନିଜସ୍ୱ ପାଣ୍ଠିରୁ ୧ ଲକ୍ଷ ଟଙ୍କା

୪. ବଲାଙ୍ଗୀର ଟ୍ରକ୍ ପରିଚାଳକ ସଂଘ - ୫୧,୦୦୦ ଟଙ୍କା

୫. ଗୃହ ନିର୍ମାଣ ଓ ନଗରାଞ୍ଚଳ ଉନ୍ନୟନ ଓ ବିଭାଗୀୟ ସାଂସ୍କୃତିକ ଅନୁଷ୍ଠାନ ତରଫରୁ - ୬୦,୦୦୦ ଟଙ୍କା

୬. ଖୋର୍ଦ୍ଧା ଜିଲ୍ଲାର ଶିକ୍ଷକ ଓ ମାଧ୍ୟମିକ ବିଦ୍ୟାଳୟ କର୍ମଚାରୀମାନଙ୍କ ତରଫରୁ - ୧,୫୨,୫୦୦ ଟଙ୍କା

୭. ସୋହେଲା ଯୁବସମାଜ, ସୋହେଲା - ୧୧,୧୧୧ ଟଙ୍କା

୮. ବୟନ ଶିଳ୍ପ ବ୍ୟବସାୟୀ ସଂଘ ତରଫରୁ - ୧ଲକ୍ଷ ୧ ହଜାର ଟଙ୍କା

୯. ପାୟନିୟର ଲେଡିଜ୍ କେୟାର ଓ ପୁନଃ ଥଇଥାନ କେନ୍ଦ୍ର, ଗୁରୁଜଙ୍ଗ, ଖୋର୍ଦ୍ଧା - ୧୫,୦୦୦ ଟଙ୍କା

୧୦. ସରକାରୀ ଉଚ୍ଚ ବିଦ୍ୟାଳୟ ଭି.ଏସ.ଏସ୍. ନଗର, ଭୁବନେଶ୍ୱର - ୫,୦୦୦ ଟଙ୍କା

୧୧. ନୟାଗଡ଼ ଜିଲ୍ଲାପାଳ - ଟ. ୨,୩୧,୭୮୪.୫୦ (ଜିଲ୍ଲାର ସରକାରୀ କର୍ମଚାରୀ ଓ ଜନସାଧାରଣଙ୍କଠାରୁ ସଂଗୃହୀତ)

୧୨. ରାଉରକେଲା ସମବାୟ ଅର୍ବାନ୍ ବ୍ୟାଙ୍କ - ୫୦,୦୦୫ ଟଙ୍କା

୧୩. ଇମ୍ପାଗ୍ରୁପ୍ (କର୍ମଚାରୀଙ୍କଠାରୁ ସଂଗୃହୀତ) - ୫ ଲକ୍ଷ ଟଙ୍କା

୧୪. ଅନୁଗୁଳ ଜିଲ୍ଲାପାଳ - ୭ ଲକ୍ଷ ଟଙ୍କା (ଜିଲ୍ଲା ସରକାରୀ କର୍ମଚାରୀଙ୍କଠାରୁ ସଂଗୃହୀତ)

୧୫. ପରିଚାଳନା ନିର୍ଦ୍ଦେଶକ, ଓଡ଼ିଶା ରାଜ୍ୟ ଅର୍ଥନିଗମ - ୧ ଲକ୍ଷ ୮୦ ହଜାର ଟଙ୍କା (କର୍ମଚାରୀମାନଙ୍କଠାରୁ ସଂଗୃହୀତ)

୧୬. ଜିଲ୍ଲାପାଳ, ଗଞ୍ଜାମ - ୨୦,୧୦୦୧ ଟଙ୍କା (ଜିଲ୍ଲାବାସୀ ତଥା ସରକାରୀ କର୍ମଚାରୀଙ୍କଠାରୁ ସଂଗୃହୀତ)

୧୭. ନୟାଗଡ଼ ଜିଲ୍ଲାବାସୀ ତଥା ଜିଲ୍ଲା ସରକାରୀ କର୍ମଚାରୀ - ଟ.୨,୪୩,୫୮୪.୫୦ (ଜିଲ୍ଲାପାଳଙ୍କ ଜରିଆରେ)

୧୮. ଉନ୍ନୀତ ମଧ୍ୟ ଇଂରାଜୀ ଶିକ୍ଷକ ସଂଘ, ଜୟପୁର - ୪୦,୦୫୦ ଟଙ୍କା

୧୯. ଟ୍ରକ୍ ମାଲିକ ସଂଘ, କଳାହାଣ୍ଡି, କେଶିଙ୍ଗା - ୨୧,୦୦୦ ଟଙ୍କା

୨୦. ନାଲ୍‌କୋ ପଦାଧିକାରୀ ସହଧର୍ମିଣୀମାନଙ୍କ କ୍ଲବ - ୫୦,୦୦୦ ଟଙ୍କା

୨୧. ଓଡ଼ିଶା ଜଙ୍ଗଲ ଉନ୍ନୟନ ନିଗମ - ୫ଲକ୍ଷ ଟଙ୍କା

୨୨. ରାଜ୍ୟ ସମାଜ ମଙ୍ଗଳ ପରିଷଦ - ୧୦,୦୦୧ ଟଙ୍କା

୨୩. ଶକ୍ତି ସଚିବ ଏବଂ ଅଧ୍ୟକ୍ଷ ତଥା ପରିଚାଳନା ନିର୍ଦ୍ଦେଶକ ଗ୍ରୀଡ୍‌କୋ - ୪୦,୦୯,୫୫୮ ଟଙ୍କା

୨୪. ରାଜ୍ୟ ଚଳଚ୍ଚିତ୍ର ଉନ୍ନୟନ ନିଗମ, କଳିଙ୍ଗ ଷ୍ଟୁଡିଓ ଏବଂ ପ୍ରସାଦ କଳିଙ୍ଗ ଲାବ୍ - ୧,୧୫,୨୧୭ ଟଙ୍କା

୨୫. ମହାବୀର କ୍ଲବ୍, ଭବାନୀପାଟଣା - ୩୫,୦୦୦ ଟଙ୍କା

୨୬. ହିଜଳୀକନଗର ବିଜ୍ଞାପିତ ପରିଷଦର କର୍ମଚାରୀ ବୃନ୍ଦ (ଏକ ଦିନର ଦରମା) - ୨୬,୬୯୦ ଟଙ୍କା

**(ଓଡ଼ିଶା ପ୍ରତିରକ୍ଷା କଲ୍ୟାଣ ପାଣ୍ଠିରେ ଜୁଲାଇ, ୧୯୯୯ ସୁଦ୍ଧା ଜମାରାଶି ୧,୩୩,୯୩,୭୨୪ ଟଙ୍କା)**



୧) ମାରଓ୍ୱାଡ଼ି ଯୁବକ ସଂଘ-୧,୫୧,୦୦୦ଟଙ୍କା ( କାରଗିଲ ରଣ କ୍ଷେତ୍ରରେ ଯୁଦ୍ଧରତ ସୈନିକମାନଙ୍କ ସାହାଯ୍ୟାର୍ଥେ ରବୀନ୍ଦ୍ର ମଣ୍ଡପଠାରେ ଆୟୋଜିତ କବି ସମ୍ମେଳନ)



୩) କଳାହାଣ୍ଡି ଜିଲ୍ଲା କଂଗ୍ରେସ କମିଟି-ଏକ ଲକ୍ଷ ଟଙ୍କା (ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ସଭାପତିଙ୍କ ଜରିଆରେ)



୨) ଓଡ଼ିଶା ରାନ୍ଧଣି ଗ୍ୟାସ ବିତରକ ସଂଘ-୫୧, ୦୦୦ଟଙ୍କା



ନିଖିଳ ଭାରତ ସ୍ୱାଧୀନତା ସଂଗ୍ରାମୀ ସଂଗଠନ ଓଡ଼ିଶା ଶାଖା ପକ୍ଷରୁ ଓଡ଼ିଶା ପ୍ରତିରକ୍ଷା କର୍ମଚାରୀ ଶିବିର୍ ପାଣ୍ଠି ଉଦ୍ଦେଶ୍ୟରେ ମୁଖ୍ୟମନ୍ତ୍ରୀ ଡ଼. ଗିରିଧର ଗମାଙ୍ଗଙ୍କୁ ୭,୦୦୦ ଟଙ୍କାର ଏକ ଚେକ ପ୍ରଦାନ କରୁଛନ୍ତି । ୪/୮



କାର୍ଗିଲ ଯୁଦ୍ଧରତ ଯବାନମାନଙ୍କ କଲ୍ୟାଣାର୍ଥେ ଆୟୋଜିତ ବାଚସ୍ପତି ଏକାଦଶ ଓ ଚଳଚ୍ଚିତ୍ର ତାରକା ଏକାଦଶ ପ୍ରଦର୍ଶନୀ ଫୁଟବଲ ମ୍ୟାଚକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଡ଼. ଗିରିଧର ଗମାଙ୍ଗ ଉଦ୍‌ଘାଟନ କରୁଛନ୍ତି । ୧/୮



ପୁରୀ ରଥଯାତ୍ରାରେ ମାନ୍ୟବର ରାଜ୍ୟପାଳ ଡ଼ଃ. ସି.ରଙ୍ଗରାଜନ,
ମୁଖ୍ୟମନ୍ତ୍ରୀ ଡ଼ଃ. ଗିରିଧର ଗମାଙ୍ଗ ଓ ଲୋକସମ୍ପର୍କ ବିଭାଗମନ୍ତ୍ରୀ
ଶ୍ରୀ ଭୁପିନ୍ଦର ସିଂହ ମହାପ୍ରଭୁ ବଳଭଦ୍ରଙ୍କ ରଥ ଟାଣୁଛନ୍ତି । ୧୪/୭



ପୁରୀ ରଥଯାତ୍ରାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ଆୟୋଜିତ ପ୍ରଦର୍ଶନୀ
ମୁଖ୍ୟମନ୍ତ୍ରୀ ଡ଼ଃ ଗିରିଧର ଗମାଙ୍ଗ ଖୋଲି ଦେଉଛନ୍ତି । ୧୭/୭

VOL. LVI No. 1 UTKAL PRASANGA Regd No O—BN—05/90
Licence No. C.R.N.P. 5—Licensed to post without Pre-payment





ରବୀନ୍ଦ୍ର ମଣ୍ଡପଠାରେ କାରଗିଲର ଓଡ଼ିଆ ଶହୀଦ୍‌ମାନଙ୍କ ପରିବାରକୁ ସାହାଯ୍ୟାର୍ଥେ
ସଂସ୍କୃତି ବିଭାଗ ତରଫରୁ ଆୟୋଜିତ 'ଶ୍ରଦ୍ଧାଞ୍ଜଳି' ଉତ୍ସବରେ ମୁଖ୍ୟମନ୍ତ୍ରୀ ଡଃ ଗିରିଧର ଗମାଙ୍ଗ
ବୀର ଶହୀଦ୍‌ମାନଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛନ୍ତି । ୨।୧।୭

PRINTED AT ORISSA GOVERNMENT PRESS, CUTTACK-753010

